# ନେତାଜୀ ସୁଭାଷ ଚନ୍ଦ୍ର ବୋଷ

## ଓଡ଼ିଶା ଆଜାଦ୍ ହିନ୍ଦ୍ ଫୌଜ

## ଜୀବନୀ ସ୍ମରଣିକା



# ନେତାଜୀ ଓ ଓଡ଼ିଶା ଆଜାଦ୍‌ହିନ୍ଦ୍ ଫୌଜ
# ଜୀବନୀ ସ୍ମରଣିକା




ଲେଖକ ଓ ସମ୍ପାଦକ—

**ଶ୍ରୀ ଭଗବାନନ୍ଦ ପ୍ରଧାନ, ଅଇ. ଏନ୍. ଏ.**

ସ୍ୱାଧୀନତା ସଂଗ୍ରାମୀ



ପ୍ରକାଶକ —

**ଓଡ଼ିଶା ଆଜାଦ୍‌ହିନ୍ଦ୍ ଫୌଜ ସଂଘ**

ନେତାଜୀ ମାର୍ଗ, ହିଂଜଳକାଟୁ, ଗଞ୍ଜାମ

# ନେତାଜୀ ଓ ଓଡ଼ିଶା ଆଜାଦ୍‌ହିନ୍ଦ୍‌ ଫୌଜ ଜୀବନୀ ସ୍ମରଣିକା


ଲେଖକ ଓ ସଂଗ୍ରାହକ--

ଶ୍ରୀ ଉତ୍ସବାନନ୍ଦ ପ୍ରଧାନ, ଆଇ. ଏନ୍‌. ଏ.
ସ୍ୱାଧୀନତା ସଂଗ୍ରାମୀ, ନେତାଜୀ ମାର୍ଗ, ହିଂଜିଳିକାଟୁ (ଗଞ୍ଜାମ)



ପ୍ରକାଶକ—

ଓଡ଼ିଶା ଆଜାଦହିନ୍ଦ୍‌ ଫୌଜ ସଂଘ

ପ୍ରଥମ ସଂସ୍କରଣ, ୧୯୮୮

ମୁଦ୍ରାକର—

ଶ୍ରୀ ବଦ୍ରିନାରାୟଣ ପାଢ଼ି
ଜ୍ଞାନ ପ୍ରକାଶିନୀ, ବ୍ରହ୍ମପୁର

ମୂଲ୍ୟ—ଚାଳିଶି ଟଙ୍କା ମାତ୍ର


ଲବ୍ଧ ଧନରେ ନେତାଜୀଙ୍କର ପ୍ରତିମୂର୍ତ୍ତି ସ୍ଥାପନ କରାଯିବ ।

## NETAJI & ORISSA AZADHIND FAUJ JEEVANI SMARANIKA


*Compiler* :

**Sri Utsabananda Pradhan,** *I, N A.*
Freedom Fighter, Netaji Marg, Hinjilicut



*Published by*—
**ORISSA AZAD HIND FAUJ SANGH**

**First Edition—1988**

*Printed by*—
**Sri Badri Narayan Padhy**
**Gyana Prakashini, Berhampur-1**

**Price Rupees_ 40-00 (Fourty Only)**




The sales price obten from this Souvineer will be used for the construction of a statue of Netaji Subash Chandra Bose.

**PULOK CHATTERJI**
Deputy Secretary



PRIME MINISTER'S OFFICE
*New Delhi 110 011*
April 24, 87

# MESSAGE

*Dear Sri Pradhan,*

*The Prime Minister is glad to hear that the Orissa Azad Hind Fauz Sangh will be publishing a souvineer on Netaji Subhash Chandra Bose. He sends his good wishes on the occasion.*

Yours Sincerely
*Pulok Chatterji*



OFFICE OF THE SECRETARY
TO THE GOVERNOR, Orissa

RAJ BHAVAN
Bhubaneswar
28-4-87

## MESSAGE

Dear Sir,

I am directed to send herewith the message of the Governor of Orissa as desired by you in your letter No. 32/87 dated 9-4-87.

Kindly acknowledge receipt.

A copy of the Publication carrying the message may please be sent to the undersigned.

Yours faithfully
Sd/-
P. R. O. to the Governor





**B. N. PANDE**
*Governor, Orissa*
*RAJ BHAVAN*
*BHUBANESWAR-751008*
*APRIL 25, 87*

# MESSAGE

*Netaji Subash Chandra Bose was a valiant hero of our freedom movement whose services and sacrifices for the cause of the country have few parallels. An illustrious son of India, the saga of his life and message is a perennial source of inspiration for the youth.*

*I commend the initiative taken by Orissa Azad Hind Fauz Sangh, Hinjilicut (Ganjam) in bringing out a Souvenir depicting the life and work of this great revolutionary, which I am sure will enthuse the people to serve the society with greater dedication and devotion.*

*My best wishes for the success of the publication of the Souvenir.*

Sd/-
**B. N. PANDE**
Governor, Orissa



**CHINTAMANI PANIGRAHI**
Minister of State, Home (States)
INDIA
NORTH BLOCK, NEW DELHI-110001
30th APRIL, 1987



# MESSAGE

I am glad to know that the Orissa Azad Hind Fauz Sangh is going to bring out a souvenir on the life of Shri Netaji Subash Chandra Bose, one of the most illustrious sons of the soil.

I send my best wishes to the members of the Organisation.

Sd/-
**CHINTAMANI PANIGRAHI**

**ଶ୍ରୀ ଶରତ ରାଉତ**

**ରାଷ୍ଟ୍ରମନ୍ତ୍ରୀ**

ପର୍ଯ୍ୟଟନ ଓ ସଂସ୍କୃତି ଏବଂ
ଯୋଜନା ଓ ସମନ୍ୱୟ, ଓଡ଼ିଶା



ଭୁବନେଶ୍ୱର

ତା ୪-୪-୧୯୮୯

# ବାଣୀ

ସଂକଳକଠାରୁ "ଓଡ଼ିଶା ଆଜାଦ ହିନ୍ଦ ଫୌଜ ସଂଘ"ର ଆନୁକୂଲ୍ୟରେ ଏକ ସ୍ମରଣିକା ପ୍ରକାଶିତ ହେଉଥିବା ଜାଣି ଆନନ୍ଦିତ ହେଲି । ନେତାଜୀଙ୍କ ଜୀବନୀ ଓ କାର୍ଯ୍ୟାବଳୀ ଉପରେ ଆଧାରିତ ବହୁ ଉପାଦେୟ ପ୍ରବନ୍ଧମାନ ଉକ୍ତ ସ୍ମରଣିକାରେ ସ୍ଥାନ ପାଇବ । ଦେଶର ଏହି ବୀରପୁତ୍ରଙ୍କ ସମ୍ପର୍କରେ ବହୁ ତଥ୍ୟ ବର୍ତ୍ତମାନ ମଧ୍ୟ ଲୋକଲୋଚନକୁ ଆସିନାହିଁ । ଆଜାଦ ହିନ୍ଦ ଫୌଜ ସଂଘର ଏହି ମହାନ ଉଦ୍ୟମକୁ ସ୍ୱାଗତ କରିବା ସଙ୍ଗେ ସଙ୍ଗେ ସ୍ମରଣିକାଟି ଏକ ଅମୂଲ୍ୟ ସମ୍ପଦ ହେବ ବୋଲି ଆଶା କରୁଛି ।

ସ୍ୱା/-
**ଶରତ ରାଉତ**

BHARTRUHARI MAHTAB
Editor
PRAJATANTRA

Cuttack-753002
Phones : 23590 21362 20824
7 April 1989

# MESSAGE

*I am very glad to know that Orissa Azad Hind Fauz Sangh, Hinjilcut, Ganjam is going to bring out a souvenir depicting the life and activities of Netaji Subhas Chandra Bose. As we all know, Netaji played a very vital role for the cause of the country's independence and his radiant chivalry thrilled every soul in our country and his tireless struggle against the alien rule in the pre-independence era spread like a wild fire culminating in the formation of the redoubtable I. N. A.*

*I pay my respectful homage to this immortal son of our motherland and wish the souvenir all success.*

Sd/-
**Bhartruhari Mahtab**

ଶ୍ରୀ ଶତ୍ରୁଘ୍ନ ପଣ୍ଡା
ସାଧାରଣ ସମ୍ପାଦକ
ଓଡ଼ିଶା ସ୍ୱାଧୀନତା ସଂଗ୍ରାମୀ ସମିତି
ଭୁବନେଶ୍ୱର

# ଅଭିମତ

"ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଓ ଓଡ଼ିଶା ଆଜାଦ ହିନ୍ଦ ଫୌଜ ଜୀବନ୍ତ ସ୍ମରଣିକା" ଶୀର୍ଷକ ପୁସ୍ତକ ପ୍ରଣୟନ କରି ସଂଗ୍ରାମର ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ ଦଳର ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ତ୍ରିପାଠୀ ଓ ଭକ୍ତବାନନ୍ଦ ପ୍ରଧାନ ମୁକ୍ତି ସଂଗ୍ରାମର ଅନେକ ଉପାଦେୟ ଓ ସ୍ମରଣୀୟ ତଥ୍ୟାବଳୀ ଯୁବ ସମାଜରେ ଉପସ୍ଥାପନ କରିଛନ୍ତି ।

ଭାରତର ପ୍ରଥମ ସ୍ୱାଧୀନତା ଦିବସ ୧୯୪୩ ମସିହା ଅକ୍ଟୋବର ୨୧ ତାରିଖ । ପ୍ରଥମ ରାଜଧାନୀ ଆଣ୍ଡାମାନ ନିକୋବର ଦ୍ୱୀପପୁଞ୍ଜର ପୋର୍ଟ ବ୍ଲେୟାର । ପ୍ରଥମ କେନ୍ଦ୍ର ସେକ୍ରେଟେରିଏଟ୍—ପାଲ୍ଲୁଲ୍ଲର ଜେଲ । ପ୍ରଥମ ରାଷ୍ଟ୍ରପତି—ନେତାଜୀ ସୁଭାଷ ଚନ୍ଦ୍ର ବୋଷ । ପ୍ରଥମ ଜାତୀୟ ଉପାଧି – ମହାତ୍ମାଜୀଙ୍କ 'ଜାତିର ଜନକ' । ପ୍ରଥମ ସରକାରୀ ମୁଦ୍ରା ପ୍ରଚଳନ । ଜାତୀୟ ଧ୍ୱନି - ଦିଲ୍ଲୀ ଚଲୋ । ଏହି ସବୁ ତଥ୍ୟ ଏ ପୁସ୍ତକରେ ପ୍ରକାଶିତ । ମୁକ୍ତି ସଂଗ୍ରାମ ଇତିହାସରେ ଏହି ତଥ୍ୟାବଳୀର ମହତ୍ତ୍ୱ ବସ୍ତୁତଃ ଗର୍ଭରେ ଲୀନ ହେବା ଅନୁଚିତ । ଏ ଦୃଷ୍ଟିରୁ ଶ୍ରୀ ତ୍ରିପାଠୀ ଓ ପ୍ରଧାନଙ୍କ ଉଦ୍ୟମକୁ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଆଜିର ଯୁବ ସମାଜ ପାଇଁ ଏହା ପ୍ରେରଣାଦାୟୀ ହେବ ବୋଲି ଆଶା କରୁଛି ।

ସ୍ୱା/-

ଶ୍ରୀ ଶତ୍ରୁଘ୍ନ ପଣ୍ଡା



ରାସବହାରୀ ବୋଷ ନେତାଜୀଙ୍କୁ
ନେତୃତ୍ୱ ହସ୍ତାନ୍ତର କରୁଛନ୍ତି
—୪ ଜୁଲାଇ, ୧୯୪୩



ନେତାଜୀ ଙ୍କ ର ଭୂମିରେ
ଆଜାଦ ହିନ୍ଦ ପ୍ରାଦେଶିକ
ସରକାର ଗଠନର
ଘୋଷଣାନାମା ପଢୁଛନ୍ତି ।



ଆଇ. ଏନ୍. ଏ ର ଚିଫ ରକ୍ଷା ଅଫିସର ଏ. ସି. ଚାଟାର୍ଜି,
ଏମ୍. ଜାଡ୍. କ୍ୟାନ ଏବଂ ହବିବୁର୍ ରହମନଙ୍କ ସହ ନେତାଜୀ



ଚୀନର ଐତିହାସିକ ସ୍ଥାନ ଯାନ-ଏତ୍-ସନ ମୌସଲେମ ନାନ୍କଂ
ଠାରେ ନେତାଜୀ ପରିଦର୍ଶନ କରୁଛନ୍ତି ।



ଚୀନରେ ନେତାଜୀ ଆଜାଦ୍ ହିନ୍ଦ୍ ଫୌଜରେ ଯୋଗ ଦେଇଥିବା
ଲୋକମାନଙ୍କୁ ପରିଦର୍ଶନ କରୁଛନ୍ତି ।





ନେତାଜୀ ପୋର୍ଟ ବ୍ଲେୟାର ସେଲୁଲାର ଜେଲ ପରିଦର୍ଶନ କରୁଛନ୍ତି ।



କମାଣ୍ଡର, କ୍ୟାପ୍‌ଟେନ୍ ଲକ୍ଷ୍ମୀଙ୍କ ସହିତ ନେତାଜୀଙ୍କ ସମ୍ପୂର୍ଣ୍ଣ ଯୁଦ୍ଧ ପୋଷାକରେ ସଜ୍ଜିତ ଝାନ୍‌ସୀର ରାଣୀ ରେଜିମେଣ୍ଟ ପରିଦର୍ଶନ ।





ଲକ୍ଷ୍ୟ ଭେଦ ପାଇଁ ଅଭ୍ୟାସରତ ରାଣୀଗଣ



ଯୁଦ୍ଧ ସମ୍ମୁଖରେ ନେତାଜୀ



ଭାରତୀୟ ଜାତୀୟ ସେନାର ସେନାଧ୍ୟକ୍ଷ



ପିଲ୍ଲାଇଙ୍କ ପରିବାର ସହ ନେତାଜୀ



ନେତୃତ୍ୱକୁ ଗ୍ରହଣ କରିବା ଅବସରରେ
ନେତାଜୀ ଅସେମ୍ବ୍ଲିକୁ ଉଦ୍‌ବୋଧନ ଦେଉଛନ୍ତି ।



ମୋତିଲାଲ ନେହେରୁ ଏବଂ ଜେ. ଏମ୍. ସେନଗୁପ୍ତାଙ୍କ ଗହଣରେ ପ୍ୟାରେଡ୍ ପରିଦର୍ଶନ ।





ମହାତ୍ମା ଗାନ୍ଧୀ ଏବଂ ଅନ୍ୟ ନେତୃବର୍ଗଙ୍କ ସହ—ସଭା ମଞ୍ଚ ଉପରେ ।



ଜର୍ମାନୀରେ ଭାରତୀୟ ବନ୍ଦୀମାନଙ୍କ ଗହଣରେ ।



ଜର୍ମାନୀରେ ନେତାଜୀ ପ୍ରଥମ ଭାରତୀୟ ଜାତୀୟ ସେନାବାହିନୀଙ୍କ ସହ ।



ଆଡୋଲ୍ଫ ହିଟଲରଙ୍କ ସହ ନେତାଜୀ
ମଇ ୧୯୪୨ରେ ମୁଖାମୁଖୀ ଆଲୋଚନା କରୁଛନ୍ତି ।



ସବ୍ ମେରିନର କ୍ୟାପ୍ଟେନ ମାସେନବର୍ଗଙ୍କ ସହ
ନେତାଜୀ ବର୍ଲିନରୁ ପୂର୍ବ ଏସିଆ ଅଭିମୁଖେ ।



୧୯୪୩ ମସିହା ଫେବ୍ରୁଆରି ଓ ମେ ମାସ ମଧ୍ୟରେ ନେ. ସୁଭାଷଙ୍କ
ଅଦ୍ଭୁତ ବୁଡ଼ା ଜାହାଜ ଯାତ୍ରା ।

↓ ୧୯୪୩ ମସିହା ଜୁନ୍ ମାସରେ ଟୋକିଓରେ ପଦାର୍ପଣ ପରେ ।



ହୋଟେଲ୍ ଇମ୍ପେରିଆଲ୍ ଟୋକିଓର ଜାପାନର ବରିଷ୍ଠ ↑
ସାମରିକ ଅଧିକାରୀ ଓ କୂଟନୀତିଜ୍ଞ ଗହଣରେ ।



ଭାରତୀୟ ଶେଷ ସ୍ୱାଧୀନତା ଯୁଦ୍ଧର ପ୍ରଥମ ସୈନ୍ୟ ।



ସାଇଗନରେ ଓହ୍ଲାଇବା ପରେ ୧୭ ଅଗଷ୍ଟ ୧୯୪୫ରେ ନେତାଜୀଙ୍କ ଶେଷ ଫଟୋ ।



ଜାନକୀନାଥ ଭବନ, ଓଡ଼ିଆ ବଜାର, କଟକ । ୧୮୯୭ ଜାନୁୟାରୀ ୨୩ ତାରିଖ ଦିନ ଏହି ଭବନରେ ନେତାଜୀ ସୁଭାଷ ଚନ୍ଦ୍ର ଜନ୍ମଗ୍ରହଣ କରିଥିଲେ ।



ସିଙ୍ଗାପୁର ବେଳାଭୂମିରେ ନେତାଜୀଙ୍କ ଦ୍ୱାରା ୮ ଜୁଲାଇ ୧୯୪୫ରେ ଶହୀଦ ସ୍ତମ୍ଭର ଭିତ୍ତିପ୍ରସ୍ତର ସ୍ଥାପନ କରି ଠିକ୍ ସମୟରେ ସଂପୂର୍ଣ୍ଣ କରିଥିଲେ ।



ଝାନ୍ସି ରେଜମେଣ୍ଟର ସୈନିକାମାନେ ନେତାଜୀଙ୍କୁ ଯୁଦ୍ଧ ପ୍ରସ୍ତୁତ ସମ୍ବନ୍ଧରେ ରିପୋର୍ଟ ଜଣାଉଛନ୍ତି ।



ଟୋକିଓ ଠାରେ ବୃହତ୍ତର ଏସିଆ ଧର୍ମ୍ମ ଜମାରେ ଉଦ୍‌ବୋଧନ ଦେଉଛନ୍ତି ।



ନଭେମ୍ବର୍ ୧୯୪୪ରେ ନେତାଜୀ ଜାପାନର ତତ୍କାଳୀନ ନୂତନ ପ୍ରଧାନମନ୍ତ୍ରୀ କୋଇସୋଙ୍କ ସଙ୍ଗେ ଟୋକିଓରେ ।





ନେତାଜୀ ଯୁଦ୍ଧକ୍ଷେତ୍ର ପାର ହେବା ପୂର୍ବରୁ ଆଜାଦହିନ୍ଦ ବାହିନୀ ଦାସ ଭରଣପୁଙ୍କୁ ଆହ୍ୱାନ ଦେଉଛନ୍ତି ।

# ନେତାଜୀ ଓ ଓଡ଼ିଶା
# ଆଜାଦ୍ ହିନ୍ଦ୍ ଫୌଜ
# ଜୀବନୀ ସ୍ମରଣିକା

# ନେତାଜୀ ସୁଭାଷ ଚନ୍ଦ୍ର

ଏହି ବିଶାଳ ପୃଥିବୀପୃଷ୍ଠରେ କେତେ ଲୋକ ଜନ୍ମଗ୍ରହଣ କରୁଛନ୍ତି, ପୁଣି କେତେ କାଳପରେ ଇହଲୀଳା ସମ୍ବରଣ କରି ମାଟିରେ ମିଶି ଯାଉଛନ୍ତି । କିନ୍ତୁ ପୃଥିବୀ ସେମାନଙ୍କର କୌଣସି ଖୋଜ-ଖବର ରଖେ ନାହିଁ । ବାସ୍ତବିକ୍ ଏହି ସବୁ ଲୋକଙ୍କର ଇତିହାସ ରଖିବାପାଇଁ ପୃଥିବୀର ମଧ୍ୟ ଅବସର ନାହିଁ । ତଥାପି ପୃଥିବୀ ହିସାବ ରଖିଥାଏ କେବଳ ସେମାନଙ୍କର, ଯେଉଁମାନଙ୍କର ଜନ୍ମ ଓ ମୃତ୍ୟୁ ଶରଦଣ ପାଇଁ ଦେଶକୁ ଗୌରବାନ୍ୱିତ କରି ଜାତୀୟ ଜୀବନରେ ପ୍ରେରଣାର ଉତ୍ସ ଖୋଲିଥାଏ । ଦେଶ, ଜାତି ଓ ମାନବସମାଜ ପାଇଁ ଯେଉଁମାନଙ୍କର ଏକନିଷ୍ଠ ସାଧନା ଓ ଅତୁଳନୀୟ ଦାନ, ଯାହାଙ୍କର ଅନାବିଳ ତ୍ୟାଗପୂତ କର୍ମମୟ ଜୀବନ ମାନବ ସଭ୍ୟତା ଉପରେ ଗଢ଼ିଦିଏ ସ୍ମୃତିର ସୌଧ କୋଣାର୍କ, ସେହି କ୍ଷଣଜନ୍ମା ମହାପୁରୁଷମାନଙ୍କ ମଧ୍ୟରୁ ବିପୁଳ ପ୍ରତିଭା ସମ୍ପନ୍ନ, ସ୍ୱଦେଶାଭିମାନୀ, ସର୍ବଧର୍ମ ସମନ୍ୱୟବାଦୀ ଓ ଦୁଃସାଧ୍ୟ କର୍ମସାଧକ ଭାରତବରେଣ୍ୟ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଅନ୍ୟତମ ।

ଏହି ମହାନ୍ ବୀର ଶ୍ରେଷ୍ଠ ୧୮୯୭ ମସିହା ଜାନୁୟାରୀ ୨୩ ତାରିଖ ମଧ୍ୟାହ୍ନ ଠିକ୍ ୧୨ ଘଟିକା ସମୟେ 'କଟକ ସହର' ଓଡ଼ିଆ ବଜାରସ୍ଥ ଜାନକୀନାଥ ବାସ ଭବନର ଦ୍ୱିତଳ ପ୍ରସାଦ ଉପର ମହଲାର ଗୋଟିଏ ଛୋଟ କୋଠରୀରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଜାନକୀ ନାଥ ବୋଷ ଓ ମାତାଙ୍କ ନାମ ଥିଲା ପ୍ରଭାବତୀ ।

ସୁଭାଷ ଚନ୍ଦ୍ରଙ୍କର ପୂର୍ବପୁରୁଷଗଣଙ୍କ ନିବାସସ୍ଥଳୀ ଥିଲା, ବଙ୍ଗ ପ୍ରଦେଶର ୨୪ ପରଗଣା ଜିଲ୍ଲାସ୍ଥ 'କୋଦାଳିଆ' ନାମକ ଗ୍ରାମରେ । ପରବର୍ତ୍ତୀକାଳେ ତାଙ୍କର ପିତାମହ କଲିକତା ଆସି ଭବାନୀପୁର ନିକଟ ଏଲ୍‌ଗିନ୍ ରୋଡ଼ଠାରେ ବସତି ସ୍ଥାପନ କରିଥିଲେ । ସୁଭାଷବାବୁଙ୍କ ପିତା ଜାନକୀନାଥ ବୋଷଙ୍କର କଲିକତା ହାଟଖୋଲା ନଗରସ୍ଥ ସମ୍ଭ୍ରାନ୍ତ ଦତ୍ତବଂଶୀୟ ପରିବାରରେ ସୁଶ୍ରୀ ଓ ସୁଗୁଣାବତୀ କନ୍ୟା ଶ୍ରୀମତୀ ପ୍ରଭାବତୀ ଦେବୀଙ୍କ ସହ ବିବାହ କାର୍ଯ୍ୟ ସମ୍ପନ୍ନ ହୋଇଥିଲା ।

ପ୍ରଭାବତୀ ଦେବୀ ବହୁଗୁଣର ଅଧିକାରିଣୀ ଥିଲେ । ସେ ଯେପରି ସୁଶୀଳା, ଧର୍ମ ପରାୟଣା ଓ ଦୟାବତୀ ଥିଲେ ସେହିପରି ବୁଦ୍ଧିମତୀ ଗୃହକର୍ମ ନିପୁଣା ଓ ପତିପରାୟଣା ମଧ୍ୟ ଥିଲେ । ଜାନକୀବାବୁ ବୈବାହିକ ଜୀବନର ପ୍ରଥମ କେତୋଟି

ବର୍ଷ କଲିକତା ମହାନଗରୀରେ କଟାଇ, ଦୁଇଟି ସନ୍ତାନର ଜନକ ହେବାପରେ ସେ ଓଡ଼ିଶାର ତତ୍କାଳୀନ ରାଜଧାନୀ କଟକ ସହରକୁ ଜୀବନର କର୍ମ ଭୂମି ରୂପେ ବାଛି ନେଇଥିଲେ । ଏଣୁ କଲିକତାରୁ ଓଡ଼ିଶା ଆସି ପ୍ରଥମେ କଟକ ଓଡ଼ିଆ ବଜାରରେ ଖଣ୍ଡିଏ ସାଧାରଣ ଘରଭଡ଼ା ରଖି ନିଜର ଆଇନ ବ୍ୟବସାୟ ଆରମ୍ଭ କରିଥିଲେ ।

ନିଜର ଅଧ୍ୟବସାୟ, ବୁଦ୍ଧିପ୍ରଜ୍ଞାମତ୍ତା ଓ କଠୋର ପରିଶ୍ରମ ବଳରେ ଜାନକୀ ବାବୁ ଖୁବ୍ ଅଳ୍ପ ସମୟ ମଧ୍ୟେ ପ୍ରଚୁର ଅର୍ଥ ଉପାର୍ଜନ କରି ଓଡ଼ିଆ ବଜାରରେ ନିଜର ବିରାଟ ବାସଭବନ ନିର୍ମାଣ କରିପାରିଥିଲେ । ତାଙ୍କର ସରଳ ଅମାୟିକ ବ୍ୟବହାର ତଥା ଗଭୀର ପାଣ୍ଡିତ୍ୟପୂର୍ଣ୍ଣ ଆଇନ ଜ୍ଞାନ ଥିବା ଯୋଗୁଁ ସରକାରୀ ଉକିଲ ନିଯୁକ୍ତ ହେବା ସଙ୍ଗେ ସଙ୍ଗେ ଅପୂର୍ବ ଜନପ୍ରିୟତା ଅର୍ଜନ କରିପାରିଥିଲେ । ସେ ଏକାଧିକ ବାର କଟକ ମ୍ୟୁନିସିପାଲ୍, ଉକିଲସଂଘ ଓ ଜିଲ୍ଲା ବୋର୍ଡର ଚେୟାରମେନ୍ ନିର୍ବାଚିତ ହୋଇ ଆଶାତୀତ ଭାବେ ଜନହିତକର କାର୍ଯ୍ୟ କରିଥିଲେ । ତାଙ୍କର ପ୍ରଭୁତ୍ୱ ଓ ଖ୍ୟାତି ଯୋଗୁଁ ଇଂରେଜ ସରକାର ରାୟବାହାଦୁର ଉପାଧିରେ ଭୂଷିତକରି ଚିରଦିନ ପାଇଁ ସେ ଯେପରି ସରକାରୀ ଅନୁଗତଭକ୍ତ ହୋଇରହନ୍ତି ସେପରି ଅପଚେଷ୍ଟା କରାଯାଇଥିଲା । କିନ୍ତୁ ନିର୍ଭୀକ ଜାନକୀବାବୁ ସ୍ୱାଧୀନଚେତା ଓ ସ୍ୱଦେଶାଭିମାନୀ ହୋଇଥିବା ଯୋଗୁଁ, ବିଦେଶୀ ସରକାର ଦଳର ଉଦ୍ଦେଶ୍ୟ ସିଦ୍ଧ ହୋଇ ପାରିନ'ଥିଲା । ଏପରିକି ଗାନ୍ଧିଜୀଙ୍କ ସ୍ୱାଧୀନତା ଆନ୍ଦୋଳନର ପ୍ରଥମ ସତ୍ୟାଗ୍ରହ ବେଳେ ବ୍ରିଟିଶ ସରକାର ପକ୍ଷରୁ ସମଗ୍ର ଭାରତ ବର୍ଷରେ ଯେଉଁ ଅମାନୁଷିକ, ବର୍ବର ନାରକୀୟ ତାଣ୍ଡବଲୀଳା ସଂଘଟିତ ହେଲା, ସେଥିର ତୀବ୍ର ପ୍ରତିବାଦ କରି ଜାନକୀବାବୁ ସରକାରଙ୍କ ପ୍ରଦତ୍ତ 'ରାୟବାହାଦୁର' ଉପାଧିକୁ ପ୍ରତ୍ୟାଖ୍ୟାନ କରିଥିଲେ ।

ସୁଭାଷବାବୁଙ୍କର ମାତା-ପିତା ଉଭୟେ ପବିତ୍ର ହିନ୍ଦୁ ଗାର୍ହସ୍ଥ୍ୟ ଧର୍ମପାଳନରେ ବ୍ରତୀହୋଇ ଆଦର୍ଶ ଦମ୍ପତି ଥିଲେ । ଦୈନନ୍ଦିନ ଗୃହକାର୍ଯ୍ୟର ଅଂଶ ବିଶେଷଭାବେ ଧ୍ୟାନ-ଜପତପ, ଦୁଃଖିରଙ୍କୀଙ୍କୁ ଦାନଦେବା, ସାଧୁ, ସନ୍ଥ ବୈଷ୍ଣବମାନଙ୍କୁ ସେବାସତ୍କାର କରିବା ଏପରିକି ଓଷା'ବ୍ରତ, ଗୀତାଭାଗବତ, ପୁରାଣ ପ୍ରଭୃତି କୌଣସି କଥା ବାଦ୍ ପଡ଼ୁ ନଥିଲା । ଜାନକୀବାବୁ ଜଣେ ଉଚ୍ଚାଭିଳାଷି, ବିଦ୍ୟୋତ୍ସାହୀ ତଥା ସ୍ୱଦେଶାଭିମାନୀ ଥିଲେ । ସେ ବିପୁଳ ସମ୍ପତ୍ତିର ମାଲିକ ହୋଇ ମଧ୍ୟ ନିଜର ଧର୍ମ ପତ୍ନୀ ପ୍ରଭାବତୀ ଦେବୀଙ୍କର ମନରେ କୌଣସି ପ୍ରକାର ଗର୍ବ ଅହଂଭାବ ନଥିଲା । ସ୍ୱାମୀଙ୍କ ପରି ପ୍ରଭାବତୀ ଦେବୀ ମଧ୍ୟ ବଡ଼ ଦୟାବତୀ, ସନ୍ତାନ ବତ୍ସଳା, ସ୍ନେହମୟୀ ଓ ପତିପରାୟଣା ଭାବେ ଅତି ସରଳ ତଥା ନିରାଡ଼ମ୍ବର ଜୀବନଯାପନ କରିବାକୁ ଭଲ ପାଉଥିଲେ ।

ମାତାପିତାଙ୍କର ଚରିତ୍ରବଳ, ଜାତୀୟତା ବୋଧ, ସର୍ବୋପରି ସେବା ଓ ସ୍ୱ-ଧର୍ମ ଆଚରଣ ସ୍ୱଭାବ ଏବଂ ତାର ପ୍ରଭାବ ସ୍ୱତଃ ନିଜ ସନ୍ତାନ ସନ୍ତତି ଉପରେ ପଡ଼ିବା ସ୍ୱାଭାବିକ ।

ବିଶେଷ କରି ବାଳକ ସୁଭାଷ ଚନ୍ଦ୍ର ମାତା ପ୍ରଭାବତୀଙ୍କ ଠାରୁ ରାମକୃଷ୍ଣ ପରମହଂସ, ସ୍ୱାମୀ ବିବେକାନନ୍ଦ ସାଧୁସନ୍ଥ, ବୁଦ୍ଧ ଓ ଚୈତନ୍ୟ ଦେବଙ୍କ ତ୍ୟାଗପୂତ ଜୀବନୀ, ଗୀତା, ରାମାୟଣ, ମହାଭାରତ ପ୍ରଭୃତି ପୌରାଣିକ କାହାଣୀ ଶୁଣି ତାକୁ ବହୁତ ଭଲ ପାଉଥିଲେ ଏବଂ ସମୟେ ସମୟେ ଏ ବିଷୟରେ ମାତାଙ୍କ ସହିତ ଧର୍ମ ଚର୍ଚ୍ଚା ମଧ୍ୟ କରୁଥିଲେ । ସ୍ୱାମୀ ବିବେକାନନ୍ଦଙ୍କ ଜୀବନୀ ଓ ତତ୍ତ୍ୱ ପ୍ରତି ସେ ବେଶି ଆକୃଷ୍ଟ ହୋଇ ପଡ଼ିଥିଲେ । ଏପରିକି ପରବର୍ତ୍ତୀକାଳର ଭବିଷ୍ୟତ୍ ଜୀବନର ଆଦର୍ଶ ପୁରୁଷ ଭାବେ ସ୍ୱାମୀ ବିବେକାନନ୍ଦଙ୍କୁ ହିଁ ସେ ଗ୍ରହଣ କରି ନେଇଥିଲେ ।

ମାତା ହିଁ ସନ୍ତାନର ପ୍ରଥମ ଗୁରୁ । ଅତୀତ ଯୁଗରୁ ଆଧୁନିକ ଯୁଗପର୍ଯ୍ୟନ୍ତ ଯେଉଁ ସବୁ ମହାପୁରୁଷ ଓ ମନୀଷୀବୃନ୍ଦ ପୃଥିବୀ ବକ୍ଷରେ ଜନ୍ମ ହୋଇ ସ୍ୱକୀୟ କର୍ମ ଓ ଗୁଣ ବଳରେ ମହୀୟାନ୍ ହୋଇ ପୁରାଣ ତଥା ଇତିହାସ ପୃଷ୍ଠାରେ ଶ୍ରେଷ୍ଠତମ ଆସନ ଅଳଂକୃତ କରିଛନ୍ତି । ନିଃସନ୍ଦେହ ସେମାନେ ସବୁ ମାତୃଭକ୍ତ ଥିଲେ । ସେହିପରି ମାତା ପ୍ରଭାବତୀ ଦେବୀଙ୍କ ଆଶୀର୍ବାଦ ଓ ପୁଣ୍ୟ ପ୍ରଭାବ ଚପଳମତି ବାଳକ ସୁଭାଷ ଉପରେ ଗଭୀର ରେଖାପାତ କରିଥିଲା । ଯାହାର ଫଳେ ଭବିଷ୍ୟତ୍ ଜୀବନରେ ସେ ଭାରତୀୟ ମୁକ୍ତିବାହିନୀର ସର୍ବୋଚ୍ଚ କର୍ଣ୍ଣଧାର ହେବା ସଙ୍ଗେ ସଙ୍ଗେ ସର୍ବଶ୍ରେଷ୍ଠ ସେବକ ରୂପେ ନିଜକୁ ପ୍ରତିଷ୍ଠିତ କରି ପାରିଥିଲେ ।

## ବାଲ୍ୟଶିକ୍ଷା

ହିନ୍ଦୁ ଧର୍ମର ପାରଂପରିକ ରୀତି ନିୟମ ଅନୁଯାୟୀ, ସୁଭାଷବାବୁଙ୍କ ବୟସ ଯେତେବେଳେ ୪ ବର୍ଷ, ୪ ମାସ ଓ ୪ ଦିନ ହେଲା, ଠିକ୍ ସେହିଦିନ ଜଣେ ବୈଦିକ ବ୍ରାହ୍ମଣ ପଣ୍ଡିତ ଦ୍ୱାରା ନିଜ ଘରେ ଖଡି ଛୁଆଁଇବା (ବିଦ୍ୟାନୁକୂଳ) କାର୍ଯ୍ୟ ସଂପନ୍ନ ହୋଇଥିଲା । ଠିକ୍ ତା'ର ଏକ ବର୍ଷ ପରେ ଜାନକୀ ନାଥ ବୋଷ, ସୁଭାଷଙ୍କୁ ନେଇ କଟକ ପ୍ରୋଟେଷ୍ଟାଣ୍ଟ ୟୁରୋପିଅନ୍ ସ୍କୁଲରେ ଭର୍ତ୍ତି କରାଇଥିଲେ । ଏହି ସ୍କୁଲରେ ଯେଉଁମାନେ ପଢ଼ୁଥିଲେ ସେମାନଙ୍କୁ ସାହେବୀ ଢଙ୍ଗର ପୋଷାକ ପରିପାଟୀ ତଥା ଚାଲିଚଳଣ ଶିକ୍ଷା ଦିଆଯାଉଥିଲା । ଏଠାକାର ଛାତ୍ରଙ୍କ ମଧ୍ୟରୁ ଅଧିକାଂଶ ଇଂରେଜ ବଂଶୋଦ୍ଭବ, ବାକି କେତେକ ଭାରତୀୟ ଉଚ୍ଚ ପଦାଧିକାରୀଙ୍କ ସନ୍ତାନବର୍ଗ ପଢ଼ୁଥିଲେ । ବିଦ୍ୟାଳୟର ଶିକ୍ଷା, ସଂସ୍କୃତି, ଶୃଙ୍ଖଳା ଓ ବାତାବରଣକୁ ଯଦିଓ ବାଳକ ସୁଭାଷ ଭଲ ପାଉଥିଲେ, ତଥାପି ଆଉ କେତେ

ଛାତ୍ରଙ୍କ ଚାକଚକ୍ୟ ପୋଷାକ, ଦୁଷ୍ଟାମି, ଅନ୍ୟଙ୍କ ପ୍ରତି ନାସିକା କୁଞ୍ଚନ ବ୍ୟଙ୍ଗୋକ୍ତି ଓ ଘୃଣାଭାବ ପ୍ରଦର୍ଶନ ଦେଖି ସେ ଅତ୍ୟନ୍ତ ମର୍ମାହତ ହୋଇ ପଡ଼ୁଥିଲେ ।

ପ୍ରାଥମିକ ବିଦ୍ୟାଳୟରେ ପ୍ରଥମଥର ପାଇଁ ସେ ଉପଲବ୍ଧି କରିଥିଲେ ଯେ, ଭାରତୀୟ ପିଲମାନଙ୍କ ଅପେକ୍ଷା ଇଂରେଜ ପିଲାମାନେ ବେଶ୍ ସୁସ୍ଥ ସବଳ । ଏବଂ ବୁଦ୍ଧିମାନ ଓ କର୍ମଦକ୍ଷ ଥିବା ଯୋଗୁଁ, ଆମମାନଙ୍କ ପ୍ରତି ପକ୍ଷପାତ ଓ ହେୟଜ୍ଞାନ ମନେ କରୁଛନ୍ତି । ଦୁର୍ଦ୍ଦଶାଗ୍ରସ୍ତ ଭାରତବାସୀଙ୍କ ଅଧୋଗତି, ଗୁଣମାନ ତଥା ଦୈନ-ଜୀବନଧାରଣର ମାନ ଅତି ନିମ୍ନସ୍ତରର ଥିଲାବେଳେ, ସୁଦୂର ଯୁରୋପରୁ ଇଂରେଜମାନେ ଆସି ଏ ଦେଶକୁ ଶାସନ କରି ବେଶ୍ ଆରାମରେ ଅଛନ୍ତି । ପୁଣି ଏ ଦେଶବାସୀଙ୍କୁ ଘୃଣା, ଅପମାନ ଓ ଲାଞ୍ଛନା ଦେବାରେ ପଛାଉ ନାହାନ୍ତି ।

ଏଥିର ସଠିକ କାରଣ ସମ୍ବନ୍ଧେ ସେ ନିଜର ମନକୁ ମନ ପ୍ରଶ୍ନ କରନ୍ତି ଏବଂ ତାର ଉତ୍ତର ସେ ନିଜ ମଧ୍ୟରେହିଁ ପାଉଥାନ୍ତି । ପଢ଼ା ପଢ଼ିରେ ସେ ଯେତିକି ସମୟ ବ୍ୟୟ କରୁଥିଲେ, ତା'ର ଦ୍ୱିଗୁଣ ସମୟ ଧର୍ମ, ସେବା ତଥା ଜାତୀୟତା ସମ୍ବନ୍ଧେ ଚିନ୍ତା କରୁଥିଲେ । ସ୍କୁଲ ଛୁଟିପରେ ବେଳେବେଳେ ବିଷର୍ଣ୍ଣ ଓ ଚିନ୍ତିତଭାବେ ଘରକୁ ଫେରୁଥିଲେ । ପୁତ୍ରର ଏପରି ନୀରସ ବଦନ ଅବଲୋକନ କରି ମାତା ପ୍ରଭାବତୀ ପାଖକୁ ଡାକି ପିଠି ଆଉଁସି ଅତି ଆଦର କରି ପଚାରନ୍ତି "—ସୁବି, ଆଜି ତୋ'ର କ'ଣ ହୋଇଛି ବାପା ! ଦେହ ଭଲ ନାହିଁକିରେ ? ମୁହଁଟା ଶୁଖିଲା ଦେଖା ଯାଉଛି ଯେ "ସୁଭାଷ ଚନ୍ଦ୍ର ହସି ଉତ୍ତର ଦିଅନ୍ତି,—"ନାହିଁ ମା, ମୋ ଦେହ ବେଶ୍ ଭଲ ଅଛି ତେବେ କେତେକ ବିଷୟ ମନରେ ଭାବି ସମୟେ ସମୟେ ଚିନ୍ତିତ ହୋଇପଡ଼େ । ସାହେବି ପୋଷାକ ପିନ୍ଧି ଆଉ ସେ ସାହେବୀ ସ୍କୁଲରେ ପଢ଼ିବାକୁ କାହିଁକି ମୋର ଇଚ୍ଛା ହେଉ ନାହିଁ ମା···।" ବାଳକ ପୁତ୍ରର ଆତ୍ମଅଭିମାନ ଓ ଜାତୀୟତା ବୋଧ ଚେତନା ସମ୍ବନ୍ଧେ ମାତା ପ୍ରଭାବତୀଙ୍କ ମନରେ ଅସୀମ ଆନନ୍ଦ ଜାତହୁଏ । ସେ ପୁତ୍ରକୁ ନିବିଡ଼ ଆଲିଙ୍ଗନକରି ସାନ୍ତ୍ୱନା ଦେଇ କହନ୍ତି"—ଏତେ ନାନା ଚିନ୍ତା ଓ ଭାବନା ତୋ ମନରେ କାହିଁକି ଆସୁଛି ବାବା ? ମନ ଦେଇ ପଢ଼ାଶୁଣା କରେ, ତାପରେ ବଡ଼ ହେଲେ, ଏଥିପାଇଁ ତୋତେ ବହୁତ କିଛି କରିବାକୁ ହେବ ।"

### ସେବା ଦଳ ପ୍ରତି ସୁଭାଷ

ମାତାଙ୍କର ଶେଷ ଦୁଇଟି ବାକ୍ୟ"—ଏଥିପାଇଁ ତୋତେ ବହୁତ କିଛି କରିବାକୁ ହେବ ।" ତାହା ସୁଭାଷ ଚନ୍ଦ୍ରଙ୍କ ମନ ମଧ୍ୟରେ ପ୍ରତିଧ୍ୱନିତ ହେଉଥାଏ । ଏହାପରେ ସେ କେତେଜଣ ଛାତ୍ର ସହକର୍ମୀ ଓ ସାଙ୍ଗ ସାଥୀ ପିଲଙ୍କୁ ନେଇ ଗୋଟିଏ 'ବହୁମୁଖୀ ସେବା କର୍ମୀ ଦଳ' ଗଠନ କରି, ନିଜେ ଦଳର ନେତୃତ୍ୱ ନେଇ ସର୍ବର

ତଥା ଗ୍ରାମାଞ୍ଚଳର ଦୁଃସ୍ଥ, ନିର୍ଯାତିତ ବ୍ୟକ୍ତିଙ୍କୁ ସାହାଯ୍ୟ ସହାନୁଭୂତି ସଙ୍ଗେ ବିଭିନ୍ନ ପ୍ରକାର ସେବାମୂଳକ କାର୍ଯ୍ୟରେ ଲାଗି ପଡ଼ିଲେ । ବିଶେଷ କରି ରୋଗୀର ରୋଗ, ଦୁଃଖୀର ଦୁଃଖ, ଦରିଦ୍ରର ଦାରିଦ୍ର୍ୟତା ଦୂର କରିବାକୁ ଆରମ୍ଭ କରି, ମହାମାରୀ, ବଢ଼ି, ଏପରିକି କଠିନ ବସନ୍ତ ରୋଗୀ ନିକଟରେ ପହଞ୍ଚି, ଦିନ ରାତି ଜାଗି ବସି ତାର ସେବାସୁଶ୍ରୂଷା କରୁଥିଲେ । କେଉଁଠି ଯଦି ଘର ପୋଡ଼ି ଯାଉଥିବ, ଖବର ପାଇବା ମାତ୍ରେ ସୁଭାଷ ଚନ୍ଦ୍ର ନିଜର ଦଳବଳ ନେଇ ସେଠାରେ ପହଞ୍ଚି ଜୀବନକୁ ବିପନ୍ନ କରି ନିର୍ଭୀକ ଭାବରେ ନିଆଁ ଲିଭାଇ, ସର୍ବହରାଙ୍କୁ ସାନ୍ତ୍ୱନା ଦେବା ସଙ୍ଗେ ସଙ୍ଗେ ଚାନ୍ଦା ସଂଗ୍ରହ କରି ଚୂଡ଼ା, ମୁଢ଼ି, ଚାଉଳ କିଣି ସେମାନଙ୍କ ମଧ୍ୟରେ ବିତରଣ କରୁଥିଲେ । ଜଗନ୍ନାଥ ମହାପ୍ରଭୁଙ୍କ ପ୍ରସିଦ୍ଧ ରଥଯାତ୍ରା ସମୟରେ ପୁରୀ ସହରକୁ ଯେଉଁ ବିପୁଳ ଜନ ସମାଗମ ହୁଏ ସେତେବେଳେ ସ୍ୱେଚ୍ଛା-ସେବକ ବାହିନୀ ନେଇ ଜନ ସେବା କାର୍ଯ୍ୟରେ ଲାଗି ପଡ଼ୁଥିଲେ । ଦେଶର ଅତି ଦୁର୍ଦ୍ଦିନ ସମୟରେ ସୁଭାଷ ଚନ୍ଦ୍ର ସେବାଦଳ ସହ ଖରସ୍ରୋତା ନଦୀ ଡଙ୍ଗାରେ ପାର ହୋଇ, ବନ୍ୟା ମରୁଡ଼ି ତଥା ବାତ୍ୟାକ୍ଳିଷ୍ଟ ଲୋକଙ୍କୁ ଖାଦ୍ୟ, ଔଷଧ, ଓ ଲୁଗା ପ୍ରଭୃତି ବଣ୍ଟନ ସଙ୍ଗେ ସେମାନଙ୍କ ମନରେ ସାହାସ ଦେଉଥିଲେ । ଏକଦା ଜଣେ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ, ଖଣ୍ଡିଏ ଚୌକି, ବେଞ୍ଚ ଓ ଖଣ୍ଡିଏ କଳାପଟାର ଅଭାବ ଦର୍ଶାଇ ସାହାଯ୍ୟାର୍ଥେ, ସୁଭାଷବାବୁଙ୍କୁ କହିଥିଲେ । ଫଳରେ ସପ୍ତାହନ୍ତି ଉକ୍ତ ୩ ଗୋଟି ଜିନିଷ ଯୋଗାଡ଼ କରି ଦୁଇଜଣ ସାଥୀଙ୍କ ସହ ପରଦିନ ସକାଳେ ସେହି ସ୍କୁଲରେ ପହଞ୍ଚାଇ ଦେଇ ପଚାରିଥିଲେ—ଏତିକି ନା ଆଉ କ'ଣ ଦରକାର ?" ଏଥିରେ ଶିକ୍ଷକ ମହାଶୟ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ଆଶୀର୍ବାଦ କରି କହିଥିଲେ—ତୁମର ମଙ୍ଗଳ ହେଉ ବାବା, ଭଗବାନ କରନ୍ତୁ, ଭବିଷ୍ୟତରେ ତୁମେ ଯେପରି ଏ ଦେଶର ଟେକ ରଖିବ ।

ସୁଭାଷ ଚନ୍ଦ୍ର ବାଲ୍ୟକାଳରୁ ଭିନ୍ନ ପ୍ରକୃତିର ପିଲା ଥିଲେ । ସ୍ୱାଭିମାନ, ସ୍ୱଦେଶ ଚିନ୍ତା, ସେବା ଓ ସ୍ୱଧର୍ମ ପରାୟଣ ମନୋଭାବ ତାଙ୍କର ଅସ୍ଥି ମଜ୍ଜାଗତ ସ୍ୱଭାବ ଥିଲା । ମାତାଙ୍କ ମାତୃଗର୍ଭରୁ ହିଁ ସଂସ୍କାର ନେଇ ସେ ଜନ୍ମ ଲଭିଥିଲେ । ଅନ୍ୟାନ୍ୟ ଛାତ୍ରଙ୍କ ଅପେକ୍ଷା ବିଦ୍ୟାଳୟରେ ଯଦିଓ ସେ ଖୁବ୍ କମ୍ ସମୟ ପାଇଁ ଉପସ୍ଥିତ ରହୁଥିଲେ ତଥାପି ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ଆର୍ଥିକ ସମ୍ବଳହୀନ ଗରିବ ଛାତ୍ରଙ୍କୁ ପଢ଼ାରେ ସାହାଯ୍ୟ କରିବା ପାଇଁ ସେ ନିଜ ଘରେ ଗୋଟିଏ ପାଠାଗାର ଖୋଲିଥିଲେ । ଜଣେ ପ୍ରତିଭାବାନ ଉଚ୍ଚ ପଦାଧିକାରୀ ଧନାଢ଼୍ୟ ବ୍ୟକ୍ତିଙ୍କ ସନ୍ତାନ ହୋଇଥିଲେ ହେଁ, ତାଙ୍କ ମନରେ କୌଣସି ଗର୍ବ ଅହଂକାର ନଥିଲା । ଏପରିକି ସ୍କୁଲ ଛୁଟୀ ପରେ ସାଧାରଣ ପିଲାମାନଙ୍କ ସଙ୍ଗେ ମିଶି ମୁଢ଼ୀ, ପିଆଜ ଓ ବରା ଗୁଲ୍‌-ଗୁଲା ଖାଇବା ପାଇଁ ସେ ଧାଇଁ ଯାଉଥିଲେ । ମନୁଷ୍ୟମାନଙ୍କ ଭିତରେ ଥିବା, ଧନୀ ଦାରିଦ୍ର୍ୟତାର ତଫାତ୍, ଉଚ୍ଚନୀଚ ଓ ଜାତିଗତ ଭେଦା-ଭେଦ ଭାବ ସୁଭାଷ ଚନ୍ଦ୍ରଙ୍କ

ଉଚିତ ମନକୁ କେବେ ହେଲେ ସ୍ପର୍ଶ କରିନଥିଲା । ସେ ନିଜ ଇଚ୍ଛାରେ ମନକୁ ମନ ଯେଉଁ ସବୁ କାର୍ଯ୍ୟ କରି ଯାଉଥିଲେ, ସେଥିରେ ତାଙ୍କ ପିତାମାତା ବାଧା ଦେଉ ନଥିଲେ କିମ୍ବା ପୁଅକୁ କେବେହେଲେ ନିରୁତ୍ସାହିତ କରୁ ନଥିଲେ ।

## ମାଧ୍ୟମିକ ଶିକ୍ଷା

ବିଭିନ୍ନ ସାମାଜିକ ସଂଗଠନ ଓ ସେବା କାର୍ଯ୍ୟରେ ସୁଭାଷଚନ୍ଦ୍ର ଲିପ୍ତ ରହୁଥିଲେ ମଧ୍ୟ ତାଙ୍କ ମନରେ ଆଧ୍ୟାତ୍ମିକତା ପ୍ରତି ଯେପରି ଶ୍ରଦ୍ଧା ଥିଲା ସେପରି ଈଶ୍ୱରଙ୍କ ଠାରେ ମଧ୍ୟ ପ୍ରଗାଢ଼ ଭକ୍ତି ଓ ଗଭୀର ବିଶ୍ୱାସ ଥିଲା । ସେ ଖୁବ୍ କମ୍ ବୟସରେ ଧର୍ମପ୍ରତି ଆକୃଷ୍ଟ ହୋଇ, ସ୍ୱାମୀ ବିବେକାନନ୍ଦ 'ବାଣୀ' ସଂସ୍କୃତ 'ଭଗବତ ଗୀତା' ଓ 'ଚଣ୍ଡୀ ସପ୍ତଶତୀ' ପ୍ରଭୃତି ପଢ଼ିବାକୁ ଭଲ ପାଉଥିଲେ ଏବଂ ଧାର୍ମିକ ଭାବେ ଏକାନ୍ତରେ ବସି ଜପ, ତପ, ଧ୍ୟାନ, ଧାରଣା ମଧ୍ୟ କରୁଥିଲେ । ସାର୍ଦ୍ଧ ୭ ବର୍ଷରୁ ଊର୍ଦ୍ଧ୍ୱ ସମୟ ଅର୍ଥାତ୍ ୧୨ ବର୍ଷ ବୟସ ପର୍ଯ୍ୟନ୍ତ ପ୍ରାଥମିକ ସାହେବୀ ସ୍କୁଲରେ ପଢ଼ା ଶେଷ କରି ମାଧ୍ୟମିକ ଶିକ୍ଷା ପାଇଁ କଟକ ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ଭର୍ତ୍ତି ହୋଇଥିଲେ ।

ବ୍ରିଟିଶ୍ ପରାଧୀନ ଭାରତ ବର୍ଷର ସବୁ ପ୍ରଦେଶରେ ଇଂରାଜୀ ଶିକ୍ଷା ପ୍ରଚଳନ ହେବାପରେ, ଇଂରେଜ ସରକାର ଶେଷ ମୁହୂର୍ତ୍ତରେ ଓଡ଼ିଶାର ପ୍ରଧାନ ସହର କଟକ ଠାରେ ୧୮୬୭ ମସିହାରେ ଗୋଟିଏ ଇଂରାଜୀ ମାଧ୍ୟମିକ ସ୍କୁଲ ପ୍ରତିଷ୍ଠା କରିଥିଲେ । ତତ୍କାଳୀନ ଓଡ଼ିଶାର ଇଂରେଜ ପ୍ରତିନିଧି ଶାସକ, ରେଭେନ୍‌ସାଙ୍କ ନାମରେ ନାମିତ କରି ରେଭେନ୍‌ସା କଲେଜିଏଟ୍ ସ୍କୁଲ ରଖାଯାଇଥିଲା । କଟକର କାଠଯୋଡ଼ି ନଦୀକୂଳସ୍ଥ ସୁନ୍ଦର ମନୋହର ପ୍ରାକୃତିକ ସମାବେଶ ମଧ୍ୟରେ ଏହା ଅବସ୍ଥିତ । ବିଦ୍ୟାଳୟର ଶ୍ରେଣୀ କକ୍ଷଠାରୁ ଆରମ୍ଭ କରି ଅନ୍ତେବାସୀଙ୍କ ପର୍ଯ୍ୟନ୍ତ ଜବିଲି ହୋଷ୍ଟେଲ, ଖେଳ ପଡ଼ିଆ, ବଗିଚା ପ୍ରଭୃତି ଯେପରି ସୁବନ୍ଦୋବସ୍ତ, ସେହିପରି ଆଭ୍ୟନ୍ତରୀଣ ଶାନ୍ତି-ଶୃଙ୍ଖଳା, ଶିକ୍ଷାଦାନ ତଥା ନିୟମାନୁବର୍ତ୍ତୀତା ସୁପ୍ରତିଷ୍ଠ । ସୁଭାଷବାବୁ ଏହି ଠାରେ ଉଚ୍ଚ ଶିକ୍ଷା ଆରମ୍ଭ କଲେ । ସେତେବେଳେ ସ୍କୁଲର ପ୍ରଧାନ ଶିକ୍ଷକ ଥା'ନ୍ତି ଶ୍ରୀଯୁକ୍ତ ବେଣୀମାଧବ ଦାଶ । ଦାଶ ମହାଶୟ ଜଣେ ଶାନ୍ତଶିଷ୍ଟ, ସାଧୁପ୍ରକୃତି, ଉଚ୍ଚକୋଟିର ଚରିତ୍ରବାନ, ଛାତ୍ରବତ୍ସଳ ତଥା ଦେବ ପ୍ରତିମ ଲୋକ ଥିଲେ । ଛାତ୍ରଙ୍କ ପ୍ରତି ତାଙ୍କର ଯେଉଁ ଅନାବିଳ ସ୍ନେହ ଶ୍ରଦ୍ଧା, ବାତ୍ସଲ୍ୟ ମମତା ଥିଲା, ତାହା ଆଜିକାଲି ଶିକ୍ଷକ ମହଲରେ କ୍ୱଚିତ୍ ଦେଖା ଯାଇଥାଏ । ଏହି ସ୍କୁଲର ବାତାବରଣ, ଶିକ୍ଷା ପଦ୍ଧତି ତଥା ପ୍ରାଚୀନ ଉତ୍କଳର ଧର୍ମ, ଶିଳ୍ପକଳା, ଭାସ୍କର୍ଯ୍ୟ, ସାହିତ୍ୟ ସଂସ୍କୃତି, ସୁଭାଷ ଚନ୍ଦ୍ରଙ୍କ ଭବିଷ୍ୟତ ଜୀବନର କର୍ମ ପ୍ରେରଣା ପାଇଁ ବିଶେଷ ଭାବେ ଖୁବ୍ ଯୋଗାଇଥିଲା ବୋଲି କହିଲେ କୌଣସି ଅତ୍ୟୁକ୍ତି ହେବ ନାହିଁ ।

ସୁଭାଷବାବୁ ଯେତେବେଳେ କଲେଜିଏଟ୍ ସ୍କୁଲରେ ପଢ଼ୁଥିଲେ ସେତେବେଳେ ସେ ଉତ୍କଳ ଗୌରବ ମଧୁସୂଦନ ଓ ଉତ୍କଳମଣି ଗୋପବନ୍ଧୁଙ୍କ ସମ୍ପର୍କରେ ଆସିଥିଲେ । ଯେ ବଗବର ଉତ୍କଳମଣି ତଥା ଜାତୀୟ ନେତାମାନଙ୍କ ସଭା ସମିତିରେ ଯୋଗଦେଇ ଭାଷଣ ଶୁଣିବାକୁ ଭଲ ପାଉଥିଲେ । ଏବଂ ସ୍ୱଦେଶୀ ଭାବନାରେ ଅନୁପ୍ରାଣିତ ହୋଇ ଛାତ୍ର ସମାଜରେ ନିଜଦଳ ଗଢ଼ି ନେତୃତ୍ୱ ନେଇ ବିଭିନ୍ନ ସେବା କାର୍ଯ୍ୟରେ ବ୍ୟସ୍ତ ରହୁଥିଲେ । ଓଡ଼ିଶାର ପାଣିପବନ ନୈସର୍ଗିକ ଶୋଭା କୋଳରେ ବର୍ଦ୍ଧିତ ତଥା ଜାତୀୟ ଦେବତା ଜଗନ୍ନାଥଙ୍କ ସାମ୍ୟ ମୈତ୍ରୀ ମନ୍ତ୍ରରେ ଦୀକ୍ଷିତ ହୋଇ ସୁଭାଷଚନ୍ଦ୍ର ନିଜର ଭବିଷ୍ୟତ ପନ୍ଥା ଛାତ୍ର ଜୀବନରେ ସ୍ଥିର କରି ପାରିଥିଲେ । ଆଗରୁ ଉଲ୍ଲେଖ ଅଛି ଯେ, ଲେଖାପଢ଼ାରେ ତାଙ୍କର ବେଶ୍ ସୁଖ୍ୟାତି ଥିଲା । କିନ୍ତୁ ଗତାନୁଗତ ଶ୍ରେଣୀରେ ବସି ପରିଶ୍ରମ କରିବା ସେ ଆଦୌ ପସନ୍ଦ କରୁନଥିଲେ । ତାଙ୍କର ସ୍ମରଣ ଶକ୍ତି ପ୍ରଖର ଥିଲା । ସେ ଥରେ ଯାହା ପଢ଼ୁଥିଲେ ବା ଦେଖୁଥିଲେ, ତାହା ଚିରଦିନ ପାଇଁ ତାଙ୍କର ମାନସ ପଟରେ ଲିପିବଦ୍ଧ ହୋଇ ରହୁଥିଲା । ୧୯୧୩ ମସିହାରେ ସେ ରେଭେନସା କଲେଜିଏଟ୍ ସ୍କୁଲରେ ପ୍ରବେଶିକା ପରୀକ୍ଷା ଦେଇ ଦ୍ୱିତୀୟସ୍ଥାନ ରଖି ପାସ୍ କରିଥିଲେ ଓ ବୃତ୍ତି ମଧ୍ୟ ପାଇଥିଲେ ।

## କଲେଜ ଶିକ୍ଷା

ପ୍ରବେଶିକା ପାସ୍ ପରେ ସୁଭାଷ ଚନ୍ଦ୍ରଙ୍କ ଶିକ୍ଷା କଟକ କାଠଯୋଡ଼ି କୂଳରୁ ସୁଦୂର କଲିକତାର ଜାହ୍ନବୀ କୂଳକୁ ସମ୍ପ୍ରସାରିତ ହେଲା । ୧୯୧୩ରେ କଲିକତା ପ୍ରେସିଡେନ୍ସି କଲେଜରେ ସେ ଆଇ.ଏ. ଶ୍ରେଣୀରେ ନାମ ଲେଖି ପଢ଼ା ଆରମ୍ଭ କଲେ । ଏହି ସମୟ ଭିତରେ ପ୍ରବଳ ଧର୍ମଭାବ ତାଙ୍କ ମନରେ ଜାଗ୍ରତ ହୋଇଥିଲା । ଏହା ପୂର୍ବରୁ ସେ ବୁଦ୍ଧ, ଚୈତନ୍ୟ, ରାମକୃଷ୍ଣ ଓ ବିବେକାନନ୍ଦଙ୍କ ବାଣୀ ଦ୍ୱାରା ପ୍ରଭାବିତ ହୋଇ ସାରିଥିଲେ । ଏପରିକି ଜୀବନର ଆଦର୍ଶ ପୁରୁଷ ଭାବେ ସେ ସ୍ୱାମିଜୀଙ୍କୁ ଗ୍ରହଣ କରି ନେଇଥିଲେ । କିନ୍ତୁ ଛାତ୍ର ଜୀବନରେ ହଠାତ୍ ଥରେ ତାଙ୍କର ଯେପରି ବିରାଗ ଓ ପରିବର୍ତ୍ତନ ଘଟିଲା, ଏଥିରେ ପିତା ମାତା, ଆତ୍ମୀୟ ସ୍ୱଜନ ତଥା କଲେଜ କର୍ତ୍ତୃପକ୍ଷ ବିସ୍ମିତ ଓ ମ୍ରିୟମାଣ ହୋଇ ପଡ଼ିଲେ । କାରଣ, ସେ ଘରେ କିମ୍ବା ବାହାରେ କାହାକୁ କିଛି ନ କହି, ଜଣେ ଘନିଷ୍ଠ ବନ୍ଧୁ ଓ କଲେଜ ସହପାଠୀ, ଶ୍ରୀ ହେମନ୍ତ କୁମାର ସରକାର ସହିତ ମିଶି, ମୁଣ୍ଡିତ ଓ ଗୈରିକ ବସ୍ତ୍ର ଧାରଣ କରି, ଜୀବନର ପରମ ଗତି ବା ମୁକ୍ତି ଆଶାରେ ସଦ୍‌ଗୁରୁ ଅନ୍ୱେଷଣାର୍ଥେ ଚାଲିଗଲେ । ସେ ନଗାଧିରାଜ ହିମାଳୟଠାରୁ ଆରମ୍ଭକରି ଉତ୍ତର ଭାରତର ସମସ୍ତ ତୀର୍ଥସ୍ଥାନ ଯଥା କାଶୀ, ମଥୁରା, ବୃନ୍ଦାବନ, ଅଯୋଧ୍ୟା, ପ୍ରୟାଗରାଜ, ହରିଦ୍ୱାର, ଲକ୍ଷ୍ମଣଝୋଲା ଓ ଆବୁ ପାହାଡ଼ ବୁଲି, ବହୁ ଆଶ୍ରମ, ମଠ

ମଧ୍ୟରେ ଛନ୍ନ ଛନ୍ନ କରି ଖୋଜ, ବହୁ ସାଧୁ, ସନ୍ଥ, ଭକ୍ତ ଓ ମହାପୁରୁଷଙ୍କ ସହ ଦେଖା ସାକ୍ଷାତ୍, ଧର୍ମଚର୍ଚ୍ଚା ଓ ମୁକ୍ତିମାର୍ଗ ନିମନ୍ତେ ଯୁକ୍ତିତର୍କ କରିଥିଲେ । କିନ୍ତୁ କେଉଁଠି ହେଲେ ସେ ନିଜର ମନ ମୁତାବକ ସଦ୍‌ଗୁରୁ ପାଇ ନଥିଲେ । ପ୍ରଥମେ ସେ ଯେତେବେଳେ ଘରେ କାହାକୁ ନକହି ଅନ୍ତର୍ଦ୍ଧାନ ହୋଇଗଲେ । ସେତେବେଳେ ତାଙ୍କର ମମତାମୟୀ ଜନନୀ, ପୁତ୍ର ବିଚ୍ଛେଦ ଶୋକରେ ଅଧୀର ତଥା ଅତ୍ୟନ୍ତ କାତରଗ୍ରସ୍ତ ହୋଇ ପାଗଳାମି ପ୍ରାପ୍ତ ହୋଇ ଯାଇଥିଲେ । ତାଙ୍କର ଖୋଜ ଖବର ନେବାପାଇଁ ଭାରତର ବିଭିନ୍ନ ସ୍ଥାନକୁ ତାରବାର୍ତ୍ତା ପଠାଇବା ସଙ୍ଗେ ସଙ୍ଗେ ସ୍ୱତନ୍ତ୍ରଭାବେ ଖୋଜିବାପାଇଁ ଅନେକ ଲୋକଙ୍କୁ ମଧ୍ୟ ପଠାଯାଇଥିଲା କିନ୍ତୁ କେଉଁଠି ହେଲେ ସନ୍ଧାନ ମିଳି ନଥିଲା । ତାଙ୍କର ପ୍ରତ୍ୟାବର୍ତ୍ତନ ସମ୍ବନ୍ଧେ ଘରର ଏକ ପ୍ରକାର ସମସ୍ତଙ୍କ ମନରେ ନିରାଶ ଓ ନିଶ୍ଚିତ ହୋଇସାରିଥିଲେ ଯେ ସେ ପ୍ରାପ୍ତ ମୃତ୍ୟୁ । କିନ୍ତୁ ହଠାତ୍ ଦିନେ ଆଶ୍ଚର୍ଯ୍ୟଜନକ ଭାବେ ସୁଭାଷଚନ୍ଦ୍ର ନିଜର ସଙ୍ଗୀ ହେମନ୍ତ କୁମାରଙ୍କ ସହ ଭଗ୍ନମନୋରଥ ରୁଗ୍‌ଣଶରୀର ନେଇ ରହସ୍ୟଜନକ ଅଜ୍ଞାତ ବାସରୁ କୁଶଳରେ ଘରକୁ ଫେରିଆସିଥିବା ଦେଖି, ମାତା ପିତାଙ୍କ ଆଖିରୁ ଅଜସ୍ର ଆନନ୍ଦାଶ୍ରୁ ବହି ଯାଇଥିଲା । ପରିବାର ବର୍ଗଙ୍କ ମନରେ ଦାରୁଣ ଦୁଃଖ କଷ୍ଟ ଦେଇଥିବା ଯୋଗୁଁ ଅନୁତାପ କରି ସୁଭାଷ ବାବୁ ନିଜେ କାନ୍ଦି ପକାଇଥିଲେ । ଗୁରୁ ଅନ୍ୱେଷଣରେ ପର୍ଯ୍ୟଟନ ପରିଶ୍ରମର ପ୍ରତିକ୍ରିୟା ସ୍ୱରୂପ ଟାଇଫଏଡ୍‌ରେ ଆକ୍ରାନ୍ତ ହୋଇ ଶଯ୍ୟାଶାୟୀ ହେବାକୁ ପଡ଼ିଥିଲା । ପରେ ସେ କର୍ସିଅଙ୍ଗ ଯାଇ କିଛିଦିନ ଅବସ୍ଥାନ କରି, ସ୍ୱାସ୍ଥ୍ୟ ଲାଭପରେ, ପୁନଃ କଲେଜ ପାଠପଢ଼ାରେ ମନୋନିବେଶ କରିଥିଲେ ।

ସନ୍ୟାସୀ ବ୍ରତ ଧାରଣ କରି ଗୃହତ୍ୟାଗୀ ହେବା ପରିବର୍ତ୍ତେ ଦେଶ ମାତୃକା ସେବାରେ ଜୀବନୋତ୍ସର୍ଗ ପାଇଁ ସୁଭାଷ ଚନ୍ଦ୍ରଙ୍କ ମନ ପରିବର୍ତ୍ତନ ହେବା ମୂଳରେ ବୋଧହୁଏ ଭଗବାନଙ୍କର ଇଚ୍ଛା ହିଁ ଅନ୍ତର୍ନିହିତ ଥିଲା । କାରଣ, ଦିନେ ସେ ନିଶାର୍ଦ୍ଧରେ ଏକ ଅଦ୍‌ଭୁତ ସ୍ୱପ୍ନ ଦେଖିଲେ ଯେ । ପରାଧୀନ, ଭାରତ ମାତା ଅଠତିରିଶ କୋଟି ସନ୍ତାନ ସନ୍ତତି କୋଳରେ ଧରି ଘାନା-ହୀନା-ଜୀର୍ଣ୍ଣ-ଶୀର୍ଣ୍ଣା ମଳିନ ବସ୍ତ୍ର ପରିବୃତା, ଆଲୁଳାୟିତ କେଶା, ଲୋତକଭରା ନୟନରେ ଦଣ୍ଡାୟମାନ ହୋଇ ହାତ ଠାରି ଡାକି ଯେପରି କହୁଛନ୍ତି“—ବାବୁ ସୁଭାଷ ; ମୁଁ ବଡ଼ ହତଭାଗିନୀ ! ତୋପରି ସୁପୁତ୍ର ଥାଉଁ ଥାଉଁ ଆଜି ମୁଁ ବନ୍ଦିନୀ ହୋଇ ଦୈନ୍ୟ ଅବସ୍ଥାରେ କାଳାତିପାତ କରୁଛି, ଅଥଚ ତୁ ଭୀରୁ କାପୁରୁଷ ଭଳି ସନ୍ୟାସୀ ବ୍ରତ ଅବଲମ୍ବନ କରି, ଗୃହତ୍ୟାଗୀ ହେବାକୁ ଇଚ୍ଛା କଲାଣିକି ? ଏହାକଣ ତୋ ପକ୍ଷେ ଉଚିତ ହେବ ? କଦାପି ନୁହେଁ । ମୁଁ କହୁଛି ସେ ପଥ ଛାଡ଼, ତୋତେ ଅନ୍ୟ ପଥଦେଇ ଗତି କରିବାକୁ ହେବ । ଯେଉଁ ପଥଟି ଭୀଷଣ ବନ୍ଧୁର, କଣ୍ଟକିତ ତଥା କଷ୍ଟମୟ,

ଯାହାକୁ ଦୁର୍ଗମ ଗିରି କାନ୍ତାର ମରୁ ଦୁସ୍ତର ପାରାବାର, ଲଙ୍ଘି ଅବହେଳେ କରିବୁ ବିଜୟ ଦୁର୍ଦ୍ଧର୍ଷ ବ୍ରିଟିଶ ବଳ । ମୋର ଅତି ଅଳ୍ପ ସୁଯୋଗ୍ୟା, ଧୀର ପ୍ରସବିନୀ କନ୍ୟାରତ୍ନଟି, ତୋ'ଠି ଜନ୍ମଦେଇ ଧନ୍ୟା ହୋଇଛି । ମାତା ମହୀର ଦୁର୍ଦ୍ଦଶା ମୋଚନ ପାଇଁ ତୋର କଣ କିଛି କର୍ତ୍ତବ୍ୟ ନାହିଁ ? ନିଜର ମୁକ୍ତି ଅପେକ୍ଷା, ଦେଶର ମୁକ୍ତିହିଁ ସର୍ବୋପରି ବାଞ୍ଛନୀୟ ନୁହେଁ କି ? ଏହିପରି ଦିନେ ସ୍ୱପ୍ନବତ ଅଦ୍ଭୁତେ ଭାସି ଭାସି ଆସି ସୁଭାଷ ଚନ୍ଦ୍ରଙ୍କ କର୍ଣ୍ଣ କୁହରରେ ପ୍ରବେଶ କରିଥିଲା ଯେଉଁ ଶୂନ୍ୟବାଣୀ, ଉତ୍ତର ଜୀବନରେ ତାହାର ଯଥାର୍ଥ ପ୍ରମାଣ ମିଳିଛି ।

୧୯୧୫ରେ ସୁଭାଷ ବାବୁ ତାଙ୍କର ଜଣେ ଘନିଷ୍ଠ ବନ୍ଧୁଙ୍କ ନିକଟକୁ ଏହି ମର୍ମରେ ପତ୍ର ଲେଖି ଜଣାଇଥିଲେ ଯେ—'ମୁଁ ସ୍ପଷ୍ଟ ବୁଝିପାରୁଛି ଗୋଟାଏ ନିର୍ଦ୍ଦିଷ୍ଟ ମହାନ୍ ଉଦ୍ଦେଶ୍ୟ ସାଧନ ନିମନ୍ତେ ଭଗବାନ ମୋତେ ପଠାଇଛନ୍ତି । ସେହି ଉଦ୍ଦେଶ୍ୟ ସାଧନ କରିବା ପାଇଁ ମୁଁ ଦେହ ଧାରଣ କରି ରହିଛି । ତେଣୁ ଗତାନୁଗତିକ ଭାବରେ ଦିନ କଟାଇବା ମୋର ଲକ୍ଷ୍ୟ ନୁହେଁ ।'

୧୯୧୫ ମସିହାରେ ସୁଭାଷ ଚନ୍ଦ୍ର କଲିକତା ବିଶ୍ୱ ବିଦ୍ୟାଳୟରୁ ପ୍ରଥମ ଶ୍ରେଣୀରେ ଆଇ. ଏ. ପାସ୍ କରି, ପ୍ରେସିଡେନ୍ସି କଲେଜରେ ଦର୍ଶନ ଶାସ୍ତ୍ରରେ ଅନର୍ସ ରଖି ବି. ଏ. ଅଧ୍ୟୟନ କଲେ । ଏହି ସମୟରେ ଗୋଟାଏ ଅପ୍ରିତୀକର ଘଟଣା ଘଟି, ତାଙ୍କ ଜୀବନରେ ବିରାଟ ପରିବର୍ତ୍ତନ ଆଣିଥିଲା । ସେତେବେଳେ ସେହି କଲେଜରେ ମି: ଏଫ୍: ଓଟେନ୍ ନାମକ ଜଣେ ଇଂରେଜ ଅଧ୍ୟାପକ ଭାରତୀୟ ଛାତ୍ରମାନଙ୍କ ପ୍ରତି ଅଶାଳୀନ କଟୂ ମନ୍ତବ୍ୟ ଦେବା ସଙ୍ଗେ ସଙ୍ଗେ ଦିନେ ଜଣେ ଛାତ୍ରଙ୍କ ଗାଲରେ ଚପେଟାଘାତ ମଧ୍ୟ କରିଥିଲେ । ଏଥିରେ ଛାତ୍ରମାନେ ପ୍ରତିବାଦ ସ୍ୱରୂପ ଦିନକ ପାଇଁ ଧର୍ମଘଟ କରିଥିଲେ ମଧ୍ୟ, ନ୍ୟାୟ ଦେବାରେ କଲେଜ କର୍ତ୍ତୃପକ୍ଷଙ୍କ ତରଫରୁ କୌଣସି ପଦକ୍ଷେପ ନେବା ପରିବର୍ତ୍ତେ ଓଲଟି ସେମାନଙ୍କୁ ଧମକ ଦିଆଗଲା । ପୁଣି ଦିନେ ଓଟେନ୍ ସାହେବ ଛାତ୍ରମାନଙ୍କ ପ୍ରତି ସେହି ଅପମାନ ସୂଚକ ମନ୍ତବ୍ୟ ଶ୍ରେଣୀ କକ୍ଷରେ ପ୍ରକାଶ କରିଥିଲେ । ଜଣେ ଗର୍ବୀ ତଥା ଉଦ୍ଧତ ଇଂରେଜ ଅଧ୍ୟାପକ ମୁଖରେ ବାରଂବାର ଭାରତୀୟଙ୍କ ପ୍ରତି ବିଦ୍ରୂପ ଓ କଟୂକ୍ତି ଶବ୍ଦ ପ୍ରୟୋଗ ସହ୍ୟ କରିବା ଅସମ୍ଭବ ହୋଇ ପଡ଼ିଲା । ତେଣୁ ଛାତ୍ରମାନେ ଉତ୍କ୍ଷିପ୍ତ ହୋଇ ଦଳବଦ୍ଧ ଭାବେ ଅଧ୍ୟାପକ ଓଟେନ ସାହେବଙ୍କୁ କ୍ଲାସରୁ ଟାଣି ଆଣି ନିର୍ଘାତ ଭାବେ ପ୍ରହାର କରିଥିଲେ । ଏଥିରେ ଦଳପତି ଭାବେ ନେତୃତ୍ୱ ନେଇଥିଲେ ସୁଭାଷ ଚନ୍ଦ୍ର ବୋଷ । ଇଂରେଜ ଅଧ୍ୟାପକଙ୍କ ମାଡ଼ ଘଟଣା ସେତେବେଳେ ସମଗ୍ର ଭାରତ ବର୍ଷରେ ବିଭିନ୍ନ ଭାବ ଉଦ୍ଦୀପନାରେ ବେଶ୍ ଚହଳ ସୃଷ୍ଟି କରିଥିଲା । ବ୍ରିଟିଶ୍ ଶାସନାଧୀନ ଭାରତ ବର୍ଷରେ ଜଣେ ଭାରତୀୟ ଛାତ୍ର ଇଂରେଜ ଅଧ୍ୟାପକଙ୍କ ଗାଲରେ ଚପେଟା-ଘାତ କରିବା, କମ୍ ଦୁଃସାହସିକତାର ପରିଚୟ ନୁହେଁ । ଏଥିରେ ଶାସକ ଜାତି

ଇଂରେଜମାନେ ନିଜକୁ ବଡ଼ ଅପମାନ ବୋଧ କଲେ । ତାର ପ୍ରତିକ୍ରିୟା ସ୍ୱରୂପ ସୁଭାଷ ଚନ୍ଦ୍ରଙ୍କ ସମେତ ଅନ୍ୟ କେତେ ଜଣ ଛାତ୍ରଙ୍କୁ ଅନିର୍ଦ୍ଦିଷ୍ଟ କାଳ ପାଇଁ ସେହି କଲେଜରୁ ବହିଷ୍କାର ଆଦେଶ ଦିଆଗଲା । ଇଂରେଜ ଜାତି ପ୍ରତି ସୁଭାଷ ଚନ୍ଦ୍ରଙ୍କର ଏହା ଥିଲା ପ୍ରଥମ ବିପ୍ଳବର ପଦକ୍ଷେପ ମାତ୍ର । ଯାହାକି ଉତ୍ତର ଜୀବନର ସେ ବ୍ରିଟିଶ୍ ସାମ୍ରାଜ୍ୟବାଦୀଙ୍କର ଚରମ ଶତ୍ରୁରୂପ ବିବେଚିତ ହୋଇଥିଲେ । ଉପରୋକ୍ତ ଘଟଣା ସମ୍ବନ୍ଧରେ ସେ ପରେ କହିଥିଲେ—ଏହା ହେଉଛି ମୋ ଜୀବନରେ ପ୍ରଥମ ଏକ ସ୍ମରଣୀୟ ଘଟଣା" ମହତ୍ କାର୍ଯ୍ୟ ସାଧନ ଉଦ୍ଦେଶ୍ୟରେ ଦୁଃଖ କଷ୍ଟ ଓ ନିର୍ଯ୍ୟାତନା ଭୋଗ କରିବାରେ ଯେଉଁ ଆନନ୍ଦ ମିଳିଥାଏ । ତାହା ମୁଁ ପ୍ରଥମ ଥର ପାଇଁ ଆଜି ଅନୁଭବ କଲି । ଏହାହିଁ ମୋ ଜୀବନରେ ଦେଶ ସ୍ୱଦେଶିକତାର ପ୍ରଥମ ଗତି, ସଂଗ୍ରାମ ଓ କଠୋର ତ୍ୟାଗମୂଳକ ପ୍ରେରଣାର ଉତ୍ସ ।

୧୯୧୭ରେ ତତ୍‌କାଳୀନ କଲିକତା ହାଇକୋର୍ଟ ଜଷ୍ଟିସ୍ ଭାଇସ୍ ଚାନ୍‌ସେଲର୍ ସାର୍ ଆଶୁତୋଷ ମୁଖାର୍ଜୀଙ୍କ ହସ୍ତକ୍ଷେପ ଫଳରେ ସୁଭାଷ ଚନ୍ଦ୍ର ପୁଣି ଦ୍ୱିତୀୟ ଥର ପାଇଁ ସ୍କଟିଶ୍ ଚର୍ଚ୍ଚ କଲେଜରେ ଜଏନ୍ କରିଥିଲେ । ୧୯୧୯ ମସିହାରେ ସେ ଦର୍ଶନ ଶାସ୍ତ୍ରରେ ଅନର୍ସ ନେଇ ପ୍ରଥମ ବିଭାଗରେ ଦ୍ୱିତୀୟ ସ୍ଥାନ ଅଧିକାର କରି କୃତୀତ୍ୱର ସହ ବି. ଏ. ପାସ୍ କରିବା ପରେ, ମନସ୍ତତ୍ତ୍ୱ ଏମ୍. ଏ. ଶ୍ରେଣୀରେ ଯୋଗ ଦେଇଥିଲେ । ସେହି ସମୟରେ ୟୁନିଭରସିଟି ଟ୍ରେନିଙ୍ଗ୍ କୋର୍‌ରେ ଭର୍ତ୍ତି ହୋଇ ପ୍ରାରମ୍ଭିକ ସାମରିକ ଶିକ୍ଷା ମଧ୍ୟ ସେ ଗ୍ରହଣ କରିଥିଲେ ।

## ବିଲାତ ଆଗମନ

୧୯୧୯ ମସିହାରେ ଜାଲିଆନାୱାଲା ବାଗ୍‌ଠାରେ ପଞ୍ଜାବର ପାଶବିକ ଲେଫ୍ ଗଭର୍ଣ୍ଣର 'ଡାୟାରଙ୍କ ଦ୍ୱାରା' ଯେତେବେଳେ ସର୍ବସାଧାରଣଙ୍କ ପକ୍ଷରୁ ଆନନ୍ଦ ମୁଖରିତ ଉତ୍ସବ ଅବସରରେ ପାଳନ ହେଉଥିଲା, ଠିକ୍ ସେତିକିବେଳେ ଜେନେରାଲ୍ ଓ ଡାୟାର୍ ନାମକ ଜଣେ ବ୍ରିଟିଶ ସାମରିକ ଅଫିସର ନିରସ୍ତ୍ର ଓ ଶାନ୍ତିକାମୀ ଜନତା ଉପରେ ବର୍ବରୋଚିତ ମେଶିନ୍‌ଗନରୁ ଗୁଳି ଚଳାଇ ସହସ୍ରାଧିକ ନିରୀହ ଶିଶୁ, ବାଳକ, ସ୍ତ୍ରୀ ଓ ପୁରୁଷଙ୍କୁ ଅତି ନିର୍ମମ ଓ ନୃଶଂସ ଭାବେ ହତ୍ୟା କରିଥିଲେ । ଯାହାକି ଭାରତର ଇତିହାସରେ ଇଂରେଜମାନଙ୍କ ଆଚରଣ ସମ୍ବନ୍ଧରେ ଚିର କଳଙ୍କିତ ଅଧ୍ୟାୟ ହୋଇ ରହିଥିବ । ଏ ଘଟଣାରେ ସମଗ୍ର ଭାରତ ବର୍ଷ ଆକୁମାରୀ ହିମାଚଳ ପର୍ଯ୍ୟନ୍ତ ଉତ୍ତେଜିତ ଜନତା ବ୍ରିଟିଶ ବିରୁଦ୍ଧରେ ସର୍ବସଉଦ୍‌ବେଗ ଓ ପ୍ରବଳ ପ୍ରତିବାଦ ଜଣାଇଲେ । ଏଥିରେ ମୁସଲମାନ୍ ସମ୍ପ୍ରଦାୟ ମଧ୍ୟ ବ୍ରିଟିଶ ବିରୁଦ୍ଧରେ ଜୋର୍‌ସୋର୍ ଖିଲାଫତ୍ ଆନ୍ଦୋଳନ ଜାରି କରିନେଲେ । ହିନ୍ଦୁ ମୁସଲିମ୍ ଉଭୟ ସମ୍ପ୍ରଦାୟ ପକ୍ଷରୁ ପ୍ରବଳ ଗଣ ଆନ୍ଦୋଳନ ସୃଷ୍ଟି ହେବା ଦେଖି ।

ଇଂରେଜ ସରକାର ଭାରତ ବ୍ୟାପି କଠୋର ଦମନ ନୀତି ଅବଲମ୍ବନ କରି ଜନତା ମନରେ ଭୀତି ସଞ୍ଚାର କରିବାକୁ ଲାଗିଲେ । ଏଭଳି ସଙ୍କଟାପନ୍ନ ପରିସ୍ଥିତିରେ ସ୍ୱଦେଶାଭିମାନୀ, ଭାବପ୍ରବଣ ସୁଭାଷ ଚନ୍ଦ୍ର ପାଠପଢ଼ା ଛାଡ଼ି, କାଳେ ଆନ୍ଦୋଳନରେ ଝାମ୍ପଦେବା ଆଶଙ୍କା କରି, ପିତା ଜାନକୀ ନାଥ ବୋଷ, କୃତବିଦ୍ୟ ପୁତ୍ର ସୁଭାଷଙ୍କୁ ଉଚ୍ଚ ଶିକ୍ଷା ଦେବା ପରିକଳ୍ପନା କରି, ଭାରତବର୍ଷରୁ ବିଦାୟ ଦେଇ ସୁଦୂର ବିଲାତକୁ ପଠାଇବା ପାଇଁ ସ୍ଥିର କଲେ ।

କିନ୍ତୁ ଜାନକୀ ବାବୁ ପୁତ୍ରର ମତିଗତି ଓ ସ୍ୱଭାବ ସମ୍ବନ୍ଧ ଆଗରୁ ବେଶ୍ ଭଲଭାବେ ଜାଣିଥିଲେ ଯେ, ସେ ପିଲାଟି ଦିନରୁ ସ୍ୱାଧୀନ ଚେତା ଓ ଜାତୀୟ ଅଭିମାନୀ ଏ ପ୍ରସ୍ତାବରେ ସେ ରାଜି ହେବେ ନାହିଁ, ତାଙ୍କ ମନରେ ଘୋର ସନ୍ଦେହ ଜାତ ହୋଇଥିଲା । କାରଣ ଉଚ୍ଚ ଶିକ୍ଷା ପାଇଁ ସେ ଇଂରେଜ ସରକାରଙ୍କ ଅଧୀନରେ ଚାକିରି ଖଟି ଗୋଲାମଗିରି କରି, ଭୋଗ ବିଳାସରେ ଜୀବନ ବିତାଇବା ପରିବର୍ତ୍ତେ ସେ ଚାହୁଁଥିଲେ ଯେତେବଡ଼ ବାଧା-ବିଘ୍ନ ଆସୁନା କାହିଁକି, ଶତ ନିର୍ଯାତନା, ଲାଞ୍ଛନା ଓ ଅପମାନ ସହ୍ୟକରି ମଧ୍ୟ ଦେଶ ଓ ଜାତିର ଅଗଣିତ ପଦଦଳିତ, ନିଷ୍ପେଷିତ ଦୁଃସ୍ଥ ଲାଞ୍ଛିତ, ଅବହେଳିତ ଓ ବୁଭୁକ୍ଷୁମାନଙ୍କ ସେବାରେ ସେ ନିଜେ ଜୀବନ ଉତ୍ସର୍ଗ କରିବେ । ଏହାଥିଲା ସୁଭାଷ ଚନ୍ଦ୍ରଙ୍କର ପିଲାଦିନର ସ୍ୱପ୍ନ ଓ ସଙ୍କଳ୍ପ । କିନ୍ତୁ ଚାକିରି କରିବା ଉଦ୍ଦେଶ୍ୟରେ ଉଚ୍ଚଶିକ୍ଷା ଦେବାପାଇଁ ତାଙ୍କର ପିତା, ହଠାତ ତାଙ୍କୁ ବିଲାତ ପଠାଉଥିବା ପ୍ରସ୍ତାବ ଶୁଣି ସେ ଅତ୍ୟନ୍ତ ବ୍ୟଥିତ ଓ ବିଚଳିତ ହୋଇ ପଡ଼ିଲେ । ପରିଶେଷରେ ବହୁ ମାନସିକ ତର୍କ ବିତର୍କ ଦ୍ୱନ୍ଦ୍ୱ ମଧ୍ୟରେ ନିଜର ବନ୍ଧୁ ବାନ୍ଧବ ଓ ଆତ୍ମୀୟସ୍ୱଜନଙ୍କ ଅନୁରୋଧ ତଥା ପରାମର୍ଶ କ୍ରମେ ନିଜ ଇଚ୍ଛା ବିରୁଦ୍ଧରେ, ପିତାଙ୍କ ଇଚ୍ଛାର ବିରୁଦ୍ଧାଚରଣ କଲେ, କାଳେ ତାଙ୍କ ମନରେ ଦୁଃଖହେବ ଭାବି, ସେ ପିତୃଆଦେଶ ପାଳନ କରି, ବିଲାତ ଯିବାପାଇଁ ନୀରବ ସମ୍ମତି ଜଣାଇଲେ । ପୁତ୍ରଙ୍କର ସମ୍ମତିରେ ଜାନକୀ ବାବୁ ଆନନ୍ଦିତ ହେଲେ ସତ, କିନ୍ତୁ ସିଏ ଯେଉଁ ଗୋଟିଏ ଢେଲାରେ ଯୋଡ଼ିଏ ପକ୍ଷୀ ମାରିବା ପରିକଳ୍ପନା କରିଥିଲେ, ତାହା ଆଉ ସଫଳ ହେଲା ନାହିଁ । ସୁଭାଷ ବାବୁ ବିଲାତରେ ପହଞ୍ଚି ପାଶ୍ଚାତ୍ୟ ସଭ୍ୟତାର ଚାଲିଚଳଣି, ସେମାନଙ୍କର ଚାକଚକ୍ୟ ଆଡ଼ମ୍ବର ପୂର୍ଣ୍ଣ ଢଙ୍ଗ ଢାଙ୍ଗରେ ନ'ଭୁଲି, ସ୍ଥାନୀୟ ଅଧିବାସୀଙ୍କ ବ୍ୟବହାର ଆଚରଣ ସମ୍ବନ୍ଧେ କେତେକ ବିଷୟ ଅନୁଧ୍ୟାନ, କରି ସେଠାର ଶୃଙ୍ଖଳିତ ଜୀବନ ଯାପନ ପ୍ରଣାଳୀ ଓ ଲୋକଙ୍କ କାର୍ଯ୍ୟ ଦକ୍ଷତାରେ ସେ ବିଶେଷ ଅନୁପ୍ରାଣିତ ହୋଇଥିଲେ । ଭାରତ ଏବଂ ବିଲାତ ଅଧିବାସୀଙ୍କ ମଧ୍ୟରେ ଗୋଟାଏ ତୁଳନାତ୍ମକ ସନ୍ଦର୍ଭ କରି ମନରେ ବଡ଼ ଦୁଃଖ ଓ ଅନୁତାପ ଭୋଗକଲେ । କାରଣ, ସେ ଦେଖିଲେ, ସେଠିକାର ଅଧିବାସୀମାନେ ଯେପରି ସୁସ୍ଥ' ସବଳ ଓ ସ୍ୱାସ୍ଥ୍ୟବାନ, ସେହିପରି ଶାନ୍ତଶିଷ୍ଟ, ନିରଳସ ଓ କର୍ମ ପ୍ରବଣ । ସେମାନଙ୍କର

ବ୍ୟକ୍ତିଗତ ସ୍ୱାଧୀନତା, ବୈଜ୍ଞାନିକ ପଦ୍ଧତିରେ କାରିଗରୀ ଶିକ୍ଷା, ସାମରିକ କୌଶଳ ଅଭିଜ୍ଞତା ତଥା ଆର୍ଥିକ ସ୍ୱଚ୍ଛଳତା ପ୍ରଭୃତି କେବଳ ତାଙ୍କ ଦେଶ ସ୍ୱାଧୀନତା ଥିବାଯୋଗୁଁ ଏ ସବୁ ସମ୍ଭବ ହୋଇପାରିଛି । ସେଥିପାଇଁ ଭାରତବାସୀ ଯଦି ଇଂରେଜଙ୍କ ସମକକ୍ଷ ବଳଶାଳୀ ହେବାକୁ ଚାହାଁନ୍ତି, ତାହେଲେ ଭାରତ ବର୍ଷକୁ ବ୍ରିଟିଶ ଶାସନ କବଳରୁ ସମ୍ପୂର୍ଣ୍ଣ ମୁକ୍ତ କରିବାକୁ ହେବ । ଏହି ଧାରଣା ସୁଭାଷ ଚନ୍ଦ୍ରଙ୍କ ମନରେ ଦୃଢ଼ୀଭୂତ ହୋଇଥିଲା ।

## ଆଇ. ସି. ଏସ୍.

ସୁଭାଷ ବାବୁଙ୍କର ପ୍ରକୃତ ପିଲାଟି ଦିନରୁ ଯେପରି ଆଦର୍ଶ ସ୍ଥାପିତ ଥିଲା, ସୁଦୂର ବିଲାତ୍ ସହରକୁ ଯାଇ ପାଶ୍ଚାତ୍ୟ ଦେଶ ବାୟୁ ମଣ୍ଡଳରେ ରହିମଧ୍ୟ ତାହାକୁ କୌଣସି ପରିବର୍ତ୍ତନ ଘଟିନ'ଥିଲା । ବିଲାତ୍ ରହଣି କାଳ ମଧ୍ୟରେ ଭାରତୀୟ ଛାତ୍ରମାନଙ୍କର ସେ ନେତା ଥିଲେ । ଅନ୍ୟାନ୍ୟ ଛାତ୍ରଙ୍କପରି ବିଳାସ ବ୍ୟସନରେ ବୁଡ଼ି, କୌଣସି ମତେ ସେ ନିଜର ଅମୂଲ୍ୟ ସମୟକୁ ନଷ୍ଟ କରୁନ'ଥିଲେ । ଦୀର୍ଘ ୩ ବର୍ଷର ଦୁରୂହ ଆଇ. ସି. ଏସ୍. ପାଠ୍ୟକ୍ରମ, ମାତ୍ର ୮ ମାସରେ କଠିନ ପରିଶ୍ରମ ଫଳରେ ଆୟତ୍ତ କରି ପରୀକ୍ଷା ଦେବାପାଇଁ ସେ ପ୍ରସ୍ତୁତ ହୋଇଥିଲେ । ସେତେବେଳେ କେତେଜଣ ସହପାଠୀ ବନ୍ଧୁ ତାଙ୍କୁ କହୁଥିଲେ "—ଆଉ କିଛିଦିନ ପଢ଼ି ପରୀକ୍ଷା ଦେଇଥିଲେ ଭଲ ହୋଇଥାନ୍ତା ।" କିନ୍ତୁ ସେ କହୁଥିଲେ ଯେ, ପରୀକ୍ଷାରେ ଯଦି ମାତ୍ର ଦୁଇଜଣ ପାସ୍ କରନ୍ତି, ତା'ହେଲେ ସେଥି ମଧ୍ୟରୁ ନିଶ୍ଚିତଭାବେ ଜଣଙ୍କର ନାମ ଏସ୍. ସି. ବୋଷ ରହିଥିବ । ବାସ୍ତବରେ ସେ ଜଣେ ଆତ୍ମ ବିଶ୍ୱାସୀ ଓ ଦୃଢ଼ମନା ଥିଲେ । ନିଜର କାର୍ଯ୍ୟ ଓ ଶକ୍ତି ସାମର୍ଥ୍ୟ ଉପରେ ତାଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ଥିଲା । ତେଣୁ ସେ ଆଇ. ସି. ଏସ୍. ପରୀକ୍ଷାରେ ଇଂରାଜୀ ଭାଷା ରଚନାରେ ପ୍ରଥମ ସ୍ଥାନ ରଖି, ଇଂରେଜ୍ ତଥା ସମସ୍ତ ବ୍ରିଟିଶ ଉପନିବେଶ ପରୀକ୍ଷାର୍ଥୀଙ୍କ ମଧ୍ୟରେ ଚତୁର୍ଥ ସ୍ଥାନ ଦଖଲ କରି, ଏତେ ଅଳ୍ପ ସମୟ ମଧ୍ୟରେ ଅତି କଠିନତମ ଆଇ. ସି. ଏସ୍., ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହେବା ବାସ୍ତବରେ ସୁଭାଷ ଚନ୍ଦ୍ରଙ୍କ ଅସାଧାରଣ ଧୀଶକ୍ତି, ବୁଦ୍ଧି ଅଲୌକିକ ପାଣ୍ଡିତ୍ୟର ଅପୂର୍ବ ପରିଚୟ ମିଳେ । କୌଣସି ପରୀକ୍ଷାରେ ପାସ୍‌ହେଲେ ମନରେ ନିଶ୍ଚୟ ଆନନ୍ଦ ଆସେ । କିନ୍ତୁ ସେତେବେଳେ ସେ ଜଣେ ବନ୍ଧୁଙ୍କ ନିକଟକୁ ଲେଖିଥିଲେ "—କଥାଟା ଶୁଣି ତୁମେ ବଡ଼ ଦୁଃଖିତ ହେବ ଯେ, ମୁଁ ଆଇ. ସି. ଏସ୍‌ରେ ପାସ୍ କରିଛି । କିନ୍ତୁ ଉପାୟ କ'ଣ ! ଯଦି ପାସ୍ କରିଛି, କିନ୍ତୁ ମୁଁ ଚାକିରୀ କରିବ ନାହିଁ ।"

ଏଠାରେ ଉଲ୍ଲେଖଯୋଗ୍ୟ ଯେ ୧୯୨୦ ମସିହାରେ ମହାତ୍ମା ଗାନ୍ଧିଜୀଙ୍କ ନେତୃତ୍ୱରେ ଦେଶସାରା ଅସହଯୋଗ ଆନ୍ଦୋଳନ ଚାଲିଥାଏ । ବିଶ୍ୱକବି ରବୀନ୍ଦ୍ର

ନାଥ ଠାକୁର 'ସାର୍' ଉପାଧି ବର୍ଜ୍ଜନ କରିଥାନ୍ତି । ଦେଶବନ୍ଧୁ ଚିତ୍ତରଞ୍ଜନ ଦାଶ ନିଜର ପ୍ରଥା ସର୍ବସ୍ୱ ଦେଶପାଇଁ ଦାନ କରି ଦେଇଥିଲେ । ସୁଭାଷ ବାବୁଙ୍କ ପିତା ଜାନକୀନାଥ ବୋଷ ମଧ୍ୟ 'ରାୟବାହାଦୁର' ଉପାଧି ଫେରାଇ ଦେଇଥିଲେ । ମୋଟାମୋଟି ଭାରତ ବର୍ଷରେ ସର୍ବତ୍ର ଅଶାନ୍ତି ଓ ଉତ୍ତେଜନା ଲାଗି ରହିଥିବା ସମ୍ବାଦ ପାଇ ବିଳାତରେ ତାଙ୍କର ମନ ବେଶ୍ ବ୍ୟାକୁଳ ହୋଇ ଉଠିଥିଲା ।

ଆଗରୁ କୁହାଯାଇଛି ଯେ, ସୁଭାଷ ଚନ୍ଦ୍ରଙ୍କର ଲକ୍ଷ୍ୟ ଓ ମନୋଭାବ ଭିନ୍ନଥିଲା । ଇଂରେଜ ସରକାରଙ୍କ ଅଧୀନରେ କୌଣସି ପ୍ରକାର ଚାକିରି କରିବା ପକ୍ଷପାତୀ ସେ ନଥିଲେ । କୃତିତ୍ୱର ସହିତ ଆଇ. ସି. ଏସ୍. ପାସ୍ କରିଥିଲେ ମଧ୍ୟ ତାଙ୍କଠାରେ ସୁଦ୍ଧା ଧୂର୍ବ ମନୋଭାବର ପରିବର୍ତ୍ତନ ଘଟିନଥିଲା । ବରଂ ଏ କୃତିତ୍ୱରେ ସେ ଅନୁତପ୍ତ ଓ ଅବାଞ୍ଛିତ ବୋଲି ନିଜକୁ ମନେ କରୁଥିଲେ । ତାଙ୍କ ସମ୍ମୁଖରେ ଦୁଇଟି ପଥ ଖୋଲିଥିଲା । ଗୋଟିଏ ଦିଗରେ ବିଦେଶୀ ସରକାରଙ୍କ ଅଧୀନ ସିଭିଲସର୍ଭିସ୍ ଚାକିରିର ଆମନ୍ତ୍ରଣ, ଅନ୍ୟ ଦିଗରେ ସ୍ୱାଧୀନ ଦେଶମାତାର ଆହ୍ୱାନ । ଗୋଟିଏ ପଥକୁ ଅନୁସରଣ କଲେ, ମାସକୁ ଅଢ଼ାଇ ହଜାର ଟଙ୍କାର ସିଭିଲ୍ ସର୍ଭିସ ଏବଂ ଭବିଷ୍ୟତରେ ଉଚ୍ଚ ପଦୋନ୍ନତି ମଧ୍ୟ ନିଶ୍ଚିତ ଆଶା । ଅନ୍ୟ ପଥଟିର ଉଲ୍ଲେଖ ନିଷ୍ପ୍ରୟୋଜନ କାରଣ ଏଥିରେ ଭୀଷଣ ଦୁଃଖ, କଷ୍ଟ ଓ ନିର୍ଯ୍ୟାତନା, ଦୈହିକ ଓ ମାନସିକ ଯନ୍ତ୍ରଣା ସଙ୍ଗେ ଚିର ଦାରିଦ୍ର୍ୟତା, ଲାଞ୍ଛନା ଓ ଅପମାନ ଛଡ଼ା ଅନ୍ୟ କିଛି ଆଶା ନାହିଁ । ଅଥଚ ସେ ଶେଷ ପଥର ଯାତ୍ରୀ ହେବାପାଇଁ ଦୃଢ଼ ନିଷ୍ପତ୍ତି ଗ୍ରହଣ କରି ଭାରତୀୟଙ୍କ ପକ୍ଷେ ସ୍ୱର୍ଗ ସମାନ ସେହି ସିଭିଲ୍ ସର୍ଭିସ ଅବହେଳା କ୍ରମେ ତାହାର ପଦ ତ୍ୟାଗପତ୍ର ଦାଖଲ କରି ଦେଇଥିଲେ । ମହାନ୍ ତ୍ୟାଗର ଜ୍ୱଳନ୍ତ ପ୍ରତିମୂର୍ତ୍ତୀ ତଥା ଅପୂର୍ବ ବିଜୟ ମୁକୁଟ ପରିଧାନ କରି ସୁଭାଷଚନ୍ଦ୍ର ୧୯୨୧ ମସିହା ମେ ମାସରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ ବି. ଏ (ଅନର୍ସ) ଡ଼ିଗ୍ରୀ ଲାଭକଲେ । କିନ୍ତୁ ଆଶ୍ଚର୍ଯ୍ୟର କଥା, ଡିଗ୍ରୀ ସମାବର୍ତ୍ତନ ଉତ୍ସବ ପରିତ୍ୟାଗ କରି ସେହି ବର୍ଷ ଜୁଲାଇ ମାସ ୧୬ ତାରିଖରେ ଦେଶକୁ ଫେରି ଆସିଲେ ।

## ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ

ସୁଭାଷ ଚନ୍ଦ୍ର ବମ୍ବେଠାରେ ଜାହାଜରୁ ଅବତରଣ କରି ସିଧାସଳଖ ଯାଇ ଗାନ୍ଧିଜୀଙ୍କ ନିକଟରେ ପହଞ୍ଚିଲେ ଏବଂ ନିଜର ସଂକଳ୍ପ କଥା ଜଣାଇ ଆଳାପ ଆଲୋଚନା କରିଥିଲେ । କିନ୍ତୁ ଗାନ୍ଧିଜୀଙ୍କ କାର୍ଯ୍ୟ ପ୍ରଣାଳୀ ବିଷୟରେ ସେ ସନ୍ତୁଷ୍ଟ ନ ହୋଇ ପାରିଥିବା ଜାଣି ଗାନ୍ଧିଜୀ ତାଙ୍କୁ ପରାମର୍ଶ ଦେଇଥିଲେ ଯେ, "—ତୁମେ ଯାଇ କଲିକତାରେ ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ସହ ଦେଖାକର ।" ଏହାପରେ ସେ କଲିକତା ଆସି, ଦେଶବନ୍ଧୁଙ୍କ ସହ ସାକ୍ଷାତ କରି ଜାତୀୟ ଆନ୍ଦୋଳନ ସମ୍ବନ୍ଧେ

ଆଲୋଚନା କରୁଥିଲେ । ଏବଂ ଦେଶ ବନ୍ଧୁଙ୍କ କଥାରେ ଅନୁପ୍ରାଣିତ ହୋଇ ତାଙ୍କର ଅନୁଚର ରୂପେ ଦେଶ ସେବାରେ ନିଜକୁ ନିୟୋଜିତ କରିବା ପାଇଁ ସ୍ଥିର କଲେ ।

## ଜାତୀୟ କଲେଜର ଅଧ୍ୟକ୍ଷ

ଗାନ୍ଧିଜୀଙ୍କ ଆହ୍ୱାନ କ୍ରମେ ଜାତୀୟ ଆନ୍ଦୋଳନରେ ଯୋଗଦେବା ପାଇଁ ସେତେବେଳେ ବହୁ ଲୋକ ସରକାରୀ ଚାକିରୀ ବିସର୍ଜନ କଲେ ଏବଂ ଅଗଣିତ ଛାତ୍ର ଛାତ୍ରୀ ସ୍କୁଲ କଲେଜ ବର୍ଜନ କରି ମଧ୍ୟ ଆନ୍ଦୋଳନରେ ଝାମ୍ପ ଦେଲେ । ସେହି ସବୁ ଛାତ୍ରମାନଙ୍କୁ ଶିକ୍ଷା ଦେବା ନିମନ୍ତେ ପ୍ରତି ପ୍ରଦେଶରେ ଜାତୀୟ ବିଦ୍ୟାଳୟ ମାନ ପ୍ରତିଷ୍ଠିତ ହୋଇଥିଲା । ଏବଂ କଂଗ୍ରେସର ଦ୍ୱାରା ଏହାର ଦାୟିତ୍ୱ ସୁଭାଷ ଚନ୍ଦ୍ରଙ୍କ ଉପରେ ନ୍ୟସ୍ତ ଥିଲା । ଏଣୁ ପ୍ରଥମେ କଲିକତାରେ ଏପରି କଲେଜ ପ୍ରତିଷ୍ଠା କରି ତାହାର ଅଧ୍ୟାପକ ଭାବେ ସେ ଛାତ୍ରମାନଙ୍କ ମନରେ ଜାତୀୟତା ଓ ତ୍ୟାଗ ଭାବ ଶିକ୍ଷା ଦେଉଥିଲେ । ଇଂରେଜ ବିରୁଦ୍ଧରେ ଚାଲିଥିବା ଆନ୍ଦୋଳନକୁ ପ୍ରଭାବିତ କରିବା ପାଇଁ ଏହିସବୁ ଜାତୀୟ କଲେଜର ଶିକ୍ଷା ଉଦ୍ଦିଷ୍ଟ ଥିବା, ବ୍ରିଟିଶ ସରକାର ଏହାକୁ ବନ୍ଦ କରି ଦେବା ପାଇଁ ଚକ୍ରାନ୍ତ କଲେ, କିନ୍ତୁ ବହୁ ବାଧା ବିଘ୍ନ ସତ୍ତ୍ୱେ, ସେ ଏହିସବୁ ଅନୁଷ୍ଠାନକୁ ବଞ୍ଚାଇ ରଖିଥିଲେ ।

## ଯୁବରାଜ ବୟକଟ୍

ତତ୍କାଳୀନ ଇଂଲଣ୍ଡରେ ଯୁବରାଜ ପ୍ରିନସ ଅଫ୍ ୱେଲ୍ସ୍ ଭାରତ ଭ୍ରମଣରେ ଆସି ୧୯୨୧ ମସିହା ନଭେମ୍ବର ୧୭ ତାରିଖ ଦିନ ବମ୍ବେରେ ପଦାର୍ପଣ କରିଥିଲେ । ସେତେବେଳେ କଂଗ୍ରେସର ନିର୍ଦ୍ଦେଶକ୍ରମେ ସରକାରୀ ନୀତିର ପ୍ରତିବାଦ ସ୍ୱରୂପ ସମଗ୍ର ଭାରତବର୍ଷରେ ଶାନ୍ତିପୂର୍ଣ୍ଣ ଭାବେ ହରତାଳ ପାଳନ କରାଯାଇଥିଲା ୨୫-୧୨-୨୧ରେ ବଙ୍ଗପ୍ରଦେଶ ସରକାର ସୁଭାଷଚନ୍ଦ୍ରଙ୍କ ଗଠିତ ସ୍ୱେଚ୍ଛା-ସେବକ ବାହିନୀକୁ ବେ-ଆଇନ ଘୋଷଣା କରିବା ସଙ୍ଗେ ସଙ୍ଗେ କଲିକତାରେ କୌଣସି ସଭା ବା ଶୋଭାଯାତ୍ରା ହେବନାହିଁ ବୋଲି ନିଷେଧ ଆଦେଶ ଜାରିକଲେ । କିନ୍ତୁ ନେତାଗଣ ଏହି ଆଦେଶ ଅମାନ୍ୟ କରିବା ଫଳରେ ପ୍ରଥମ ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ ହେଲା । ଏଥିରେ ବ୍ରିଟିଶ ସରକାର ଭୀଷଣଭାବେ ରାଗିଯାଇ ଦେଶବନ୍ଧୁ ଚିତ୍ତରଞ୍ଜନ, ସୁଭାଷ ଚନ୍ଦ୍ର ମୌଲନା ଆଜାଦ ଓ ବୀରେନ୍ଦ୍ର ଶାସମଲ ପ୍ରଭୃତି ବହୁ ନେତାଙ୍କୁ ଗିରଫ୍ କଲେ ସୁଭାଷ ଚନ୍ଦ୍ର ଓ ଦେଶବନ୍ଧୁଙ୍କୁ ୬ ମାସ ଲେଖାଏଁ କାରାଦଣ୍ଡ ହେଲା । ସୁଭାଷ ବାବୁଙ୍କର ଏହା ପ୍ରଥମ କାରାଦଣ୍ଡ । ଏତେକମ୍ ଦଣ୍ଡଯୋଗୁଁ, ସେ କହିଥିଲେ "—ମୁଁ କ'ଣ ମୁର୍ଗୀ ଚୋର ଯେ, ମୋତେ ଏତେ କମ୍ ଦଣ୍ଡ ହେଲା ?" ଜେଲ ଭିତରେ ଦେଶ ବନ୍ଧୁ ଓ ସୁଭାଷ ବାବୁଙ୍କ ମଧ୍ୟରେ ଘନିଷ୍ଠତା ଖୁବ୍ ବଢ଼ି ଯାଇଥିଲା ।

## ଉତ୍ତର ବଙ୍ଗ ବନ୍ୟା

୧୯୨୨ ମସିହାରେ ଉତ୍ତର ବଙ୍ଗରେ ପ୍ରବଳ ବନ୍ୟା ହୋଇଥିଲା, ସେହି ସମୟରେ ସୁଭାଷ ବାବୁ ଜେଲରୁ ମୁକ୍ତିଲାଭ କରି 'ସଙ୍କଟତ୍ରାଣ ସମିତି' ନାମକ ଗୋଟିଏ ସଂସ୍ଥା ଗଠନ କଲେ । ସ୍ୱେଚ୍ଛାସେବୀ ନଗଦ ୪ ଲକ୍ଷ ଟଙ୍କା, ପ୍ରଚୁର ଲୁଗା ଓ ଖାଦ୍ୟ ଦ୍ରବ୍ୟ ସଂଗ୍ରହ କରି, ସ୍ୱେଚ୍ଛା ସେବକ ବାହିନୀ କରିଆଣି ବନ୍ୟା ପୀଡ଼ିତ ଲୋକଙ୍କୁ ଏହି ସବୁ ବିତରଣ କରିଥିଲେ ।

## ସ୍ୱରାଜ ଦଳ ଓ କର୍ପୋରେସନ ପ୍ରଧାନ କର୍ମକର୍ତ୍ତା

୧୯୨୨ ମସିହା ଡ଼ିସେମ୍ବର ମାସରେ ଦେଶବନ୍ଧୁଙ୍କ ସଭାପତିତ୍ୱରେ ଗୟାଠାରେ କଂଗ୍ରେସ ଅଧିବେଶନ ହେଲା । ଏଥିରେ କଂଗ୍ରେସ 'ସ୍ୱରାଜଦଳ' ନାମରେ ଗୋଟିଏ ଦଳ ଗଠନ କରି ତାହାର ସଭାପତି ଓ ସମ୍ପାଦକ ଭାବେ ଯଥାକ୍ରମେ ଦେଶବନ୍ଧୁ ଚିତ୍ତରଞ୍ଜନ ଓ ସୁଭାଷଚନ୍ଦ୍ର ନିଯୁକ୍ତ ହୋଇଥିଲେ । ସେମାନେ ପୁଣି ସେ କଲିକତାରେ 'ଫରୱାର୍ଡ଼', ଓ 'ବାଙ୍ଗଲାରକଥା' ନାମକ ଦୁଇଟି ପତ୍ରିକା ସମ୍ପାଦନା କରି ସେଥିରେ ସ୍ୱରାଜ ଦଳର ମତ ପ୍ରଚାର କରୁଥିଲେ । ୧୯୨୩ରେ ସେ ବଙ୍ଗ ପ୍ରାଦେଶିକ କମିଟିର ସାଧାରଣ ସମ୍ପାଦକ ନିଯୁକ୍ତ ହୋଇ କୃଷକ ଓ ଶ୍ରମିକମାନଙ୍କ ଅବସ୍ଥା ଉନ୍ନତି କଲେ 'ତରୁଣ ସଂଘ' ନାମକ ଗୋଟିଏ ଦଳ ଗଠନ କରିଥିଲେ । ୧୯୨୪ ମସିହାରେ କଲିକତା କର୍ପୋରେସନ୍ ନିର୍ବାଚନରେ ସ୍ୱରାଜ ଦଳ ସଂଖ୍ୟା ଗରିଷ୍ଠ ହେବାରୁ ଦେଶବନ୍ଧୁ ମେୟର୍ ପଦରେ ନିର୍ବାଚିତ ହୋଇ କାର୍ଯ୍ୟଭାର ଗ୍ରହଣ କରିବା ସଙ୍ଗେ ସଙ୍ଗେ ସୁଭାଷ ଚନ୍ଦ୍ରଙ୍କୁ ଚିଫ୍ ଏକଜିକ୍ୟୁଟିଭ୍ ବା ପ୍ରଧାନ କର୍ମକର୍ତ୍ତାରୂପେ ନିଯୁକ୍ତ କଲେ । ଏହି ପଦବୀର ମାସିକ ଦରମା ସେତେବେଳେ ୩ ହଜାର ଟଙ୍କା ଥିଲା, କିନ୍ତୁ ସୁଭାଷ ବାବୁ ୧୫ ଶହ ଟଙ୍କା ନେଇ ବାକି ୧୫ ଶହ ଟଙ୍କା ଗରିବ ଦୁଃଖୀଙ୍କ ସାହାଯ୍ୟାର୍ଥେ ବ୍ୟୟ କରୁଥିଲେ । ସେହି ଅଳ୍ପଦିନ ମଧ୍ୟେ କଲିକତା ମହାନଗରୀ ପ୍ରଭୂତ ଉନ୍ନତି ହେବା ସଙ୍ଗେ ସଙ୍ଗେ ରୂପ ମଧ୍ୟ ବଦଳି ଯାଇଥିଲା ।

## ୩-ଆଇନ୍ ବଳରେ ଗିରଫ୍ ଓ ମାନ୍ଦେଲ ଜେଲରେ ବନ୍ଦୀ

ସୁଭାଷବାବୁଙ୍କ ଅପୂର୍ବ ଜନ ପ୍ରିୟତା ଲାଭ ଯୋଗୁଁ, କ୍ରମଶଃ ସେ ବ୍ରିଟିଶ ସରକାରଙ୍କ ଚକ୍ଷୁଶୂଳ ହୋଇ ଉଠିଲେ । ଯେ କୌଣସି ଉପାୟରେ ତାଙ୍କୁ ଜେଲରେ ଭରିବା କର୍ତ୍ତୃପକ୍ଷଙ୍କ ଅନବରତ ଚେଷ୍ଟା ଚାଲିଲା । ୧୯୨୫ ଅକ୍ଟୋବର ୨୪ ତାରିଖରେ ବଡ଼ଲାଟଙ୍କ ୩-ନମ୍ବର ରେଗୁଲେଶନ୍ ଜାରି ହେଲା । ପାହାନ ବିନା ବିଚାରରେ ଯେକୌଣସି ଲୋକଙ୍କୁ ଗିରଫ୍ କରି ହେବ । ଉକ୍ତ ଆଇନ ବଳରେ ବଙ୍ଗ ସରକାର ତା-୨୫-୧୦-୨୫ରେ ସୁଭାଷ ବାବୁଙ୍କ ସହ ଅନ୍ୟ ବିପ୍ଳବୀ ନେତା

ବିପିନ ବିହାରୀ ଗାଙ୍ଗୁଲି, ତ୍ରୈଲୋକ୍ୟ ନାଥ ଚକ୍ରବର୍ତ୍ତୀ ଓ ଅଶ୍ୱିନୀ କୁମାର ଗାଙ୍ଗୁଲିଙ୍କୁ ବିନା କାରଣରେ ଗିରଫ୍ କଲେ । ଏହାର ପ୍ରତିବାଦ କରି, ଦେଶବନ୍ଧୁ କହିଥିଲେ''— ଦେଶକୁ ଭଲ ପାଇବା ଯଦି ଅପରାଧ ହୁଏ ତା ହେଲେ ମୁଁ ମଧ୍ୟ ଅପରାଧୀ । ସୁଭାଷ ଚନ୍ଦ୍ର ଯଦି ଅପରାଧୀ, ତେବେ ମୁଁ ମଧ୍ୟ ଅପରାଧୀ । '' ସୁଭାଷ ବାବୁଙ୍କୁ ପ୍ରଥମେ ଆଲିପୁର ଜେଲରେ ୨ ମାସ ରଖି ପରେ ମୁର୍ଶିଦାବାଦ ଜିଲ୍ଲାର ବରହମ୍ପୁର ଜେଲ୍‌କୁ ପଠାଇ ଦିଆଗଲା । ସେଠାରେ ୩ ମାସ ରଖି ପୁଣି ସୁଦୂର ବ୍ରହ୍ମଦେଶର ମାନ୍ଦାଲେ ଜେଲ୍‌କୁ ସ୍ଥାନାନ୍ତରିତ କରିଗଲା । ଏହି ଜେଲରେ ଲୋକମାନ୍ୟ ତିଳକ ଓ ଲାଲା ଲଜ୍‌ପତ୍‌ରାୟ ଯଥାକ୍ରମେ ୬ ବର୍ଷ ଓ ୧ ବର୍ଷ ନିର୍ବାସିତ ଜୀବନ କଟାଇଥିଲେ । ଜେଲ୍‌ରେ ଥିବାବେଳେ ଦୁର୍ଗାପୂଜା ପାଳନ ନିମନ୍ତେ ସରକାର ଆବଶ୍ୟକୀୟ ଖର୍ଚ୍ଚ ନ ଦେବାରୁ ୧୯୨୬ ଫେବୃୟାରି ୨୦ ତାରିଖରେ ସେ ଅନଶନ ଆରମ୍ଭ କରିଥିଲେ । ପରବର୍ତ୍ତୀ କାଳେ ସରକାରଙ୍କ ପକ୍ଷରୁ ଦାବି ମଞ୍ଜୁର ହୋଇ ଆଡ଼ମ୍ବର ପୂର୍ଣ୍ଣ ଭାବେ ଦୁର୍ଗାପୂଜା ପାଳିତ ହୋଇଥିଲା ।

ଜେଲରେ ଥାଇ ସୁଭାଷ ଚନ୍ଦ୍ର ବଙ୍ଗୀୟ ବ୍ୟବସ୍ଥାପକ ସଭାର ସଭ୍ୟ ନିର୍ବାଚିତ ହୋଇଥିଲେ । ସେତେବେଳେ ତାଙ୍କର ସ୍ୱାସ୍ଥ୍ୟ ଭଙ୍ଗ ହେବାକୁ ଲାଗିଲା । ଶରୀର ଓଜନ ଅର୍ଦ୍ଧେ କମି ହଠାତ୍ ଯକ୍ଷ୍ମାରୋଗର ଚିହ୍ନ ଦେଖାଗଲା । ଏଣୁ ସରକାର ୧୯୨୭ ମସିହା ମଇମାସ ୧୫ ତାରିଖରେ ତାଙ୍କୁ ବର୍ମାରୁ ଭାରତକୁ ବଦଳି କରିଯାଉଛି କହି, ଗୋଟିଏ ଜାହାଜରେ କଲିକତା ନିକଟବର୍ତ୍ତୀ ଡାଇମଣ୍ଡ ହାର୍ବର୍' ବନ୍ଦରକୁ ଆଣି ସେଠାରୁ ତାଙ୍କୁ ଗୋଟିଏ ସରକାରୀ ମଟର ଲଞ୍ଚକୁ ନେଇ ଡାକ୍ତରୀ ପରୀକ୍ଷା ପରେ ତା ୧୬-୫-୨୭ ରିଖ ଦିନ ବିନା ସର୍ତ୍ତରେ ମୁକ୍ତି ଦେଇଥିଲେ ।

ଦୀର୍ଘ ୩ ବର୍ଷରୁ ଊର୍ଦ୍ଧ୍ୱ ବର୍ମାର ଅସ୍ୱାସ୍ଥ୍ୟକର ମାନ୍ଦାଲେ ଓ ଇନ୍‌ସିନ୍ ଜେଲ ଜୀବନ କଟାଇ, ସୁଭାଷବାବୁ ସେହିଦିନ ମୁକ୍ତି ଲାଭ କଲେ । ସେଦିନ ସମଗ୍ର ବଙ୍ଗ ପ୍ରଦେଶରେ ଲୋକେ ଦୋକାନ ବଜାର ବନ୍ଦ କରି, ଆନନ୍ଦ ଉତ୍ସବ ପାଳନ କରିବା ସଙ୍ଗେ ସଙ୍ଗେ ତାଙ୍କର ଆରୋଗ୍ୟ ନିମନ୍ତେ ଗୃହ ମନ୍ଦିର ମାନଙ୍କରେ ପୂଜା-ଆରାଧନା କରିଥିଲେ । ଏଥିରୁ ସ୍ପଷ୍ଟ ପ୍ରମାଣ ମିଳେ ଯେ, ଦେଶବାସୀଙ୍କ ହୃଦୟରେ ସୁଭାଷ ଚନ୍ଦ୍ରଙ୍କ ପ୍ରତି କିପରି ବିପୁଳ ଶ୍ରଦ୍ଧା ଓ ଗଭୀର ମମତା ଥିଲା ।

## ବଙ୍ଗଳାର ନେତା

ବଙ୍ଗଳାର ଅପ୍ରତିଦ୍ୱନ୍ଦ୍ୱୀ ନେତା ଦେଶବନ୍ଧୁ ଚିତ୍ତରଞ୍ଜନ ଦେହତ୍ୟାଗ ପରେ, ବଙ୍ଗଳାର ଜନସାଧାରଣ ସୁଭାଷଚନ୍ଦ୍ରଙ୍କୁ କଂଗ୍ରେସର ସଭାପତି ଓ ନେତା ରୂପେ

ମନୋନୀତ କରିଥିଲେ । ୧୯୨୭ ନଭେମ୍ବର ମାଡ୍ରାଜଠାରେ ନିଖିଳ ଭାରତ କଂଗ୍ରେସର ବାର୍ଷିକ ଅଧିବେଶନରେ ସୁଭାଷ ବାବୁ ଓ ଜବାହରଲାଲ୍ କଂଗ୍ରେସର ସାଧାରଣ ସମ୍ପାଦକ ନିଯୁକ୍ତ ହେଲେ । କଂଗ୍ରେସର ଲକ୍ଷ 'ପୂର୍ଣ୍ଣ ସ୍ୱାଧୀନତା' ଘୋଷଣା ପାଇଁ ସୁଭାଷ ଚନ୍ଦ୍ର ପ୍ରସ୍ତାବ ଆଗତ କରିଥିଲେ । କିନ୍ତୁ ଗାନ୍ଧିଜୀ ଏ ପ୍ରସ୍ତାବକୁ ସମର୍ଥନ କରିନଥିଲେ ।

## ନେହେରୁ କମିଟି

ଭାରତରେ କିପରି ଶାସନତନ୍ତ୍ର ଚଳିବ, ଏହା ସ୍ଥିର କରିବା ପାଇଁ ମୋତିଲାଲ ନେହେରୁଙ୍କ ସଭାପତିତ୍ୱରେ 'ନେହେରୁ କମିଟୀ' ଗଠିତ ହୋଇଥିଲା । ଏହି କମିଟିର ପ୍ରସ୍ତାବ ଥିଲା ଯେ, ଭାରତ ବ୍ରିଟିଶ ସାମ୍ରାଜ୍ୟର ଅଂଶୀଦାର ରୂପେ ରହିବ । ଏଥିରେ ଚରମପନ୍ଥି ନେତାଦ୍ୱୟ ସୁଭାଷ ଓ ଜବାହାର ଘୋର ବିରୋଧ କରି 'ସ୍ୱାଧୀନତା ସଂଘ' ଗଠନ କରିବାକୁ ସ୍ଥିର କରିଥିଲେ । ସୁଭାଷ ଚନ୍ଦ୍ର ସର୍ବପ୍ରଥମେ କଂଗ୍ରେସର ଏହି ମତକୁ ବିରୋଧ କରିଥିଲେ ।

## ସାଇମନ୍ କମିଶନ

ଭାରତର ଅବସ୍ଥା ଅନୁସନ୍ଧାନ ପାଇଁ ବ୍ରିଟିଶ ସରକାର ସାର୍ ଜନ୍ ସାଇମନଙ୍କ ନେତୃତ୍ୱରେ ଗୋଟିଏ କମିଶନ ପଠାଇଥିଲେ । ଏହାର ବିରୁଦ୍ଧରେ ୧୯୨୮ ଫେବୃୟାରୀ ୩ ତାରିଖ ଦିନ ସମଗ୍ର ଭାରତ ବର୍ଷରେ 'ସାଇମନ ଫେରିଯାଅ' ବୋଲି ସର୍ବତ୍ର ବିକ୍ଷୋଭ ପ୍ରଦର୍ଶନ ହୋଇଥିଲା । ଏହି ସମୟରେ ସୁଭାଷଚନ୍ଦ୍ର ସାବରମତୀ ଆଶ୍ରମରେ ଗାନ୍ଧିଜୀଙ୍କୁ ଭେଟି କଂଗ୍ରେସ ପକ୍ଷରୁ ଆଇନ ଅମାନ୍ୟ ଆନ୍ଦୋଳନ କରିବାପାଇଁ ଅନୁରୋଧ କରିଥିଲେ । କିନ୍ତୁ ଗାନ୍ଧିଜୀ ଠୋକ୍ ଠୋକ୍ କହିଥିଲେ ଯେ, ଆଇନ୍ ଅମାନ୍ୟ ଆନ୍ଦୋଳନ କରିବାକୁ ମୁଁ ଭଗବାନଙ୍କ ନିକଟରୁ କୌଣସି ନିର୍ଦ୍ଦେଶ ପାଇନାହିଁ ।

୧୯୨୮ ମଇ ମାସରେ ସୁଭାଷ ବାବୁ ପୁନାଠାରେ ମହାରାଷ୍ଟ୍ର ରାଜନୀତିକ ସମ୍ମିଳନୀରେ ସଭାପତିତ୍ୱ କରି, ସେହି ବର୍ଷ ଡିସେମ୍ବର ମାସରେ କଲିକତାରେ ନିଖିଳଭାରତ ଯୁବ ସମ୍ମିଳନୀ ଅଭ୍ୟର୍ଥନା ସମିତିର ସଭାପତି ଭାବେ ଗାନ୍ଧିଜୀଙ୍କ ମତ ବିରୁଦ୍ଧରେ ପ୍ରଥମ ଭାଷଣ ଦେଇଥିଲେ ।

## କଲିକତା କଂଗ୍ରେସ

ପୁଣି ୧୯୨୮ ମସିହାରେ ପଣ୍ଡିତ ମୋତିଲାଲ ନେହେରୁଙ୍କ ସଭାପତିତ୍ୱରେ କଲିକତାରେ କଂଗ୍ରେସ ଅଧିବେଶନ ହେଲା । ସେଥିରେ ସୁଭାଷ ଚନ୍ଦ୍ର ସ୍ୱେଚ୍ଛାସେବକ

ବାହିନୀର ଜି. ଓ. ସି. ବା ସର୍ବାଧିନାୟକ ମନୋନୀତ ହୋଇ ବିରାଟ ଶୋଭାଯାତ୍ରା ପରିଚାଳନା କରି, ସଭାପତିଙ୍କୁ ଯେପରି ଗାର୍ଡ଼ ଅଫ୍ ଅନାର୍ ବା (ରାଜକୀୟ ଢଙ୍ଗରେ ଅଭ୍ୟର୍ଥନା) ଜଣାଇଥିଲେ ଏହା ଏକ ଅଭିନବ ଧରଣର ଲୋକଙ୍କ ମନ ଭିତରେ ଉତ୍ତେଜନା ଆଣିବା ସଙ୍ଗେ ସଙ୍ଗେ ସରକାରୀ ମହଲରେ ମଧ୍ୟ ଚହଳର ସୃଷ୍ଟି ହଞ୍ଚାଇ କରିଥିଲା ।

ଏହି ଅଧିବେଶନରେ କଂଗ୍ରେସର ଚରମ ପନ୍ଥି ଓ ନରମ ପନ୍ଥିଙ୍କ ମଧ୍ୟରେ ତୀବ୍ର ମତଭେଦ ହୋଇଥିଲା । ଚରମ ପନ୍ଥି ନେତା ଜବାହାର ଓ ସୁଭାଷ ଚନ୍ଦ୍ର ଚାହୁଁଥିଲେ "—ଙ୍କରେଜମାନ ଭାରତରୁ ପୂର୍ଣ୍ଣ ସ୍ୱାଧୀନତା ଘୋଷଣା । କିନ୍ତୁ ନରମ ପନ୍ଥିଙ୍କ ଦାବି, ଔପନିବେଶିକ ସ୍ୱାୟତ୍ତ ଶାସନ ବା ବ୍ରିଟିଶ ସାମ୍ରାଜ୍ୟ ଅନ୍ତର୍ଭୁକ୍ତ ହୋଇ ଭାରତ ରହିବ । ଗାନ୍ଧିଜୀଙ୍କ ଏହି ପ୍ରସ୍ତାବ ଉପରେ ସୁଭାଷ ଚନ୍ଦ୍ର ସଂଶୋଧନ ପ୍ରସ୍ତାବ ଆଣି ଭାରତର ଲକ୍ଷ ପୂର୍ଣ୍ଣ ସ୍ୱାଧୀନତା ଘୋଷଣା କରାଯାଉ ବୋଲି ଆଗତ କଲେ, କିନ୍ତୁ ପ୍ରସ୍ତାବ ବିରୁଦ୍ଧରେ ୧୩୫୦ ଓ ସପକ୍ଷରେ ୯୩୭ ଭୋଟ ହେବାରୁ ତାହା କାଟ ଖାଇଗଲା । ଅଧିବେଶନ ପରେ ଜବାହାର ଓ ସୁଭାଷ ପୂର୍ବ ପରିକଳ୍ପିତ ତାଂକର 'ସ୍ୱାଧୀନତା ସଂଘ' ଗଠନ କରିଥିଲେ । ୧୯୨୯ ଠାରୁ ୧୯୩୧ ପର୍ଯ୍ୟନ୍ତ ସୁଭାଷ ବାବୁ ନିଖିଳ ଭାରତ ଟ୍ରେଡ୍ ୟୁନିଅନ କଂଗ୍ରେସର ସଭାପତି ମଧ୍ୟ ଥିଲେ ।

## ଲାହୋର କଂଗ୍ରେସ

୧୯୨୯ ମସିହା ଅକ୍ଟୋବର ଲାହୋରଠାରେ ନିଖିଳଭାରତ ଯୁବସମ୍ମିଳନୀରେ ସୁଭାଷ ଚନ୍ଦ୍ର ସଭାପତିତ୍ୱ କରି ବିପୁଳ ଭାବେ ସମ୍ବର୍ଦ୍ଧିତ ହେଲେ । କିନ୍ତୁ ଗାନ୍ଧିଜୀ ଦେଖିଲେ ଯେ, ସୁଭାଷ ଚନ୍ଦ୍ର ଓ ଜବାହରଙ୍କ ନେତୃତ୍ୱରେ ଚରମପନ୍ଥୀଙ୍କ ପ୍ରଭାବ ଯେପରି ବଢ଼ି ଚାଲିଛି, ଏହାର ଶକ୍ତି ହ୍ରାସ କରିବାକୁ ହେଲେ ଜବାହାରଲାଲଙ୍କୁ ହାତ କରିବାକୁ ହେବ । ଏଣୁ ୧୯୨୯ ଡିସେମ୍ବର ୩ ତାରିଖରେ ଲାହୋର କଂଗ୍ରେସ ସଭାପତି ରୂପେ ଗାନ୍ଧିଜୀ, ଜବାହାରଲାଲଙ୍କୁ ମନୋନୀତ କଲେ । ସଭାପତି ପଦ ପାଇବାପରେ ଜବାହାରଲାଲ୍ ଚରମପନ୍ଥିରୁ ନରମ ପନ୍ଥିରେ ରୂପାନ୍ତରିତ ହୋଇ ଶେଷପର୍ଯ୍ୟନ୍ତ ଗାନ୍ଧିଜୀଙ୍କ ବିଶ୍ୱସ୍ତ ଅନୁଚର ରୂପେ କାର୍ଯ୍ୟ କରୁଥିଲେ ।

୧୯୨୯ ଏପ୍ରିଲରେ ସୁଭାଷଚନ୍ଦ୍ରଙ୍କର ନେତୃତ୍ୱରେ ବଙ୍ଗୀୟ ବ୍ୟବସ୍ଥାପକ ସଭାପାଇଁ କଂଗ୍ରେସ ପ୍ରାର୍ଥୀ ଭୋଟାଧିକ୍ୟରେ ନିର୍ବାଚିତ ହୋଇଥିଲେ । ସେହିବର୍ଷ ଅଗଷ୍ଟ ମାସରେ 'ରାଜବନ୍ଦୀ ଦିବସ' ଶୋଭାଯାତ୍ରା ପରିଚାଳନା କରି ରାଜଦ୍ରୋହ ଭାବେ ଅଭିଯୁକ୍ତ ହେଲେ । ପୁଣି ଅକ୍ଟୋବର ୧୩ ତାରିଖରେ ବଡ଼ ଲାଟ ଲର୍ଡ଼ଇରୱିନ୍ ସାଇମନ କମିଶନ୍ ରିପୋର୍ଟକୁ ଭିତ୍ତିକରି ୧୯୩୦ ଖ୍ରୀଷ୍ଟାବ୍ଦରେ

ଔପନିବେଶିକ ସ୍ୱାୟତ୍ତଶାସନ, ଭାରତର ଭାଗ୍ୟ ଶାସନ ତନ୍ତ୍ର ହେବ ବୋଲି ଘୋଷଣା କରି କଂଗ୍ରେସକୁ ଜଣାଇ ଦେଲେ । ଏଥିରେ ନରମ ପନ୍ଥିମାନେ ଆନନ୍ଦ ହେଲେ, କିନ୍ତୁ ସୁଭାଷଚନ୍ଦ୍ର ବେକ୍ ଠୋକ୍ ପ୍ରତ୍ୟାଖ୍ୟାନ କରି କହିଥିଲେ ଯେ, "—ଲାଟ୍- ବଡଲାଟ୍‌ଙ୍କ ସହିତ ସାକ୍ଷାତକାର ଭିକ୍ଷୁକ ବୃତ୍ତି ଦ୍ୱାରା ଭାରତ ସ୍ୱାଧୀନ ହେବନାହିଁ ।" ସେହି ବର୍ଷ ଭଗତ ସିଂହଙ୍କ ନେତୃତ୍ୱରେ ଦଳେ ବିପ୍ଳବୀ ଲର୍ଡଇର୍‌ଉଇନ୍‌ଙ୍କ ଟ୍ରେନ୍ ଉପରେ ବୋମା ନିକ୍ଷେପ କରିଥିଲେ କିନ୍ତୁ ସୌଭାଗ୍ୟକ୍ରମେ ସେ ବଞ୍ଚିଗଲେ । ଏଥିରେ ଗାନ୍ଧିଜୀ ଲାହୋର କଂଗ୍ରେସରେ ସହାନୁଭୂତି ଜ୍ଞାପକ ପ୍ରସ୍ତାବ ଆଗତ କଲେ, କିନ୍ତୁ ସୁଭାଷ ଚନ୍ଦ୍ର ଏଥିରେ ଘୋର ଆପତ୍ତି କରିଥିଲେ ।

୧୯୩୦ର ଆଇନ ଅମାନ୍ୟ ଆନ୍ଦୋଳନରେ ସେ ୯ମାସ କାରାଦଣ୍ଡରେ ଦଣ୍ଡିତ ହୋଇ ଆଲିପୁର ଜେଲରେ ଆବଦ୍ଧ ଥିଲାବେଳେ, ମେଛୁଆ ବଜାର ବୋମା କାଣ୍ଡର ଅଭିଯୁକ୍ତ ବିପ୍ଳବୀମାନଙ୍କ ପ୍ରତି ସରକାରଙ୍କ ଅତ୍ୟାଚାର ବିରୁଦ୍ଧରେ ପ୍ରତିବାଦ କରିବା ଫଳରେ ଜଣେ ପଠାଣ ପୋଲିସ୍ ତାଙ୍କ ମୁଣ୍ଡ ଉପରେ ନିର୍ଘାତ ଲଠି ପ୍ରହାର କରିଥିଲା । ଘଣ୍ଟାଏ କାଳ ସେ ସଂଜ୍ଞାହୀନ ହୋଇ ପଡିଲେ । ଏ ଘଟଣାରେ ଦେଶ ବ୍ୟାପି ଆନ୍ଦୋଳନ ହେଲା, ସରକାର ବାଧ୍ୟ ହୋଇ ଜେଲ୍ ସୁପର ଟେଣ୍ଡେଣ୍ଟ୍‌ଙ୍କୁ ଅନ୍ୟତ୍ର ବଦଳି କଲେ ।

### କଲିକତା ମେୟର୍ ଓ କରାଚୀ କଂଗ୍ରେସ

ସୁଭାଷ ଚନ୍ଦ୍ର ଜେଲରେ ଥାଇ କଲିକତା କର୍ପୋରେଶନ୍‌ର ମେୟର ନିର୍ବାଚିତ ହରେ ମୁକ୍ତ ହେଲେ । ପୁଣି କିଛିଦିନ ପରେ ମାଲ୍‌ଦହ ଜିଲ୍ଲାରେ ୭ ଦିନ ପାଇଁ କାରାଦଣ୍ଡରେ ଦଣ୍ଡିତ ହେଲେ । ୧୯୩୧ ପ୍ରାରମ୍ଭରେ ସର୍ଦ୍ଦାର ପଟେଲ୍‌ଙ୍କ ସଭାପତିତ୍ୱରେ କରାଚୀ କଂଗ୍ରେସ ଅଧିବେଶନ ହୁଏ । ଏତିକି ବେଳେ ଲାହୋର ଷଡଯନ୍ତ୍ର ମକଦ୍ଦମାରେ ଅଭିଯୁକ୍ତ ସର୍ଦ୍ଦାର ଭଗତ ସିଂହ, ଶୁକଦେବ ଓ ରାଜଗୁରୁ ପ୍ରଭୃତି ଫାଶୀ ଦଣ୍ଡରେ ଦଣ୍ଡିତ ହେଲେ । ଭଗତ ସିଂହଙ୍କ ଜୀବନ ରକ୍ଷାପାଇଁ ଚରମ ପନ୍ଥିଦଳ ଗାନ୍ଧିଜୀଙ୍କ ଜରିଆରେ ବଡ଼ ଲାଟ୍‌ଙ୍କୁ ନିବେଦନ ଜଣାଇଲେ । ଏଥିରେ ବଡ ଲାଟ୍ ଶୁଣିଲେ ନାହିଁ, କି ଗାନ୍ଧିଜୀ ମଧ୍ୟ କିଛି କହିଲେ ନାହିଁ । ଏଣୁ ତରୁଣ ଦଳ ସୁଭାଷ ଚନ୍ଦ୍ରଙ୍କ ସଭାପତିତ୍ୱରେ ନବଯୁବକ ସମ୍ମିଳନୀ ଆହ୍ୱାନ୍ କଲେ । ଦୁର୍ଭାଗ୍ୟ ବଶତଃ କଂଗ୍ରେସ ଅଧିବେଶନ ପୂର୍ବରୁ ଲାହୋର ଜେଲରେ ୩ ଜଣଙ୍କୁ ଫାଶିଦିଆ ସରିଥିଲା । ଏ ସମ୍ବାଦ ଶୁଣି ଦେଶ ବ୍ୟାପି ବିକ୍ଷୋଭ ସୃଷ୍ଟି ହେଲା । କରାଚୀରେ ଗାନ୍ଧିଜୀଙ୍କୁ କଳାପତାକା ଦେଖାଇ ଟେକା ପଥର ବୃଷ୍ଟି କଲେ । ଏହି ସମୟରେ ହିଜଲି ବନ୍ଦିଶାଳାରେ ଦୁଇଜଣ ରାଜବନ୍ଦୀଙ୍କୁ ଗୁଳି କରି ହତ୍ୟା କରାଗଲା । ସୁଭାଷ ଚନ୍ଦ୍ର ଏହାର ପ୍ରତିବାଦ କରି କର୍ପୋରେଶନ୍ ଅଲ୍‌ଡ଼ରମେନ୍ ପଦ ତ୍ୟାଗ କରିଥିଲେ ।

## ପୁଣି ଜେଲ

୧୯୩୧ ଡିସେମ୍ବର ୨୯ ତାରିଖ ଦିନ ବମ୍ବେ ଠାରେ କଂଗ୍ରେସ କାର୍ଯ୍ୟକାରୀ କମିଟି ବୈଠକରେ ଯୋଗ ଦେଇ ସେ ଫେରିବା ପଥରେ ତାଙ୍କୁ କଲ୍ୟାଣ ଷ୍ଟେସନ ଠାରେ ଗିରଫ୍ କରାଗଲା । ଏଥର ଜବଲ୍‌ପୁର ଜେଲରେ ରହି ବିଶେଷ ଭାବେ ତାଙ୍କ ସ୍ୱାସ୍ଥ୍ୟରେ ଅବନତି ଘଟିଲା । ତେଣୁ ଚିକିତ୍ସା ହେବାପାଇଁ ୟୁରୋପ ଯିବାପାଇଁ ତାଙ୍କୁ ସରକାର ଅନୁମତି ଦେଲେ ।

୧୯୩୩ ମସିହା ଫେବୃଆରୀ ୨୩ ତାରିଖ ଦିନ ସୁଭାଷ ଚନ୍ଦ୍ର ୟୁରୋପ ଯାତ୍ରା କରି ମାର୍ଚ୍ଚ ୮ ତାରିଖ ଦିନ ପୃଥିବୀର ଅନ୍ୟତମ ସୁନ୍ଦର ସହର ଭିଏନାଁରେ ପହଞ୍ଚିଲେ । ସେଠାକାର ପରିଷ୍କାର ପରିଚ୍ଛନ୍ନତା, ଶୃଙ୍ଖଳା ଓ ସମୟାନୁବର୍ତ୍ତିତା ତଥା ସୈନ୍ୟ ବାହିନୀର ପରେଡ଼ ଉତ୍ସବ ଦେଖି ଅତ୍ୟନ୍ତ ମୁଗ୍ଧ ହୋଇଥିଲେ । ସେ ସବୁ ଦେଶ ତୁଳନାରେ ଭାରତ କେତେ ଯେ, ପଛରେ ପଡ଼ିରହିଛି, ତାର ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ତଥ୍ୟ ସଂଗ୍ରହ କରିଥିଲେ ।

ଏହି ସମୟରେ କେନ୍ଦ୍ର ଆସେମ୍ବ୍ଲିର ତତ୍କାଳୀନ ସଭାପତି ବିଠଲ ଭାଇ ପଟେଲ ଚିକିତ୍ସା ନିମନ୍ତେ ଭିଏନା ଗଲେ । ସୁଭାଷ ବାବୁଙ୍କ ସହିତ ତାଙ୍କର ସେଠାରେ ଦେଖା ହେଲା । ଦୁହେଁ ଏକା ସଙ୍ଗରେ ରହିଲେ । ଭାରତ ବାହାରେ ସ୍ୱାଧୀନତା ଆନ୍ଦୋଳନ ଚଳାଇବା ପାଇଁ ବିଠଲ ଭାଇ ସୁଭାଷ ଚନ୍ଦ୍ରଙ୍କ ନାମରେ ୧ ଲକ୍ଷ ଟଙ୍କା ଉଇଲ କରିଦେଲେ । ଭଗ୍ନ ସ୍ୱାସ୍ଥ୍ୟରେ ମଧ୍ୟ ସେ ୟୁରୋପରେ ସେତେବେଳେ ଭାରତର ସ୍ୱାଧୀନତା ଆନ୍ଦୋଳନ ସପକ୍ଷରେ ଜୋରଦାର ପ୍ରଚାର ଚଳାଇଲେ ଓ ପଟେଲଙ୍କ ମୃତ୍ୟୁ ପରେ ତାଙ୍କର ମୃତ ଦେହ ଭାରତକୁ ପଠାଇ ଥିଲେ । ସେଠାରେ ତାଙ୍କୁ ଏକ ପ୍ରକାର ନିର୍ବାସିତ ଜୀବନ ଯାପନ କରିବାକୁ ହେଉଥିଲା । ଯେହେତୁ ଇଂଲଣ୍ଡ, ଆମେରିକା, ଜର୍ମାନୀ ଓ ରୁଷ ପ୍ରଭୃତି ଦେଶକୁ ଯିବାପାଇଁ ମନାଥିଲା ।

ଥରେ ଲଣ୍ଡନସ୍ଥ ଭାରତୀୟମାନଙ୍କ ଗୋଟିଏ ସମ୍ମିଳନୀରେ ତାଙ୍କୁ ସଭାପତିତ୍ୱ କରିବା ପାଇଁ ନିମନ୍ତ୍ରଣ ହୋଇଥିଲା, କିନ୍ତୁ ବ୍ରିଟିଶ ସରକାର ଅନୁମତି ନଦେବାରୁ ସେ ଯାଇ ପାରିନଥିଲେ ।

୧୯୩୩ରେ ଭିଏନାର ମେୟର ତଥା ଚେକୋସ୍ଲୋଭାକିଆର ରାଜଧାନୀ 'ପ୍ରାଗ୍'ର ମେୟର ତାଙ୍କୁ ବିପୁଳଭାବେ ସମ୍ବର୍ଦ୍ଧନା ଜଣାଇଥିଲେ । ସେଠାରୁ ସେ ଜେନେଭା, ଫ୍ରାନ୍ସ, ଇଟାଲୀ, ରୋମରେ ଉଚିତ ନାଗରିକ ସମ୍ବର୍ଦ୍ଧନା ପାଇଁ, କିଛି ଦିନ ପରେ ପୂର୍ବ ଓ ମଧ୍ୟ ୟୁରୋପର ସୋଫିଆ, ବୁଖାରେଷ୍ଟ ପ୍ରଭୃତିରେ

ଭାରତରେ ସ୍ୱାଧୀନତା ଆନ୍ଦୋଳନ ସପକ୍ଷରେ ଭାଷଣମାନ ଦେଉଥିଲେ । ସେତେବେଳେ ବ୍ରିଟିଶ ଗୁପ୍ତଚର ଦଳ ତାଙ୍କ ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ । ବେଲ୍‌ଜିୟମ୍ ଠାରେ ବ୍ରିଟିଶ ରାଜଦୂତ ତାଙ୍କର ଭାଷଣକୁ ତୀବ୍ର ବିରୋଧ କରିଥିଲେ ।

## ପିତାଙ୍କ ମୃତ୍ୟୁ

ସୁଭାଷଚନ୍ଦ୍ର ଅସୁସ୍ଥ ଥାଇ ମଧ୍ୟ ଭାରତର ପ୍ରକୃତ ଅବସ୍ଥା ବିଦେଶୀରେ ଲୋକେ ଯେପରି ଜାଣିପାରିବେ, ସେଥିପାଇଁ ଇଉରୋପ ସହରକୁ ଆଉ ଭାଷଣ ମାଧ୍ୟମରେ ବାର୍ତ୍ତା ପ୍ରଚାର କରୁଥିଲାବେଳେ, ହଠାତ୍ ଘରୁ ଟେଲିଗ୍ରାମ ପାଇଲେ ଯେ, "ତାଙ୍କ ପିତାଙ୍କର ଅବସ୍ଥା ସଙ୍କଟାପନ୍ନ ।" ଏ ଦାରୁଣ ଦୁଃସମ୍ବାଦ ପାଇ ସେ ବ୍ୟାକୁଳ ହେଲେ ଭାରତକୁ ଆସିବାପାଇଁ । କିନ୍ତୁ ଏ ସମ୍ବନ୍ଧରେ ତାଙ୍କ ଉପରେ ନାନା କଟକଣା ଥିଲା । ତେଣୁ ସର୍ତ୍ତ ହେଲା ଯେ, ସେ ଅନ୍ୟ କେଉଁଠି ଯିବେ ନାହିଁ, କିମ୍ବା କାହା ସହିତ ମିଶି କଥାବାର୍ତ୍ତା କରିବେ ନାହିଁ । ଜାହାଜରୁ ଉଡ଼ାଜାହାଜରେ ସିଧା ତାଙ୍କର ଏଲ୍‌ଗିନ୍ ରୋଡ୍ ବାସ ଭବନକୁ ଯିବେ ଏବଂ ୭ ଦିନ ପରେ ଘରଛାଡ଼ି ପୁଣି ୟୁରୋପକୁ ଫେରିବେ । ସୁଭାଷ ବାବୁ ୧୯୩୪ ମସିହା ଡିସେମ୍ବର ୩ ତାରିଖ ଦିନ ବିମାନ ଯୋଗେ କରାଚୀ ହୋଇ ଦମଦମରେ ଉଡ଼ାଜାହାଜ ଘରେ ପହଞ୍ଚିବା ଦିନର ପୂର୍ବରୁ ତାଙ୍କ ପିତାଙ୍କର ମୃତ୍ୟୁ ଘଟିଥିଲା । ପିତାଙ୍କ ଅନ୍ତ୍ୟେଷ୍ଟି କ୍ରିୟା ଶେଷ କରି ୧୯୩୫ ମସିହା ଜାନୁୟାରୀ ୧୦ ତାରିଖ ଦିନ ପୁଣି ସେ ବିମାନ ଯୋଗେ ୟୁରୋପ ଯାତ୍ରା କଲେ ।

ଭଗ୍ନ ସ୍ୱାସ୍ଥ୍ୟ ଓ ପିତାଙ୍କ ମୃତ୍ୟୁ ଜନିତ ମାନସିକ ଅଶାନ୍ତି ସତ୍ତ୍ୱେ ସୁଭାଷବାବୁଙ୍କ ସ୍ୱାଧୀନତା ଆନ୍ଦୋଳନର କାର୍ଯ୍ୟକଳାପ ଓ ଚିନ୍ତାଧାରା ମୁହୂର୍ତ୍ତକ ପାଇଁ ମଧ୍ୟ ବନ୍ଦ ନ ଥିଲା । ୟୁରୋପ ଭ୍ରମଣ କାଳ ମଧ୍ୟରେ, ଭାରତର ଜାତୀୟ ଆନ୍ଦୋଳନ ସମ୍ବନ୍ଧରେ ସେ ଯେଉଁ ଉପାଦେୟ ବହି ଖଣ୍ଡିଏ ଲେଖିଥିଲେ, ଯାହାକି Indian Strugle ନାମରେ ପରିଚିତ । ବହିଟି ଲଣ୍ଡନରୁ ପ୍ରକାଶିତ ହୋଇ, ୟୁରୋପବାସୀଙ୍କ ମନରେ ଗଭୀର ଆଦୃତ ହେବା ସଙ୍ଗେ ସଙ୍ଗେ ତାହା ବେଶ ଆଲୋଡ଼ନ ସୃଷ୍ଟି କରିଥିଲା ।

ଏଥର ୟୁରୋପ ଭ୍ରମଣ ସମୟରେ ସୁଭାଷ ଚନ୍ଦ୍ର ନିଜର ରାଜନୈତିକ ମତବାଦ ପରିବର୍ତ୍ତନ କରି ଦୃଢ଼ ଥିବା ପାଇଁ ସେ ନେପଲ୍‌ସ, ରୋମ, ଭିଏନା, ଜେନେଭା ପ୍ରାଗ୍ ପ୍ରଭୃତି ସହରରେ ଅବସ୍ଥାନ କରି, ସବୁ ଅଞ୍ଚଳର ରାଜନୈତିକ ଜୀବନ ସହିତ ନିକଟ ସମ୍ପର୍କରେ ଆସିଥିଲେ । ଆଫଗାନିସ୍ଥାନର ରାଜ୍ୟହରା ନିର୍ବାସିତ ରାଜା ଅମୀର ଆମାନୁଲ୍ଲା ସହ ରୋମ୍‌ଠାରେ ଦେଖା କରିଥିଲେ । ରୋମରୁ ପୁଣି ଜେନେଭା ଯାଇ ସେଠାରେ ୪ ବିଠଲ ଭାଇ ପଟେଲଙ୍କ ସ୍ମୃତି ଉଦ୍ଦେଶ୍ୟରେ ଗୋଟିଏ ପ୍ରତିମୂର୍ତ୍ତି ସ୍ଥାପନ କରିଥିଲେ । ଭାରତ ସଂପର୍କରେ ଇଂରେଜ ସରକାର ବିଦେଶରେ

ଲୋକଙ୍କୁ ଯେଉଁ ସବୁ ଭୁଲ ଧାରଣା ଦେଇ ରଖିଥିଲା ସୁଭାଷ ବାବୁ ସେହି ସବୁ ଯାଗା ବୁଲି, ଭାଷଣ ମାଧ୍ୟମରେ ଇଂରେଜ ମାନଙ୍କର ମିଥ୍ୟା, ଛଳନା ଓ ଭଣ୍ଡାମୀର ସ୍ୱରୂପକ ପଦାରେ ପକାଇ, ଏହିସବୁ ଅପକର୍ମୀ ବିରୁଦ୍ଧରେ ସେ ତୀବ୍ର ପ୍ରତିବାଦ ଉଠାଉଥିଲେ ।

୧୯୩୬ ଫେବୃୟାରୀରେ ସେ ଆୟରଲାଣ୍ଡ ଯାଇ, ସେଠାକାର ବିଖ୍ୟାତ ନେତା ଡ. ଭେଲେରାଙ୍କ ସହ ସାକ୍ଷାତ୍ କରିଥିଲେ । ଯାହାର ଫଳେ ଉଭୟ ଦେଶ ମଧ୍ୟରେ ବନ୍ଧୁ ଭାବାପନ୍ନ, ସୌହାର୍ଦ୍ଦ୍ୟ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଭାରତର ଜାତୀୟ ଆନ୍ଦୋଳନ ପ୍ରତି ଭେଲେରା ଅତ୍ୟନ୍ତ ଆନ୍ତରିକ ସହାନୁଭୂତି ଦେଖାଇଥିଲେ । ଆୟର୍ଲ୍ୟାଣ୍ଡ ବିଶ୍ୱବିଦ୍ୟାଳୟ ଓ କଲେଜମାନଙ୍କରେ ଭାରତୀୟ ଛାତ୍ରମାନେ ଯେପରି ପଢ଼ିବା ସୁଯୋଗ, ପାଆନ୍ତି ତାର ବନ୍ଦୋବସ୍ତ ପାଇଁ, ସୁଭାଷ ଚନ୍ଦ୍ର ଡ଼. ଭେଲେରାଙ୍କୁ ଅନୁରୋଧ କରିଥିଲେ । ଏଥିରେ ଦ୍ୱିଧାହୀନ ଭାବେ ଭେଲେରା ଉତ୍ତର ଦେଇଥିଲେ ଯେ,—"ଭାରତୀୟଙ୍କ ପାଇଁ ଆୟର୍ଲ୍ୟାଣ୍ଡରେ ସବୁ ଦ୍ୱାର ଖୋଲା ରହିବ । ଏହି ସମୟରେ ସେ ଭାରତରୁ ଖଣ୍ଡିଏ ନିମନ୍ତ୍ରଣ ପାଇଲେ ଯେ,—"ଜବାହାରଲାଲ୍ ନେହେରୁଙ୍କ ସଭାପତିତ୍ୱରେ ୧୯୩୬ର କଂଗ୍ରେସ ଅଧିବେଶନ ଲକ୍ଷ୍ନୌଠାରେ ଅନୁଷ୍ଠିତ ହେବ ।" ତାଙ୍କ ମନ ଉଚ୍ଛନ୍ନ ହୋଇ ଉଠିଲା । କିନ୍ତୁ ଭାରତ ଆସିବା ପାଇଁ ତାଙ୍କୁ ମନାଥିଲା । ଭାରତ ସରକାର ଏହା ଜାଣିପାରି, ଭିଏନାରେ ଥିବା ବ୍ରିଟିଶ ଦୂତ ମାର୍ଫତରେ ସୁଭାଷଚନ୍ଦ୍ରଙ୍କୁ ଜଣାଇଦେଲେ ଯେ, ସେ ଭାରତକୁ ଗଲେ ସ୍ୱାଧୀନ ଭାବରେ ରହିବାକୁ ଅନୁମତି ଦିଆଯିବ ନାହିଁ । କିନ୍ତୁ ସେ ସରକାରୀ ସତର୍କବାଣୀକୁ ଅଗ୍ରାହ୍ୟ କରି କାଣ୍ଟେଭର୍ଡ଼୍' ଜାହାଜ ଯୋଗେ ଏପ୍ରିଲ ୧୧ ତାରିଖ ଦିନ ବୋମ୍ବାଇ ବନ୍ଦରରେ ପହଞ୍ଚିବା ସଙ୍ଗେ ସଙ୍ଗେ ତାଙ୍କୁ ଗିରଫ କରି ୟେର୍‌ବାଡ଼ା ଜେଲକୁ ସିଧା ପଠାଇଦିଆଗଲା । ଏହି ଗିରଫ୍ ବିରୁଦ୍ଧରେ ଦେଶବ୍ୟାପି ତୀବ୍ର ପ୍ରତିବାଦ ମଇ ୧୦ ତାରିଖରେ 'ନିଖିଳ ଭାରତ ସୁଭାଷ ଦିବସ' ପାଳିତ ହୋଇଥିଲା । ଏ ସମ୍ବନ୍ଧ ବିଲାତ ପାର୍ଲ୍ୟାମେଣ୍ଟରେ ମଧ୍ୟ ଦୃଢ଼ ପ୍ରତିବାଦ ଜ୍ଞାପନ କରାଗଲା, ମଇ ୨୦ ତାରିଖ ଦିନ ସୁଭାଷଚନ୍ଦ୍ରଙ୍କୁ ୟେର୍‌ବାଡ଼ାରୁ ଆଣି କର୍ସିଅଙ୍ଗ ଗିରିଧାମେ ଥିବା ଶରତ ଚନ୍ଦ୍ର ବୋଷଙ୍କ ବାସଭବନରେ ଅନ୍ତରୀଣ ଭାବେ ରଖାଗଲା । ସେଠାରୁ ତାଙ୍କୁ ଚିକିତ୍ସା ପାଇଁ ଡ଼ିସେମ୍ବର ୧୭ରେ କଲିକତା ମେଡ଼ିକାଲ କଲେଜକୁ ସ୍ଥାନାନ୍ତରିତ କରି, ସୁଦୀର୍ଘ ଏକ ବର୍ଷ କାଳ ବନ୍ଦୀ ଓ ନିର୍ବାସିତ ଜୀବନଯାପନ ପରେ ୧୯୩୭ ମାର୍ଚ୍ଚ ୧୭ ତାରିଖ ଦିନ ମୁକ୍ତ ଦିଆଗଲା ।

ମୁକ୍ତିପରେ ସୁଭାଷ ଚନ୍ଦ୍ର ସ୍ୱାସ୍ଥ୍ୟ ଲାଭ ପାଇଁ ଏକମାସ କାଳ ଡ଼ଲ୍‌ହଉର ମାନ ରତନ ସଦ୍‌ଭାବଙ୍କ ଚିକିତ୍ସାଧୀନ ରହି, ମଇ ଶେଷଦିନର ପଞ୍ଜାବର

ଡାଲ୍‌ହୌସୀ ସ୍ୱାସ୍ଥ୍ୟ ନିବାସକୁ ଯାତ୍ରା କଲେ । ସେଠାରେ ଡାକ୍ତର ଧର୍ମବୀରଙ୍କ ଘରେ ପ୍ରାୟ ୫ ମାସ କାଳ ଚିକିତ୍ସା ହେବାପରେ, ଅକ୍ଟୋବର ୭ ତାରିଖ ଦିନ କଲିକତା ଫେରିଥିଲେ । ଏହି ସମୟ ଭିତରେ ତାଙ୍କ ସ୍ୱାସ୍ଥ୍ୟରେ ବିଶେଷ ଉନ୍ନତି ଦେଖା ଯାଇଥିଲା ।

## ଚତୁର୍ଥ ୟୁରୋପ ଯାତ୍ରା

ପଞ୍ଜାବରୁ କଲିକତା ଫେରି ୧୯୩୭ ମସିହା ନଭେମ୍ବର ୧୮ ତାରିଖ ଦିନ ସେ ପୁଣି ୟୁରୋପ ଯାତ୍ରାକରି, ଅଷ୍ଟ୍ରିଆର ବାଦଗଷ୍ଟିନ ଠାରେ ଦେଢ଼ମାସ ରହି ଚିକିତ୍ସିତ ହେଉଥିଲେ । ଏଥର ଲଣ୍ଡନରେ ଚେମ୍ବରଲେନ ପ୍ରମୁଖ ଭାରତ ସମ୍ବନ୍ଧିତ ନେତା, ବନ୍ଧୁ ସଭା ସମିତିରେ ଯାଇ ବ୍ରିଟିଶ ବିରୁଦ୍ଧ ଭାଷଣମାନ ଦେଇଥିଲେ ।

## ହରିପୁର କଂଗ୍ରେସ

ସୁଭାଷ ଚନ୍ଦ୍ର ୟୁରୋପରେ ଥିବା ବେଳେ ଗୁଜରାଟ ପ୍ରଦେଶର ହରିପୁର ଗ୍ରାମରେ କଂଗ୍ରେସର ୫୧ ତମ ଅଧିବେଶନ ବସିବା ସ୍ଥିର ହେଲା । ଏଥିର ସଭାପତି ପଦପାଇଁ ଚାରିଜଣ ଯଥାକ୍ରମେ— ସୁଭାଷ ଚନ୍ଦ୍ର, ଜବାହରଲାଲ, ମୌଲାନା ଆଜାଦ୍ ଓ ଅବ୍‌ଦୁଲ ଗଫୁର ଖାଁଙ୍କ ନାମ ପ୍ରସ୍ତାବିତ ହୋଇଥିଲା । ଅନ୍ୟ ତିନିଜଣ ନିଜ ନିଜର ନାମ ପ୍ରତ୍ୟାହାର କରି ନେବାରୁ ସୁଭାଷ ଚନ୍ଦ୍ର ନିର୍ବିରୋଧରେ ସଭାପତି ନିର୍ବାଚିତ ହୋଇଥିଲେ । ଏ ବିଷୟ ତତ୍କାଳୀନ କଂଗ୍ରେସର ସମ୍ପାଦକ ଜେ. ବି. କୃପାଲନୀ ଟେଲିଗ୍ରାମ ଯୋଗେ ତାଙ୍କୁ ଜଣାଇ ଦେଇଥିଲେ ।

କଂଗ୍ରେସ ସଭାପତି ରୂପେ ନିର୍ବାଚିତ ହୋଇଥିବା ସମ୍ବାଦ ପାଇ ସୁଭାଷ ଚନ୍ଦ୍ର ବିମାନ ଯୋଗେ ୧୯୩୮ ଜାନୁୟାରୀ ୧୪ ତାରିଖ ଦିନ ୟୁରୋପରୁ ଫେରି ଭାରତରେ ପହଞ୍ଚିଲେ । ଗୁଜରାଟ ପ୍ରଦେଶର ପବିତ୍ର ତାପ୍ତି ନଦୀ କୂଳବର୍ତ୍ତୀ ହରିପୁରଠାରେ ୮ ବିଠଲଭାଇ ପଟେଲଙ୍କ ସ୍ମୃତି ଉଦ୍ଦେଶ୍ୟରେ କଂଗ୍ରେସ ମଣ୍ଡପର ନାମ 'ବିଠଲ ନଗର' ରଖା ଯାଇଥିଲା । ୫୧ ତମ ଅଧିବେଶନ ଯୋଗୁଁ, ମଣ୍ଡପରେ ୫୧ଟି ପ୍ରବେଶ ଦ୍ୱାର କରି, ୫୧ଟି ବଳଦ ଯୋଖା ସୁସଜ୍ଜିତ ରଥରେ ପ୍ରାୟ ୧୨ ମାଇଲ ବ୍ୟାପି ଶୋଭାଯାତ୍ରାରେ ରାଷ୍ଟ୍ରପତିଙ୍କୁ ପାଛୋଟି ଅଣା ହୋଇଥିଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ସ୍ୱାଧୀନତା ପୂର୍ବରୁ ଜାତୀୟ କଂଗ୍ରେସର ସଭାପତିଙ୍କୁ 'ରାଷ୍ଟ୍ରପତି' ଭାବେ ସମ୍ବୋଧନ କରାଯାଉଥିଲା । ସେତେବେଳେ ବିଠଲ ନଗରରେ ପ୍ରାୟ ଅଢ଼େଇଲକ୍ଷ ଲୋକ ସମାଗମ ହୋଇଥିଲେ । ସୁଭାଷ ଚନ୍ଦ୍ର ସାରା ଜୀବନ ଦେଶପାଇଁ ଦୁଃଖ ଓ ନିର୍ଯ୍ୟାତନା ଭୋଗ କରିଥିବା ଯୋଗୁଁ, ଦେଶବାସୀ ତାଙ୍କ ପ୍ରତି

ଶ୍ରେଷ୍ଠ ସମ୍ମାନ ଦେଖାଇଥିଲେ । ତାଙ୍କର ବୟସ ସେତେବେଳକୁ ମାତ୍ର ୪୧ ବର୍ଷ ହୋଇଥିଲା ।

୧୯୩୮ ମସିହାରେ ସୁଭାଷ ବାବୁ କଂଗ୍ରେସର ସଭାପତି ହେବାପରେ କେତେକ ଉଲ୍ଲେଖ ଯୋଗ୍ୟ ଘଟଣା ଘଟିଥିଲା ଯଥା :—(୧) ଓଡ଼ିଶା, ବିହାର ଓ ଯୁକ୍ତପ୍ରଦେଶ (ଉତ୍ତର ପ୍ରଦେଶ) ରେ କଂଗ୍ରେସ ମନ୍ତ୍ରୀଙ୍କ ସହିତ ଲାଟମାନଙ୍କର ମତଭେଦ ଓ ଅଚଳ ଅବସ୍ଥାର ସୃଷ୍ଟି, ଶେଷରେ ଲାଟମାନଙ୍କର ପରାଜୟ । (୨) ହିନ୍ଦୁ-ମୁସଲମାନ ସମସ୍ୟା ସମାଧାନ ପାଇଁ ଜିନ୍ନାଙ୍କ ସଙ୍ଗେ ସୁଭାଷଙ୍କ ଆଲୋଚନା । (୩) ଅସାମରେ କଂଗ୍ରେସର ମିଳିତ ମନ୍ତ୍ରୀମଣ୍ଡଳ ଗଠନ । (୪) କଂଗ୍ରେସ କାର୍ଯ୍ୟକାରୀ କମିଟିରେ ଓଡ଼ିଶାର ପ୍ରତିନିଧିଭାବେ ଶ୍ରୀ ହରେକୃଷ୍ଣ ମହତାବଙ୍କୁ ଗ୍ରହଣ । (୫) ପୂର୍ବରୁ ଦେଶୀୟ ରାଜ୍ୟମାନଙ୍କରେ କଂଗ୍ରେସର କୌଣସି ଆନ୍ଦୋଳନ ନଥିଲା, ଏଣୁ କଂଗ୍ରେସର ନୀତି ଅନୁଯାୟୀ ସେହିସବୁ ଅଞ୍ଚଳରେ ଅହିଂସା ଗଣ ଆନ୍ଦୋଳନ ପ୍ରବର୍ତ୍ତିତ ହୋଇଥିଲା ।

## ତ୍ରିପୁରୀ କଂଗ୍ରେସ ଓ ସଭାପତି ନିର୍ବାଚନ

୧୯୩୯ ମସିହାରେ, ମଧ୍ୟ ପ୍ରଦେଶର ତ୍ରିପୁରୀଠାରେ କଂଗ୍ରେସର ୫୨ ତମ ଅଧିବେଶନ ଏକ ସ୍ମରଣୀୟ ଘଟଣା । ସୁଭାଷଚନ୍ଦ୍ର ଜଣେ ଚରମ ତ୍ୟାଗୀ ଦେଶପ୍ରେମୀଙ୍କ ପରି ତତ୍କାଳୀନ କଂଗ୍ରେସ ଦକ୍ଷିଣପନ୍ଥି ନେତୃବୃନ୍ଦଙ୍କ ଅନେକଙ୍କ ନେତାଙ୍କ ବାସ୍ତବ, ଯାହାକି ତାଙ୍କ ପକ୍ଷେ ଗ୍ରହଣୀୟ ନଥିଲା । ତାଙ୍କର ମତ ଥିଲା, ସେ ଇଂରେଜ ସରକାରଙ୍କ ସହିତ ମିଳାମିଶା ବା କୌଣସି ନରମ ପନ୍ଥା ଗ୍ରହଣ କରିବାକୁ ସମ୍ମତ ନଥିଲେ । ବାସ୍ତବରେ ସେ ଥିଲେ ଜଣେ ଜାତୀୟବାଦୀ ଓ ତାଙ୍କର ଚରିତ୍ର ଥିଲା ଅଦମନୀୟ । ସେଥିପାଇଁ ଦକ୍ଷିଣପନ୍ଥିମାନେ କଂଗ୍ରେସ ସଭାପତି ପଦରୁ ତାଙ୍କୁ ହଟାଇବା ପାଇଁ ସକଳ ପ୍ରକାର ଚେଷ୍ଟା କଲେ । ୧୯୩୯ର ସଭାପତି ପଦ ପାଇଁ ଯଥାକ୍ରମେ—ସୁଭାଷ ଚନ୍ଦ୍ର, ମୌଲନା ଆଜାଦ ଓ ଡକ୍ଟର ପଟ୍ଟାଭି ସୀତାରାମୟାଙ୍କ ନାମ ପ୍ରସ୍ତାବିତ ହୋଇଥିଲା । ପରେ ମୌଲନା ଆଜାଦ ଦକ୍ଷିଣପନ୍ଥିଙ୍କ ପରାମର୍ଶରେ ନିଜ ନାମ ପ୍ରତ୍ୟାହାର କରି ପଟ୍ଟାଭିଙ୍କ ସପକ୍ଷରେ ଏକ ବିବୃତ୍ତି ଦେଲେ । ସୁଭାଷ ଚନ୍ଦ୍ର ଯେପରି ପୁନଃ ନିର୍ବାଚିତ ନ ହୁଅନ୍ତି, ତାହା ପାଇଁ କାର୍ଯ୍ୟକାରୀ କମିଟିର ୭ ଜଣ ସଭ୍ୟ ପଟ୍ଟାଭିଙ୍କୁ ସମର୍ଥନ କରି ମଧ୍ୟ ବିବୃତ୍ତି ଦେଲେ । ଏପରିକି ସ୍ୱୟଂ ଗାନ୍ଧିଜୀ ପଟ୍ଟାଭିଙ୍କୁ ସମର୍ଥନ କରି, ଭୋଟ ଦେବାପାଇଁ କଂଗ୍ରେସ ଲୋକଙ୍କୁ ନିବେଦନ କରିଥିଲେ । କିନ୍ତୁ ୧୯୩୯ ଜାନୁୟାରୀ ୨୯ ତାରିଖ ଦିନ ଭିନ୍ନ ଭିନ୍ନ ପ୍ରଦେଶରେ ଭୋଟ ଗଣତି ପରେ ଦେଖାଗଲା ଯେ, ପଟ୍ଟାଭି ମୋଟ ୧୩୭୭ ଭୋଟ ପାଇଥିବା ସ୍ଥଳେ, ଦକ୍ଷିଣପନ୍ଥି ନେତାଙ୍କ ଘୋର ବିରୋଧ ସତ୍ତ୍ୱେ ସୁଭାଷ ଚନ୍ଦ୍ର ୧୫୮୦ ଭୋଟ ପାଇ ଦ୍ୱିତୀୟବାର କଂଗ୍ରେସ ସଭାପତି ନିର୍ବାଚିତ ହୋଇ ସମସ୍ତଙ୍କୁ ବିସ୍ମିତ

କରିଦେଲେ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଲା ଯେ, ଭାରତର ଯୁବ ଶକ୍ତି ସମ୍ପୂର୍ଣ୍ଣଭାବେ ତାଙ୍କୁ ଦୃଢ଼ ସମର୍ଥନ କରୁଥିଲେ ।

କଦ୍ରମତରେ ସୁଭାଷ ଚନ୍ଦ୍ର ସଭାପତି **ନିର୍ବାଚିତ ହେବାପରେ,** ଯେଉଁ ସବୁ ଘଟଣା ଘଟିଲା ତାହା ମଧ୍ୟ ଉଲ୍ଲେଖଯୋଗ୍ୟ । କାରଣ, ନିର୍ବାଚନ ଫଳ ଘୋଷଣା ପରେ, ସୁଭାଷ ଚନ୍ଦ୍ର ବିବୃତ୍ତି ଦେଇ କହିଥିଲେ ଯେ— "ନିର୍ବାଚନରେ ନୀତି ଓ ଆଦର୍ଶର ଜୟ ହୋଇଛି । କଂଗ୍ରେସ କର୍ମୀମାନଙ୍କ ମଧ୍ୟରେ ମତଭେଦ ରହିପାରେ, କିନ୍ତୁ ସାମ୍ରାଜ୍ୟବାଦ ବିରୁଦ୍ଧରେ ସଂଗ୍ରାମ ଚଳାଇଲାବେଳେ ସମସ୍ତେ ଆମେ ଏକମତ × × × ଭାରତର ସର୍ବଶ୍ରେଷ୍ଠ ମାନବଙ୍କ ଆସ୍ଥାଭାଜନ ହେବାପାଇଁ ମୁଁ ଚେଷ୍ଟା କରିବି ।"

ନିର୍ବାଚନ ଫଳ ଘୋଷଣା ପରେ ପରେ ସାମ୍ବାଦିକ ମାନେ ଗାନ୍ଧିଜୀଙ୍କୁ ଭେଟି, କେତେକ ପ୍ରଶ୍ନ କରିଥିଲେ । ସେତେବେଳେ ମହାତ୍ମାଜୀ ଗୋଟିଏ ବିବୃତ୍ତି ଦେଲେ ଯେ,— "ମୁଁ ପ୍ରଥମରୁ ତାହାର (ସୁଭାଷଚନ୍ଦ୍ରଙ୍କ) ବିରୋଧୀ ଥିଲି । କାରଣ ବର୍ଣ୍ଣନା ପ୍ରୟୋଜନ ନାହିଁ । × × ମୋ ଚେଷ୍ଟାରୁ ଡ଼ା. ପଟ୍ଟାଭି ଓହରି ନଥିଲେ । ତେଣୁ ଏହି ପରାଜୟ ପଟ୍ଟାଭିଙ୍କର ନୁହେଁ, କେବଳ ମୋରହିଁ ପରାଜୟ × × × ସଂଖ୍ୟାନ୍ୟୂନଦଳ ଏଥିରେ କୌଣସି ବାଧା ସୃଷ୍ଟି କରିବେ ନାହିଁ । ଯଦି ସହଯୋଗ କରିବାକୁ ଅସମର୍ଥ, ତେବେ ସେଥିରୁ ବିରତ ରହିବେ ।" × × × ଗାନ୍ଧିଜୀଙ୍କ ମତରେ ସଂଖ୍ୟାନ୍ୟୂନ ଦଳ ହେଲେ ଦକ୍ଷିଣ ପନ୍ଥି ଏବଂ ସଂଖ୍ୟା ଗରିଷ୍ଠ ଦଳ ହେଲେ ବାମ ପନ୍ଥି । ଏଣୁ ସୁଭାଷ ଚନ୍ଦ୍ରଙ୍କ ସହିତ ସହଯୋଗ କରିବେ ନାହିଁ ବୋଲି ସ୍ପଷ୍ଟଭାବେ ସୂଚାଇ ଦେଲେ । ଫଳରେ ଅଧିବେଶନ ପୂର୍ବରୁ କାର୍ଯ୍ୟକାରୀ କମିଟିର ୧୨ ଜଣ ସଭ୍ୟ ନିଜ ନିଜର ପଦତ୍ୟାଗ ପତ୍ର ସୁଭାଷ ଚନ୍ଦ୍ରଙ୍କ ନିକଟରେ ଦାଖଲ କରିଦେଲେ । ସେତେବେଳକୁ ୧୦୩ ଡ଼ିଗ୍ରୀ ଜ୍ୱରରେ ସେ ଶଯ୍ୟାଶାୟୀ ଥିଲେ । ଏପରିକି ଉଠିବାକୁ ମଧ୍ୟ ତାଙ୍କର ଶକ୍ତି ନଥିଲା ।

୧୯୩୯ ଫେବୃୟାରୀ ୧୫ ତାରିଖ ଦିନ ଓ୍ୱାର୍ଦ୍ଧାଠାରେ ମହାତ୍ମାଜୀଙ୍କ ସହ ସୁଭାଷ ଚନ୍ଦ୍ର ସାର୍ଦ୍ଧ ୩ ଘଣ୍ଟା ଆଲୋଚନା କରିବାପରେ, ବିଭିନ୍ନ ବିଷୟରେ ତାଙ୍କୁ ପରାମର୍ଶ ଦେବାପାଇଁ ମହାତ୍ମାଜୀ ପ୍ରତିଶ୍ରୁତି ଦେଇଥିଲେ ।

## ତ୍ରିପୁରୀ କଂଗ୍ରେସ ଅଧିବେଶନ

ତ୍ରିପୁରୀ କଂଗ୍ରେସ ଅଧିବେଶନ ୧୦ ଦିନ ପୂର୍ବରୁ ସୁଭାଷ ଚନ୍ଦ୍ର ସାଂଘାତିକ ଭାବେ ନିମୋନିଆ ଜ୍ୱରରେ ଆକ୍ରାନ୍ତ ହୋଇ ପଡ଼ିଲେ । ଡାକ୍ତରଙ୍କ ପରାମର୍ଶ ଏଡ଼ାଇ ଆମ୍ବୁଲେନ୍ସ ଗାଡ଼ି ଯୋଗେ ହାଓଡ଼ାରେ ପହଞ୍ଚି ବମ୍ବେ ମେଲରେ ସି

ବିପୁଳ ଯାତ୍ରା କଲେ । ରାଷ୍ଟ୍ରପତିଙ୍କୁ ଅଭ୍ୟର୍ଥନା କରିବା ପାଇଁ ସୁସଜ୍ଜିତ ରଥରେ ୫୨ଟି ହାତୀ ଯୋଡ଼ାହୋଇ ରଥ ଉପରେ ସୁଭାଷ ଚନ୍ଦ୍ରଙ୍କ ବଦଳେ ପ୍ରତିଛବି ରଖାଯାଇଥିଲା । କାରଣ ଭୀଷଣ ଜ୍ୱର ଯୋଗୁଁ, ସେ ଶୋଭାଯାତ୍ରାରେ ଯୋଗଦେଇ ପାରିଲେ ନାହିଁ । ଜବଲପୁର ହସ୍ପିଟାଲକୁ ଯିବାପାଇଁ ଡାକ୍ତରମାନେ ପରାମର୍ଶ ଦେଲେ, କିନ୍ତୁ ସେ କହିଲେ ଯେ, "—ଜବଲପୁର ଯିବାପାଇଁ ମୁଁ ଆସିନାହିଁ, ଅଧିବେଶନ ଶେଷ ପୂର୍ବରୁ ବରଂ ଏଠାରେ ମରିବି, କିନ୍ତୁ ଅନ୍ୟତ୍ର କେଉଁଠିକି ଯିବି ନାହିଁ ।" ଅଧିବେଶନ ମଞ୍ଚ ଉପରେ ସୁଭାଷ ଚନ୍ଦ୍ର ପୁଣି ସେହି ପୂର୍ଣ୍ଣ ସ୍ୱାଧୀନତା ଦାବୀ ଘୋଷଣା କରି ବ୍ରିଟିଶ ସରକାରକୁ ୬ ମାସିଆ ଚରମ ପତ୍ର ଦେବାପାଇଁ ଆହ୍ୱାନ ଜଣାଇଥିଲେ । ଏ ଅଧିବେଶନକୁ ମହାତ୍ମାଗାନ୍ଧୀ ନ'ଆସି, ସେତେବେଳେ ପ୍ରଜାମାନଙ୍କ ଦାବି ହାସଲ ପାଇଁ ସେ ରାଜକୋଟରେ ଅନଶନ ଆରମ୍ଭ କରିଥିଲେ ।

ତ୍ରିପୁରୀ ଅଧିବେଶନ ପୂର୍ବରୁ ଏ ମଧ୍ୟରେ କଂଗ୍ରେସ କମିଟିର ଏକ ଅଧିବେଶନ ଡକାଇ, ସେଥିରେ ଦକ୍ଷିଣ ପନ୍ଥିମାନଙ୍କ ପକ୍ଷରୁ ଗୋବିନ୍ଦ ବଲ୍ଲଭ ପନ୍ଥ ଏକ ପ୍ରସ୍ତାବ ଆଗତ କରିଥିଲେ । ପ୍ରସ୍ତାବଟିର ମୁଖ୍ୟ ଉଦ୍ଦେଶ୍ୟ "—ବାମପନ୍ଥି ନେତା ସୁଭାଷ ଚନ୍ଦ୍ର ସଭାପତି ନିର୍ବାଚିତ ହେଲେ ମଧ୍ୟ, କାର୍ଯ୍ୟକାରୀ କମିଟି ଗଠନ ପାଇଁ ତାଙ୍କର କ୍ଷମତା ନ'ରହୁ । ୧୯୩୯ ସାଲର କାର୍ଯ୍ୟକାରୀ କମିଟି ପ୍ରତି ପୂର୍ଣ୍ଣ ଆସ୍ଥା ସ୍ଥାପନ କରିବା ସଙ୍ଗେ ସଙ୍ଗେ ଗାନ୍ଧିଜୀଙ୍କ ପରାମର୍ଶରେ ନୂଆ କାର୍ଯ୍ୟକାରୀ କମିଟି ଗଢ଼ାଯାଉ ।" ଅଥଚ କଂଗ୍ରେସ ନିୟମାବଳୀରେ, କାର୍ଯ୍ୟକାରୀ କମିଟି ଗଠନ ପାଇଁ ସଭାପତିଙ୍କୁ ଅଖଣ୍ଡ କ୍ଷମତା ଦିଆଯିବା ପାଇଁ ଉଲ୍ଲେଖ ରହିଛି । ସୁଭାଷ ଚନ୍ଦ୍ର ଇଚ୍ଛା କରିଥିଲେ ଶ୍ରୀ ପନ୍ଥଙ୍କ ପ୍ରସ୍ତାବକୁ ନାମଞ୍ଜୁର କରି ଦେଇଥାନ୍ତେ, ବରଂ ଏହା ଆଗତ କରିବାକୁ ଅନୁମତି ଦେବା ଫଳରେ ଦକ୍ଷିଣ ପନ୍ଥି ଦଳ ସଂଖ୍ୟା ଗରିଷ୍ଠତା ଯୋଗୁଁ ପନ୍ଥ ପ୍ରସ୍ତାବଟି ଗୃହୀତ ହୋଇଗଲା । ଏଥିରେ ଗାନ୍ଧିଜୀଙ୍କ ଦଳ ଜୟଲାଭ କଲେ । ଅତୀବ ଦୁଃଖର କଥା ଦକ୍ଷିଣ ପନ୍ଥିଙ୍କ ସମବେତ ଚେଷ୍ଟାରେ କଂଗ୍ରେସର ବିଧିବଦ୍ଧ ନିର୍ବାଚିତ ସଭାପତିଙ୍କ ବିରୁଦ୍ଧରେ ଏକ ଅନାସ୍ଥା ପ୍ରସ୍ତାବ ଧାର୍ଯ୍ୟ ହୋଇଗଲା ।

ଏହାପରେ ସୁଭାଷ ଚନ୍ଦ୍ର କଣ୍ଟୁଡନ ପାଇଁ ଶଯ୍ୟାଶାୟୀ ରହିଲେ । ଗାନ୍ଧିଜୀଙ୍କ ସହ ମିଳାମିଶା କରିବାପାଇଁ ଚେଷ୍ଟା ମଧ୍ୟ କଲେ । କଲିକତା ଆସି କାର୍ଯ୍ୟକାରୀ କମିଟି ସଭ୍ୟ ନିର୍ବାଚନ କରିବାପାଇଁ ଗାନ୍ଧିଜୀଙ୍କୁ ଅନୁରୋଧ କଲେ, କିନ୍ତୁ ଗାନ୍ଧିଜୀ ରାଜି ହେଲେ ନାହିଁ । ଏହାପରେ ସେ ଗାନ୍ଧିଜୀଙ୍କ ନିକଟକୁ ବହୁପତ୍ର ଲେଖି ନିରାଶ ହେବାରୁ କଲିକତାଠାରେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ ଡକାଇଲେ । ଏଥିରେ ମଧ୍ୟ ମିଳାମିଶାର କୌଣସି ଆଶା ନ ଦେଖି ସେ କଂଗ୍ରେସ ସଭାପତି

ପଦରୁ ଇସ୍ତଫା ପ୍ରଦାନ କଲେ । ତାଙ୍କ ଯାଗାରେ ଡ଼ା. ରାଜେନ୍ଦ୍ର ପ୍ରସାଦ ସଭାପତି ନିର୍ବାଚିତ ହୋଇଥିଲେ ।

## ଫରଓ୍ୱାର୍ଡ ବ୍ଲକ

କଂଗ୍ରେସ ଦକ୍ଷିଣ ପକ୍ଷଙ୍କ ଆଚରଣରେ ସନ୍ତୁଷ୍ଟ ନ'ହୋଇ ସେ ଏ ଦେଶର ସ୍ୱାଧୀନତା ଯଥାଶୀଘ୍ର ଆନୟନ ଦିଗରେ ଇଚ୍ଛୁକ ହୋଇ କଂଗ୍ରେସ 'ଫରଓ୍ୱାର୍ଡ ବ୍ଲକ' ବା 'ଅଗ୍ରଗାମୀ' ଦଳ ପ୍ରତିଷ୍ଠା କଲେ । ବାମ ପନ୍ଥିମାନଙ୍କୁ ସଂଗଠିତ କରିବା ପାଇଁ ସେ ଆକୁମାରୀ ହିମାଚଳ ଘୂରିକରି ଫରଓ୍ୱାର୍ଡ ବ୍ଲକର୍ ମତ ଓ ଉଦ୍ଦେଶ୍ୟ ବୁଝାଇବା ସଙ୍ଗେ ସଙ୍ଗେ ପ୍ରତି ପ୍ରଦେଶରେ ବ୍ଲକ୍‌ର ଶାଖାମାନ ସ୍ଥାପିତ କଲେ ।

ଏହିକବେଳେ ନିଖିଳ ଭାରତ କଂଗ୍ରେସ କମିଟିର ଦୁଇଟି ପ୍ରସ୍ତାବ ଧାର୍ଯ୍ୟ ହେଲ ଯେ, (୧) ପ୍ରାଦେଶିକ କଂଗ୍ରେସ କମିଟିର ଅନୁମତିରେ କେହି ସତ୍ୟାଗ୍ରହ କରିପାରିବେ ନାହିଁ । (୨) ପ୍ରାଦେଶିକ ମନ୍ତ୍ରୀମଣ୍ଡଳ, ପ୍ରାଦେଶିକ କଂଗ୍ରେସ କମିଟିର ନିୟନ୍ତ୍ରଣାଧୀନ ହୋଇ ରହିବ ନାହିଁ । ବଙ୍ଗୀୟ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଭାବେ ସୁଭାଷ ଚନ୍ଦ୍ର ଉପରୋକ୍ତ ଦୁଇଟି ପ୍ରସ୍ତାବର ଘୋର ବିରୋଧ କରିଥିଲେ । ଏଣୁକରି ତତ୍କାଳୀନ କଂଗ୍ରେସ ସଭାପତି ଡ଼ା. ରାଜେନ୍ଦ୍ର ପ୍ରସାଦ ଓ୍ୱାର୍ଦ୍ଧା ଠାରେ କାର୍ଯ୍ୟକାରୀ କମିଟି ବୈଠକ ଡ଼କାଇ, ସୁଭାଷ ଚନ୍ଦ୍ରଙ୍କୁ ବଙ୍ଗୀୟ ପ୍ରାଦେଶିକ କଂଗ୍ରେସର ସଭାପତି ପଦରୁ ବହିଷ୍କାର କରିବା ସଙ୍ଗେ ସଙ୍ଗେ ୩ ବର୍ଷ ଯାଏ ସେ କଂଗ୍ରେସର ସଭ୍ୟ ରହିପାରିବେ ନାହିଁ ବୋଲି ନିର୍ଦ୍ଦେଶ ଦେଲେ । ହାୟ ! ଭାଗ୍ୟର କି ପରିହାସ ! ଯିଏ ଦୁଇ ଦୁଇ ଥର ବିପୁଳ ଭୋଟରେ କଂଗ୍ରେସର ସଭାପତି ନିର୍ବାଚିତ ହୋଇଥିଲେ, ସେ ପୁଣି ଏହା ବର୍ଷରେ କଂଗ୍ରେସରୁ ବହିଷ୍କୃତ ହେଲେ ।

ସୁଭାଷ ଚନ୍ଦ୍ର କଂଗ୍ରେସରୁ ବହିଷ୍କାର ହେବାପରେ ସ୍ପଷ୍ଟ ବୁଝିଲେ ଯେ, ଦେଶର ଏକ ବଡ଼ ଅଂଶ ତାଙ୍କ ନେତୃତ୍ୱ ମାନି ଚଳିବାପାଇଁ ପ୍ରସ୍ତୁତ ଅଛନ୍ତି । ନିଜର ତଥା ଦଳର ରାଜନୈତିକ ମତାମତ ପ୍ରଚାର ପାଇଁ 'ଫରଓ୍ୱାର୍ଡ ବ୍ଲକ' ନାମକ ଗୋଟିଏ ଇଂରେଜ ସାପ୍ତାହିକ ପତ୍ରିକା ପ୍ରକାଶ କଲେ । କାରଣ ସେ ଚୁପ୍ କରି ବସି ରହିବା ଲୋକ ନୁହନ୍ତି । ଏଣୁ ସେ ଠିକ୍ କଲେ ଯେ, କଂଗ୍ରେସ ସୋସାଲିଷ୍ଟ ପାର୍ଟି ଭଳି ସମସ୍ତଙ୍କୁ ଏକାଠି କରିବାକୁ ବାମପନ୍ଥି ଉପଦଳ ଗଠନ କରିବେ, କିନ୍ତୁ ଏହିଦଳର କାର୍ଯ୍ୟ କଂଗ୍ରେସ ବିରୁଦ୍ଧରେ କଦାପି ଉଦ୍ଦିଷ୍ଟ ହେବ ନାହିଁ । ଯେଉଁମାନେ ମନେ କରନ୍ତି ଯେ, ସୁଭାଷ ଚନ୍ଦ୍ର ବ୍ୟକ୍ତିଗତ ସ୍ୱାର୍ଥ ନିମନ୍ତେ ବାରମ୍ବାର କଂଗ୍ରେସ ବିରୁଦ୍ଧରେ ଠିଆ ହୋଇଥିଲେ, ସେମାନେ ଅକ୍ଷମଣୀୟ ଭୁଲ କରନ୍ତି । କାରଣ ବ୍ୟକ୍ତିଗତ ସ୍ୱାର୍ଥ ଅପେକ୍ଷା ସେ ସଦାବେଳେ ଦେଶର ସ୍ୱାର୍ଥକୁ ବଡ଼କରି ଦେଖିଛନ୍ତି । କଂଗ୍ରେସର ମତ ଯେତେବେଳେ ଇଂରେଜ ସରକାର ପ୍ରତି ଢ଼ଳୁଥାଏ, ସେତେବେଳେ

ସେ ବଜ୍ରକଣ୍ଠରେ ବିପ୍ଳବର ବାଣୀ ଉଚ୍ଚାରଣ କରି କଂଗ୍ରେସ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରନ୍ତି ।

'ଫରୱାର୍ଡ ବ୍ଲକ୍' ଗଠନ କରି ସମଗ୍ର ଭାରତ ବର୍ଷରେ ବିପ୍ଳବୀ ସୁଭାଷ ଚନ୍ଦ୍ର ଏକ ଅପୂର୍ବ ପ୍ରେରଣା ସଞ୍ଚାର କରିପାରିଥିଲେ । ସେ କେତେଜଣ ବିଖ୍ୟାତ ସହକର୍ମୀ ଯଥା ପଞ୍ଜାବର ସର୍ଦ୍ଦାର ସାର୍ଦ୍ଦୁଳ ସିଂ କାଭିସେର୍, ଦିଲ୍ଲୀର ଲାଲା ଶଙ୍କର ଲାଲ୍, ୟୁ.ପିର ପଣ୍ଡିତ ବିଶ୍ୱମ୍ଭର ଦୟାଲ ତ୍ରିପାଠୀ, ଚନ୍ଦ୍ରକାନ୍ତ ମାଳବ୍ୟ, ବିହାରର ପଣ୍ଡିତ ଶୀଳଭଦ୍ର ଯାଜୀ, ଧନରାଜ ଶର୍ମା, ମଧ୍ୟ ପ୍ରଦେଶର ହରି ବିଷ୍ଣୁ କାମାଥ, ଆର. ଏସ୍. ରୁଇକର୍, ଅଚ୍ୟୁତ ପଟ୍ଟବର୍ଦ୍ଧନ, ବମ୍ବେର ଶିଉଧାରୀ ଲାଲ ଠକ୍‌କର, ପରମାନନ୍ଦ ସୁଗନ ମଲ୍, ମାନ୍ଦ୍ରାଜର ରାଜମନ୍ନାର ଚେଟିଆର, ବଙ୍ଗଳାର ହେମନ୍ତ କୁମାର ବୋଷ, ସତ୍ୟପ୍ରିୟ ବନ୍ଦୋପାଧ୍ୟାୟ, ଲୀଳାରାୟ, ମୁକୁନ୍ଦ ଲାଲ ସରକାର, ଅଶ୍ୱିନୀକୁମାର ଗାଙ୍ଗୁଲି ପ୍ରମୁଖ ବିପ୍ଳବୀଙ୍କ ବଳିଷ୍ଠ ନେତୃତ୍ୱରେ ବଙ୍ଗଳାର ପୁରପଲ୍ଲୀରେ ଫରୱାର୍ଡ ବ୍ଲକ୍ ପ୍ରତିଷ୍ଠା ହୋଇଥିଲା ।

### ହଲ୍‌ୱେଲ୍ ସ୍ତମ୍ଭ ଅପସାରଣ

ବଙ୍ଗଳାର ଶେଷ ସ୍ୱାଧୀନ ନବାବ ସିରାଜଉଦ୍ଦୌଲାଙ୍କ ନାମରେ କୁତ୍ସା ରଚନା କରି ଲୋକଙ୍କ ଆବେଗ ଭରିବା ନିମନ୍ତେ ଲର୍ଡ କର୍ଜନ, କଲିକତାର ଡାଲହୌସି ସ୍କୋୟାର ଠାରେ ତଥା କଥିତ 'ଅନ୍ଧକୂପ ହତ୍ୟା'ର ସ୍ମାରକ ଚିହ୍ନ ସ୍ୱରୂପ ହଲ୍‌ୱେଲ ସ୍ମୃତି ସ୍ତମ୍ଭ ପ୍ରତିଷ୍ଠା କରିଥିଲେ । ଗବେଷଣା ଦ୍ୱାରା ପ୍ରମାଣ ହୋଇଛି, ଏହା ଏକ ସମ୍ପୂର୍ଣ୍ଣ କାଳ୍ପନିକ ଘଟଣା । ତେଣୁ ସୁଭାଷ ଚନ୍ଦ୍ର ୧୯୪୦ ଜୁନ୍ ୨୯ ତାରିଖ ଦିନ କଲିକତାର ହିନ୍ଦୁ-ମୁସଲମାନ ଉଭୟ ସମ୍ପ୍ରଦାୟର ମିଳିତ ବୈଠକ ସଭାରେ ଘୋଷଣା କଲେ ଯେ ଭାରତର ଜାତୀୟ କଳଙ୍କ ହଲ୍‌ୱେଲ୍ ସ୍ମୃତି ସ୍ତମ୍ଭ, ଅପସାରଣ କରିବା ପାଇଁ ସେ ସତ୍ୟାଗ୍ରହ ଆନ୍ଦୋଳନ କରିବେ ।" ଏହି ପ୍ରସ୍ତାବକୁ ଉଭୟ ସମ୍ପ୍ରଦାୟ ସର୍ବାନ୍ତଃକରଣରେ ସମର୍ଥନ କଲେ । ଫଳରେ ଜୁଲାଇ ୩ ତାରିଖ ସିରାଜଉଦ୍ଦୌଲା ଦିବସ ପାଳିତ ହୋଇ ଆନ୍ଦୋଳନ ଆରମ୍ଭ ହୋଇଥିଲା । କିନ୍ତୁ ତା ପୂର୍ବଦିନ ଜୁଲାଇ ୨ରେ ଅପ୍ରତ୍ୟାଶିତ ଭାବେ ସୁଭାଷ ଚନ୍ଦ୍ରଙ୍କୁ ଭାରତ ରକ୍ଷା ଆଇନାନୁଯାୟୀ ଗିରଫ୍‌କରି କଲିକତାର ପ୍ରେସିଡେନ୍‌ସି ଜେଲକୁ ନିଆଗଲା । ଆନ୍ଦୋଳନର ପ୍ରଧାନ ନେତା ଗିରଫ୍ ହୋଇଥିଲେ ମଧ୍ୟ ଆନ୍ଦୋଳନ ବନ୍ଦ ନଥିଲା । ଅନ୍ୟତମ ସହକର୍ମୀ ତଥା ଫରୱାର୍ଡ ବ୍ଲକ୍‌ର ସମ୍ପାଦକ ହେମନ୍ତ କୁମାର ବସୁ ଏହି ଆନ୍ଦୋଳନ ସୁବ୍ୟବସ୍ଥ ରୂପେ ଚଳାଇଥିଲେ । ସରକାର ବାଧ୍ୟ ହୋଇ ସେଠାରୁ ହଲ୍‌ୱେଲ ସ୍ତମ୍ଭକୁ ଉଠାଇ ନେଇଥିଲେ । ଏହା ହେଉଛି ସୁଭାଷ ଚନ୍ଦ୍ରଙ୍କ ରାଜନୈତିକ ଜୀବନର ଅନ୍ୟତମ ଶ୍ରେଷ୍ଠ କୀର୍ତ୍ତି ତଥା ହିନ୍ଦୁ-ମୁସଲମ ମିଳନର ଭିତ୍ତି ସ୍ଥାପନ ।

ଭାରତ ରକ୍ଷା ଆଇନ ବଳରେ ସୁଭାଷ ଚନ୍ଦ୍ରଙ୍କୁ ଗିରଫ୍ କରି, ଖଲାସ କରିବାର କୌଣସି ସୂଚନା ନ'ଦେଇ ପୁଣି ଅଗଷ୍ଟ ୩୦ ତାରିଖଠାରୁ ତାଙ୍କ ବିରୁଦ୍ଧରେ ଆଉ ଦୁଇଟି ରାଜଦ୍ରୋହ ମୂଳକ ଅଭିଯୋଗ ଆଗତ କରି ଇଂରେଜ ସରକାର ମକଦ୍ଦମା ଚଳାଇଲେ । ୯-ମହମ୍ମଦ ଆଲ୍ଲୀ ପାର୍କରେ ପ୍ରଦତ୍ତ ବକ୍ତୃତା ଓ ୨-ଅପ୍ରାହ୍ଣକ 'ଫରୱାର୍ଡ ବ୍ଲକ'ରେ ପ୍ରକାଶିତ "The day of reconing" ବା "ହିସାବ ନିକାଶ କରିବା ଦିବସ" ପ୍ରବନ୍ଧଯୋଗୁଁ ଆରମ୍ଭ ହୋଇଥିଲା । ଏହାଛଡ଼ା ଆଲିପୁର ଅତିରିକ୍ତ ଜିଲ୍ଲା ମାଜିଷ୍ଟ୍ରେଟଙ୍କ କୋର୍ଟରେ ଆଉ ଗୋଟିଏ ମକଦ୍ଦମା ଦାୟର ହୋଇଥିଲା । ଏହି ସମୟରେ ଜେଲରେ ଥାଇ ସୁଭାଷ ଚନ୍ଦ୍ର କେନ୍ଦ୍ର ଆସେମ୍ବ୍ଲି ପାଇଁ ସର୍ବସମ୍ମତି କ୍ରମେ ନିର୍ବାଚିତ ହେଲେ । ତଥାପି ସରକାର ତାଙ୍କୁ ଜେଲରୁ ଛାଡ଼ିବା କଥା ବିଚାର କଲେ ନାହିଁ । କ୍ରମଶଃ ତାଙ୍କର ସ୍ୱାସ୍ଥ୍ୟ ହାନି ଘଟିବାରେ ଲାଗିଲା । ଏଣୁ ୧୯୪୦ ନଭେମ୍ବର ୨୬ ତାରିଖରେ ନିଜର ସିଦ୍ଧାନ୍ତ ଓ ଦାବୀ ଜଣାଇ ବଙ୍ଗଳାର ଲାଟ, ପ୍ରଧାନମନ୍ତ୍ରୀ ଓ ମନ୍ତ୍ରୀ ମଣ୍ଡଳଙ୍କୁ ଏକ ସ୍ମରଣୀୟ ଚିଠି ଲେଖିଲେ । ଚିଠିର କେତେକଂଶ ନିମ୍ନରେ ପ୍ରଦତ୍ତ ହେଲା ଯଥା :

## ସରକାରଙ୍କୁ ଚିଠି

"ସରକାରଙ୍କ ଠାରୁ କୌଣସି ପ୍ରତିକାର ଆଶା ରଖି ମୁଁ ଏ ପତ୍ର ଲେଖୁନାହିଁ । ମୋର ପ୍ରଥମ ଅନୁରୋଧ ଯେ, ବଙ୍ଗଳା ସରକାର ଏହି ପତ୍ର ଖଣ୍ଡିକୁ ତାଙ୍କର ସରକାରୀ ଦପ୍ତର ଖାନାରେ ନଥିଭୁକ୍ତ କରି ରଖନ୍ତୁ । ଏହି ପତ୍ରରେ ଦେଶବାସୀଙ୍କ ପ୍ରତି ମୋର ଶେଷ କଥା ରହିଛି ଏବଂ ଏହାକୁ ମୋର ରାଜନୈତିକ ବାଇବେଲ୍ ବୋଲି ମୁଁ ମନେକରେ । ବଙ୍ଗ ସରକାର ମୋ ସହିତ ସ୍ପଷ୍ଟତଃ ବେଆଇନ୍ ଓ ଅସଙ୍ଗତ ବ୍ୟବହାର କରୁଛନ୍ତି । ଏହି ଅନ୍ୟାୟ ଆଚରଣର କାରଣ ମୁଁ କିଛି ବୁଝିପାରୁନାହିଁ । କୌଣସି ଅଜ୍ଞାତ କାରଣରୁ ସରକାର ମୋ ବିରୁଦ୍ଧରେ ପ୍ରତିଶୋଧମୂଳକ ନୀତି ଅବଲମ୍ବନ କରୁଛନ୍ତି ବୋଲି ମୁଁ ମନେ କରେ ।"

"× × × ଅନ୍ୟାୟ କରିବା ଅପେକ୍ଷା ଅନ୍ୟାୟ ସହ୍ୟକରିବା ଅଧିକ ପାପ । ସୁତରାଂ ଅନ୍ୟାୟର ପ୍ରତିବାଦ ନ'କରି ମୁଁ ରହିପାରିବି ନାହିଁ । ବର୍ତ୍ତମାନ ବନ୍ଦୀମାନଙ୍କ ହାତରେ ଶେଷ ଅସ୍ତ୍ର ହେଉଛି ଅନଶନରେ ପ୍ରାଣ ତ୍ୟାଗ । ମୁଁ ଜାଣେ ଯେ, ଏଥିରେ ମଧ୍ୟ କୌଣସି ଫଳ ହେବନାହିଁ । ଆୟର୍ଲାଣ୍ଡର ବିପ୍ଳବୀ ସାର ଟେରନ୍‌ସ୍‌ମାକ୍‌ସୁଇନ୍ ଓ ଲାହୋର୍ ଷଡ଼ଯନ୍ତ୍ର ମକଦ୍ଦମାର ଯତୀନ ଦାସ ବନ୍ଦୀ ଶାଳାରେ ଅନଶନ କରି ଯେଉଁଭଳି ଜୀବନ ଦେଲେ, ସେ ଦୃଶ୍ୟ ମୋ ମାନସ ଚକ୍ଷୁରେ ଭାସି ଉଠୁଛି ।

"ବର୍ତ୍ତମାନ ଅବସ୍ଥାରେ ମୋ ଜୀବନ ଦୁର୍ବହ ହୋଇ ଉଠିଛି । ଅବିଚାର ଓ ଅନ୍ୟାୟ ସହିତ ଅନବରତ ରଫାକରି ଜୀବନର ମୂଲ୍ୟ ଦେୟ କରିବା ମୋ ସ୍ୱଭାବ

ଚରୁଛ କାର୍ଯ୍ୟ । ଏହିଭଳି ଭାବେ ବଞ୍ଚିରହିବା ଅପେକ୍ଷା ମରଣ ବହୁଗୁଣରେ ଶ୍ରେୟସ୍କର·········ତେଣୁ ମୁଁ କହେ—'ହୁଏତ ମୋତେ ମୁକ୍ତି ଦିଅ, ନଚେତ୍ ମୁଁ ମରିବି··· ·····। ଯଦିବା ମୋର ମୃତ୍ୟୁର ସଦ୍ୟ କୌଣସି ବାସ୍ତବ ଫଳ ହେବନାହିଁ, ତେବେ ମୋର ବିଶ୍ୱାସ ଯେ ତ୍ୟାଗମାତ୍ରେ ସାମାନ୍ୟ ହେଲେ ମଧ୍ୟ ବୃଥା ହେବନାହିଁ । ସବୁ ଦେଶରେ ଶହୀଦଙ୍କ ରକ୍ତ ମାଂସ ଉପରେ ନୂତନ ପ୍ରତିଷ୍ଠାନର ଭିତ୍ତି ସ୍ଥାପିତ ହେବା ଏକ ଚିରନ୍ତନ ପ୍ରଥା ।"

"ଏ ମର ଜଗତରେ ସମସ୍ତେ ଧ୍ୱଂସପ୍ରାପ୍ତ ହୋଇଯିବେ । କେବଳ ଧ୍ୱଂସ ହେବ ନାହିଁ ଭାବ, ଆଦର୍ଶ ଓ ସ୍ୱପ୍ନ । କାରଣ ବ୍ୟକ୍ତିଏ ଆଦର୍ଶପାଇଁ ମରିପାରେ, କିନ୍ତୁ ତାହାର ମୃତ୍ୟୁପରେ ସେହି ଆଦର୍ଶ ଓ ଚିନ୍ତା ଅନ୍ୟ ଯୁଗକୁ ପ୍ରସାରିତ ହୋଇଥାଏ । ଏଣୁ କରି କୌଣସି ଆଦର୍ଶ, କଷ୍ଟ ଓ ତ୍ୟାଗର ଅଗ୍ନି ପରୀକ୍ଷା ଛଡ଼ା ସଫଳ ହୋଇ ନାହିଁ ।"

"ଗୋଟିଏ ଆଦର୍ଶ ନିମନ୍ତେ ଜୀବନ ଧାରଣ କରିବା ଓ ମୃତ୍ୟୁବରଣ କରିବା—ଏହି ନିଶ୍ଚିତ ଚିନ୍ତା ଅପେକ୍ଷା ମନୁଷ୍ୟର ଆଉ କ'ଣ ବିଶେଷ ସାନ୍ତ୍ୱନା ଥାଇପାରେ ? ତାହାର ଅସମ୍ପୂର୍ଣ୍ଣ କାର୍ଯ୍ୟ ସମ୍ପୂର୍ଣ୍ଣ କରିବା ନିମନ୍ତେ ଶତ ଶତ ଲୋକ ସେହି ଆଦର୍ଶରେ ଅନୁପ୍ରାଣିତ ହେବେ—ସେହି ବାଣୀ, ସେହି ଆଦର୍ଶ ଦେଶର ପ୍ରତ୍ୟେକ ସ୍ଥାନରେ-ପର୍ବତ, ଉପତ୍ୟକା, ସମଭୂମି ଏପରିକି ସମୁଦ୍ର ପାରି ବହୁ ଦୂରାଞ୍ଚଳକୁ ବ୍ୟାପିତ ହେବ—ଏହାଠାରୁ ଆଉ ଅଧିକ ପୁରସ୍କାର କ'ଣ ଥାଇପାରେ ? କୌଣସି ଏକ ଆଦର୍ଶର ବେଦୀ ମୂଳେ ଜୀବନ ବିସର୍ଜନ ଅପେକ୍ଷା ମାନବ ଜୀବନରେ ଆଉ କ'ଣ ଲକ୍ଷ୍ୟ ଥାଇପାରେ ? ତ୍ୟାଗ ଓ କଷ୍ଟଦ୍ୱାରା ଯଦି ପାର୍ଥିବ ଜଗତରେ କୌଣସି କ୍ଷତି ହୁଏ, ତେବେ ପ୍ରତିଦାନ ସ୍ୱରୂପ ସେ ଅମର ଜୀବନର ଅଧିକାରୀ ହୋଇଥାଏ, ଏହାହିଁ ଆତ୍ମାର ମନ୍ତ୍ର । ଜାତିକୁ ବଞ୍ଚାଇବାକୁ ହେଲେ ମୃତ୍ୟୁ ବରଣ କରିବାକୁ ହେବ । ଭାରତ ସ୍ୱାଧୀନ ହୋଇ ଗୌରବର ସହିତ ଯେପରି ବଞ୍ଚେ, ସେଥିପାଇଁ ଆଜ ମୋତେ ମରିବାକୁ ହେବ ।"

"ଦେଶବାସୀଙ୍କୁ ମୁଁ କହେ—ମନୁଷ୍ୟ ପକ୍ଷରେ ସବୁଠାରୁ ବଡ଼ ଅଭିଶାପ ଯେ ପରାଧୀନତା, ତାହା ଭୁଲନାହିଁ । ଭୁଲ ନାହିଁ ଯେ, ଅନ୍ୟାୟ ଓ ଅବିଚାର ସହିତ ଆପୋଷରଫା କରିବା ମହାପାପ । ଯଦି କୌଣସି ଜିନିଷକୁ ପାଇବାକୁ ଚାହଁ ତାହାହେଲେ ସ୍ୱାର୍ଥ ତ୍ୟାଗ କର—ଏହା ପୃଥିବୀର ସନାତନ ନିୟମ । ଏହାକୁ ଭୁଲ ନାହିଁ । ମନେରଖ ଯେ କୌଣସି ମୂଲ୍ୟଦେଇ ମଧ୍ୟ ଅନ୍ୟାୟ ଓ ଅବିଚାର ସହିତ ଯୁଦ୍ଧ କରିବା ହେଉଛି ମାନବର ପରମ ଧର୍ମ ।"

"ସରକାରଙ୍କୁ ମୁଁ କହେ—ଅବିଚାର ଓ ସାମ୍ପ୍ରଦାୟିକ ଭେଦଭାବ ସୃଷ୍ଟି କରିବାର ପଥତ୍ୟାଗ କରନ୍ତୁ । ଏବେ ମଧ୍ୟ ପରିସ୍ଥିତି ସୁଧାରିବାର ସମୟ ରହିଛି ।

"ମୋର ଶେଷ ଅନୁରୋଧ—ଆପଣମାନେ ମୋତେ ଶାନ୍ତିରେ ମରିବାକୁ ଦେବେ । ଯତୀନ୍ ଦାସ, ଟେରେନ୍ସ୍ ମାକ୍ସୁଇନି ଓ ମହାତ୍ମା ଗାନ୍ଧୀଙ୍କ ଅନଶନ ବେଳେ ସେପରି କୌଣସି ବାଧା ଦେଇ ନ'ଥିଲେ । ମୋ ବେଳକୁ ମଧ୍ୟ କୌଣସି ବାଧା ଦିଅନ୍ତୁ ନାହିଁ । ଯଦି ମୋତେ ଜବରଦସ୍ତି ଖୁଆଇବାର ଚେଷ୍ଟା ହୁଏ, ତାହେଲେ ମୁଁ ମୋର ସମସ୍ତ ଶକ୍ତିଦେଇ ତାର ପ୍ରତିରୋଧ କରିବି ।"

ବଙ୍ଗଳା ସରକାର ସୁଭାଷ ଚନ୍ଦ୍ରଙ୍କ ଚିଠି ପାଇ, ବୁଝିପାରିଲେ ଯେ, ଏହି ଚିଠି କେବଳ ଭୀତି ପ୍ରଦର୍ଶନ ପାଇଁ ଉଦ୍ଦିଷ୍ଟ ନୁହେଁ—ଲେଖା ହୋଇଛି, ସୁଦୃଢ଼ ଅଭିମତ ଜ୍ଞାପନ ନିମନ୍ତେ । ତଥାପି କର୍ତ୍ତୃପକ୍ଷ ଅନଶନ ପୂର୍ବରୁ ମୁକ୍ତି ଦେଲେନାହିଁ । ସତକୁ ସତ ସୁଭାଷ ଚନ୍ଦ୍ର ଅନଶନ ଆରମ୍ଭ କରିଦେଲେ, ତାଙ୍କର ମୁକ୍ତି ଦାବି ଦେଶବ୍ୟାପି ଆନ୍ଦୋଳନ ହେଲା । ଅଥଚ ଅନଶନର ୫ ଦିନ ଡିସେମ୍ବର ୫ ତାରିଖ ଦିନ ସରକାର ତାଙ୍କ ବିରୁଦ୍ଧରେ ଥିବା ଅଭିଯୋଗମାନ ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ ପର୍ଯ୍ୟନ୍ତ ସ୍ଥଗିତ ରଖି ତାଙ୍କୁ ମୁକ୍ତ କରିଦେଲେ ।

ମୁକ୍ତି ପରେ ସୁଭାଷ ଚନ୍ଦ୍ର ଏଲ୍ଗିନ୍ ରୋଡ଼ସ୍ଥ ତାଙ୍କର ବାସଭବନକୁ ଆସି ଅନ୍ତରୀଣ ନଜରବନ୍ଦୀଭାବେ ରହିଲେ । କୌଣସି ରାଜନୈତିକ କାର୍ଯ୍ୟରେ ସେ ଆଉ ହାତ ଦେଲେ ନାହିଁ । ଅନ୍ତର୍ଦ୍ଧାନ ହେବା ପର୍ଯ୍ୟନ୍ତ ଘରେ ଏକାକୀ ବସି ଦିନ କାଟୁଥିଲେ । ବାହାରେ କିମ୍ବା ନିଜ ପରିବାର, ଲୋକଙ୍କ ସହିତ ମଧ୍ୟ ସେ ସାକ୍ଷାତ କରୁନଥିଲେ । କେବଳ ମଝିରେ ମଝିରେ ଭ୍ରାତୃଷ୍ପୁତ୍ର ଦ୍ୱିଜେନ, ଅରବିନ୍ଦ ଓ ଶିଶିର ତାଙ୍କର ପରିଚର୍ଯ୍ୟା କରୁଥାନ୍ତି । ୧୯୪୧ ପହିଲରୁ ସେ ଫଳମୂଳ ଖାଇ ସନ୍ନ୍ୟାସୀଙ୍କ ପରି ଜୀବନ କଟାଇବାକୁ ଲାଗିଲେ । ଝିଆରି ଇଳା ଓ ପୁତୁରା ଶିଶିର ବୋଷ ଛଡ଼ା ସେ ରହିବା ଘରେ କାହାରି ପ୍ରବେଶ ଅଧିକାର ନଥିଲା । କିନ୍ତୁ ହଠାତ୍ ୧୯୪୧ ଜାନୁଆରୀ ୨୭ ତାରିଖ ଦିନ ସମ୍ବାଦ ପ୍ରକାଶ ହେଲା ଯେ, ସୁଭାଷ ଚନ୍ଦ୍ର କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ । ତାଙ୍କର ଏହି ଚମକପ୍ରଦ ଅନ୍ତର୍ଦ୍ଧାନରେ ଭାରତବାସୀ ବିସ୍ମିତ ହେବା ସଙ୍ଗେ ସଙ୍ଗେ ଇଂରେଜ ସରକାର ବିବ୍ରତ ହୋଇ ପଡ଼ିଲେ ।

## ଅନ୍ତରୀଣ ବନ୍ଦୀ ଓ ପଳାୟନ

୧୯୪୦ ଡିସେମ୍ବର ୫ ତାରିଖରେ ସୁଭାଷ ଚନ୍ଦ୍ର ବିନା ସର୍ତ୍ତରେ ଜେଲରୁ ମୁକ୍ତ ହୋଇ କଲିକତା ଏଲ୍ଗିନ ରୋଡ଼ସ୍ଥ ନିଜ ବାସଭବନରେ ଅନ୍ତରୀଣ ନଜର ବନ୍ଦୀ ଜୀବନ ଯାପନ କରିବାକୁ ଲାଗିଲେ । ସେତେବେଳେ ସେ ମନେ ମନେ ଠିକ୍ କଲେ ଯେ, ଭାରତ ସ୍ୱାଧୀନତା ପାଇଁ ଇଂରେଜମାନଙ୍କ ସହିତ ଯୁଦ୍ଧ କରିବା ବର୍ତ୍ତମାନ ହେଉଛି ଉପଯୁକ୍ତ ସମୟ । କାରଣ ଦ୍ୱିତୀୟ ବିଶ୍ୱଯୁଦ୍ଧ ଯୋଗୁଁ, ପୃଥିବୀର ରାଷ୍ଟ୍ର ସମୂହ ଦୁଇଭାଗରେ ବିଭକ୍ତ ହୋଇ ଅକ୍ଷଶକ୍ତି ଓ ମିତ୍ର ଶକ୍ତିରେ ପରିଣତ

ହୋଇଛନ୍ତି । ଏଣୁ କୌଣସିମତେ ଏଠାରୁ ଖସିଯାଇ ଇଂରେଜ-ବିରୋଧୀ ଶକ୍ତିଙ୍କ ସହଯୋଗରେ ଭାରତ ବର୍ଷରୁ ବ୍ରିଟିଶ ସରକାରକୁ ତଡ଼ିବା ସହଜ ହେବ । କିନ୍ତୁ କଥା ହେଲା ସେ ନଜରବନ୍ଦୀରୁ ଖସି କିପରି ଭାରତ ବର୍ଷରୁ ବିଦେଶକୁ ଚାଲିଯିବେ ? ଏହାର ଉପାୟ ଚିନ୍ତାକରି ସେ ଦେଖିଲେ ଯେ, ନିଜ ଘରର ଲୋକଙ୍କ ସାହାଯ୍ୟ ଓ ସହଯୋଗ ବିନା ଏ କାର୍ଯ୍ୟ ଏକବାରେ ଅସମ୍ଭବ । ତେଣୁ ପ୍ରଥମେ ସୁଭାଷ ଚନ୍ଦ୍ର ନିଜର ବଡ଼ଭାଇ ଶରତ ଚନ୍ଦ୍ର ବୋଷଙ୍କ ସହିତ ପରାମର୍ଶ କରି ପରେ ଭାଉଜ ବିଭାବତୀ ଏବଂ ପୁତୁରା ଶିଶିର କୁମାର, ଅରବିନ୍ଦ ତଥା କନ୍ୟା ଇଲା ଆଦି ଅଲଗା ଅଲଗା ଭାବେ ନିଜର ଇଚ୍ଛା ଓ ଯୋଜନା ସମ୍ବନ୍ଧେ ଗୋପନରେ ଆଳାପ ଆଲୋଚନା କରି, ସେମାନଙ୍କ ମତାମତ ଓ ମନୋଭାବ ବୁଝି ନେଇଥିଲେ ଯେ, ସମସ୍ତେ ତାଙ୍କ କଥାରେ ଏକମତ । ଏହାମଧ୍ୟ ନିର୍ଭଟ ସତ୍ୟ ଯେ, ଶରତ୍ ବୋଷଙ୍କ ପରିବାରର ସମସ୍ତ ସଦସ୍ୟ ସୁଭାଷ ଚନ୍ଦ୍ରଙ୍କୁ ପ୍ରାଣଠୁଁ ଅଧିକ ଭଲ ପାଉଥିଲେ । ପରିବାରର ମତାମତ ଓ ମନୋଭାବ ସ୍ପଷ୍ଟ ବୁଝି ନେବାପରେ ସୁଭାଷଚନ୍ଦ୍ର ନିଜର ଯୋଜନାକୁ ରୂପ ଦେବାପାଇଁ ପ୍ରସ୍ତୁତ ହେଲେ । ମୋଟାମୋଟି ଭାବେ କହିବାକୁ ଗଲେ ଶରତ୍ ଚନ୍ଦ୍ର ବୋଷଙ୍କ ପରିବାର ସହଯୋଗରେ ହିଁ ତାଙ୍କର ଗୃହତ୍ୟାଗ ଯୋଜନା ସଫଳୀଭୂତ ହୋଇଥିଲା ।

ସୁଭାଷ ଚନ୍ଦ୍ରଙ୍କର ଦ୍ୱିତୀୟ ସୁଚିନ୍ତିତ ଯୋଜନା ହେଲା, ସେ କାହାରି ସଙ୍ଗେ ବିଶେଷ ଭାବେ ମିଳାମିଶା କରିବେ ନାହିଁ । ଏପରିକି ପରିବାର ଲୋକଙ୍କ ସଙ୍ଗେ ମଧ୍ୟ କ୍ୱଚିତ୍ ମିଶିବେ । କୌଣସି ରାଜନୈତିକ ଆଳାପ ଆଲୋଚନା ବି କରିବେ ନାହିଁ । ଗୃହତ୍ୟାଗ ପର୍ଯ୍ୟନ୍ତ ଖୌରିବାର ହେବେ ନାହିଁ । ଏ ସବୁ ଯୋଜନା ଚିନ୍ତା କରିବା ସଙ୍ଗେ ସେ ନିଜକୁ ନିଜେ ପ୍ରଶ୍ନ କରନ୍ତି ଯେ, ଇଂରେଜ ସରକାରଙ୍କ ତୀକ୍ଷ୍ଣ ଦୃଷ୍ଟି ଏଡ଼ାଇ ଭାରତବର୍ଷରୁ ରୁଷ କିମ୍ବା ଅନ୍ୟ ଦେଶକୁ ଚାଲିଯାଇ ପାରିବେ ? ଏବିଷୟରେ ପରାମର୍ଶ କରି କାର୍ଯ୍ୟକୁ ତ୍ୱରାନ୍ୱିତ କରିବାପାଇଁ ସେ ଯଥାଶୀଘ୍ର ନର୍ଥ-ଫ୍ରଣ୍ଟିୟର୍‌ରେ ବାସ କରୁଥିବା, ‘ଭାରତ ନଉଜୱାନ ସଭା’ର ସଦସ୍ୟ, ବିପ୍ଳବୀ ମିଆଁ ଅକବର ଶାହ ଓ ଭଗତ୍‌ରାମଙ୍କ ନିକଟକୁ ଖବର ଦେଲେ । ସେ ଦୁହେଁ ଯଥା ସମୟରେ କଲିକତା ଆସି ତାଙ୍କ ସହିତ ମିଶିଲେ ଏବଂ ତିନିଜଣଯାକ ବସି, ଭାରତ ତ୍ୟାଗର ଯୋଜନା ଓ ରୂପ ରେଖ ପ୍ରସ୍ତୁତ କରିନେଲେ ଯେ— ପ୍ରଥମେ ସୁଭାଷ ଚନ୍ଦ୍ର ଘରୁ ବାହାରିଲା ବେଳେ ପଶ୍ଚିମା ମୁସଲମାନ ଭଦ୍ର ପରିଚ୍ଛଦ ପିନ୍ଧି ପେଶାୱାର ପର୍ଯ୍ୟନ୍ତ ଯିବେ । ସେଠାରେ ପୋଷାକ ପରିବର୍ତ୍ତନ କରି, କାବୁଲି ପଠାଣ ପରିଚ୍ଛଦ ପିନ୍ଧି ଆଫଗାନିସ୍ଥାନ ପର୍ଯ୍ୟନ୍ତ ଯିବେ । ପେଶାୱାର ଠାରୁ କାବୁଲ ପର୍ଯ୍ୟନ୍ତ ଯେଉଁ ଦୁର୍ଗମ ପାହାଡ଼ିଆ ଜଙ୍ଗଲ ରାସ୍ତା ପଡ଼ିବ ସେ ସମୟରେ ମିଆଁ ଆକବର ଶାହ, ଭଗତ୍‌ରାମ ଓ ତାଙ୍କ ଦଳର ବିପ୍ଳବୀ ସହକର୍ମୀମାନେ ସୁଭାଷ ଚନ୍ଦ୍ରଙ୍କ ସାଥିରେ ରହି ବାଟ କଢ଼ାଇ ନେବେ । କିନ୍ତୁ ଅଧା ରାସ୍ତାରୁ ଅନ୍ୟମାନେ

ସବୁ ଫେରି ଆସିବେ । କେବଳ ଶେଷ ପର୍ଯ୍ୟନ୍ତ ଭଗତ୍‌ରାମ ସାଥୀରେ ରହିବେ । କଲିକତା ଠାରୁ ପେଶାବାର ପର୍ଯ୍ୟନ୍ତ ତାଙ୍କ ନଛଦ୍ମନାମର ପରିଚୟ ହେବ ଯଥା— ମହମ୍ମଦ ଜିଆଉଦ୍ଦିନ୍, ଟ୍ରାଭେଲିଙ୍ଗ ଇନ୍‌ସ୍‌ପେକ୍ଟର୍, ଦି ଏମ୍ପାୟାର୍ ଅଫ୍ ଇଣ୍ଡିଆ ଲାଇଫ୍ ଏନ୍‌ସୁରେନସ୍ କମ୍ପାନି ଲି:ର ଏଜେଣ୍ଟ୍ ଏବଂ ଭଗତ୍‌ରାମଙ୍କ ଛଦ୍ମନାମର ପରିଚୟ ହେବ— ରହମତୁଲ୍ଲା ଖାଁ । ବାଟରେ ବୁଲିବା ବେଳେ ଜିଆଉଦ୍ଦିନ ନିଜକୁ ଗୁଙ୍ଗା ଓ କାଲା (ବଧିର) ଅଭିନୟ କରିବାକୁ ହେବ, ଯେହେତୁ ସେ ପୋସ୍ତୁଭାଷା ଜାଣନ୍ତି ନାହିଁ । ଏହା ମଧ୍ୟ ଠିକ୍ ହୋଇଥିଲା ଯେ, ଆକ୍‌ବର ଶାହ ଓ ଭଗତ ରାମ ଫେରିଯାଇ, ଭାରତ ଓ ସମସ୍ତ ନିର୍ଦ୍ଦିଷ୍ଟ କରି, ପେଶାବାର ଠାରୁ କଲିକତାକୁ ସଙ୍କେତ ପଠାଇଲେ ସେ ଗୃହତ୍ୟାଗ କରିବେ ।

ସୁଭାଷ ଚନ୍ଦ୍ରଙ୍କ ପକ୍ଷେ ସବୁଠାରୁ ବଡ଼ କଥା ହେଲା, ଏଲ୍‌ଗିନ ରୋଡ଼ ବାସ ଭବନରୁ ସେ କିପରି ଏବଂ ଓ କେଉଁ ସମୟରେ ନିଷ୍କ୍ରମଣ ହେବେ । କାରଣ ବରିଷ୍ଠ ବୋଷ ପରିବାରର ଆତ୍ମୀୟ ସ୍ୱଜନ, ବନ୍ଧୁବାନ୍ଧବ ତଥା ସାଦା ପୋଷାକଧାରୀ ଅଗଣିତ ପୋଲିସ ସି. ଆଇ. ଡ଼ି. ଜଗୁଆଳୀଙ୍କ ଆଖିରେ ଧୂଳି ଦେଇ ପଳାଇଯିବା ସହଜ ସାଧ୍ୟ ନୁହେଁ । ତଥାପି ସେ ଆଶାବାଦୀ ! ଭ୍ରାତୃପୁତ୍ର ଶିଶିର କୁମାର ଉପରେ ତାଙ୍କର ପ୍ରଗାଢ଼ ବିଶ୍ୱାସ, ଯେହେତୁ ସେ ଗାଡ଼ି ଭଲ ଡ୍ରାଇଭିଂ କରି ପାରନ୍ତି । ଦିନେ ଶିଶିର କୁମାରକୁ ଡ଼ାକି ଅତି ନିକଟରେ ବସାଇ, ସୁଭାଷ ଚନ୍ଦ୍ର ତାଙ୍କ ସହିତ ଅନେକ ଆଲୋଚନା କରି କେତେକ ବିଷୟ ପଚାରି ବୁଝିନେଲେ ଯଥା .- ଆଚ୍ଛା ବାବୁ ! ଶିଶିର, ତୁମେ ଗାଡ଼ି ଚଲାଇ ଜାଣ ? ଭଲ ଭାବେ ଡ୍ରାଇଭିଂ କରି ପାରୁଛ ? ଏବଂ କେବେ କୌଣସି ଦୂରଜାଗାକୁ ନିଜେ ଡ୍ରାଇଭିଂକରି ଯିବା ଆସିବା କରିଛକି ? ପ୍ରଶ୍ନର ଉତ୍ତରରେ ଶିଶିର ସମ୍ମତି ସୂଚକ ନିଜର ମୁଣ୍ଡ ହଲାଇ ହଁ, କହନ୍ତି । ତା ପରେ ସେ ଶିଶିରକୁ ଲକ୍ଷ କରି କହିଲେ “ଆଚ୍ଛା ବାବୁ ! ଦିନେ ମୋତେ ତୁମେ ଗାଡ଼ିରେ ନେଇ କୌଣସି ଅଜ୍ଞାତ ସ୍ଥାନରେ ଛାଡ଼ିଦେଇ ଆସିବାକୁ ହେବ, ଏ କଥା ତୁମ ଛଡ଼ା ଅନ୍ୟ କେହି ଯେପରି ନଜାଣନ୍ତି, ପାରିବତ ?” ଏଥର ମଧ୍ୟ ଶିଶିର ମୁଣ୍ଡ ହଲାଇ ନୀରବ ସମ୍ମତି ଜଣାଇଲେ । ଖାଲି ସେତିକି ନୁହେଁ, ଦିନେ ସୁଭାଷ ବାବୁ ଶିଶିର କୁମାରକୁ ନିର୍ଦ୍ଦେଶ ଦେଲେ ଯେ,— ଆସନ୍ତା କାଲି ଭୋରରାତିରେ ତୁମେ ଏଠାରୁ ଡ୍ରାଇଭିଂ କରି ବର୍ଦ୍ଧମାନ ଯିବ, ସେଠାରେ ଦ୍ୱିପ୍ରହରରେ ଭୋଜନ ସାରି ସଙ୍ଗେ ସଙ୍ଗେ ଏଠାକୁ ଫେରିବ, କେମିତି ?” ପରଦିନ ଶିଶିର ବୋଷ ଆଜ୍ଞା ପାଳନ କରି ବର୍ଦ୍ଧମାନ ଯାଇ ସଙ୍ଗେସଙ୍ଗେ ଫେରିଥିଲେ । ଏ ସବୁ ପରୀକ୍ଷା ନିରୀକ୍ଷାର ଅସଲ ଉଦ୍ଦେଶ୍ୟ ହେଲା, ଶିଶିର ପ୍ରତି ସୁଭାଷ ଚନ୍ଦ୍ରଙ୍କର ଆତ୍ମବିଶ୍ୱାସ ଓ ତାଙ୍କ କାର୍ଯ୍ୟ ଦକ୍ଷତାର ପରିଚୟ ପାଇ, ନିଜକୁ ନିଶ୍ଚିନ୍ତ ହେବା । ଏହାପରେ ତାଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ଓ ଦୃଢ଼ବୋଧ ହୋଇଥିଲା ଯେ, ସମସ୍ତ ବାଧା ବିଘ୍ନ ଅତିକ୍ରମ କରି,

ଏପରିକି ନିଜର ପ୍ରାଣ ବିପନ୍ନମଧ୍ୟରେ ମଧ୍ୟ ଶିଶିର ତାଙ୍କୁ ଏଲ୍‌ଗିନ୍ ରୋଡ଼ ବାସଭବନରୁ ଯେ କୌଣସି ମୁହୂର୍ତ୍ତରେ ତାହାର ନିଜ ଗନ୍ତବ୍ୟ ସ୍ଥଳକୁ ନେଇ ଆସି ପାରିବେ ।

ଏହି ସବୁ ପରୀକ୍ଷା ନିରୀକ୍ଷା ଚାଲିଥିବା ଭିତରେ ସୁଭାଷ ବାବୁଙ୍କର ଦାଢ଼ୀ ଓ ନଖ କେଶ ବହୁତ ବଢ଼ି ଯାଇଥିଲା । ଆଗରୁ ପରିକଳ୍ପନାନୁସାରେ ସେ ଯେଉଁ ପୋଷାକ ପିନ୍ଧି ଘରୁ ବାହାରିବା କଥା, ତାହା ମଧ୍ୟ ପରୀକ୍ଷା କରିବାକୁ ସେଥିପାଇଁ ବୋଲି ପଶ୍ଚିମା ମୁସଲ୍‌ମାନ ଭଦ୍ର ପରିଚ୍ଛଦ, ଢିଲା ପାଇଜାମା, ଫେଜୋ ଟୋପି ପିନ୍ଧି ଘରର ବଡ଼ ଆଇନା ସାମନାରେ ଠିଆ ହୋଇ ଛଦ୍ମବେଶ କପରି ତାଙ୍କୁ ମାନୁଛି ନିଜକୁ ନିଜେ ସେ ଦେଖି ନେଉଥିଲେ ଏବଂ ପରେ ମୁହୂର୍ତ୍ତରେ ପୁତୁରା ଶିଶିର କୁମାର ବୋଷଙ୍କୁ କହୁଥିଲେ ଯେ, —"ଛଦ୍ମବେଶ ଖୁବ ତାଙ୍କୁ (ସୁଭାଷ ଚନ୍ଦ୍ରଙ୍କୁ) ଭଲ ମାନୁଛି, ଭିଡ଼ ମଧ୍ୟରେ କେହି ତାଙ୍କୁ ଦେଖିଲେ ମଧ୍ୟ ଚିହ୍ନି ପାରିବେ ନାହିଁ ।" କିନ୍ତୁ ଶିଶିର କୁମାର ହସି ହସି ସାହାସର ସହିତ ଉତ୍ତର ଦେଉଥିଲେ, ଯେ— "ସୁଭାଷ ଚନ୍ଦ୍ର ବୋଷଙ୍କର ଚେହେରା ଓ ବ୍ୟକ୍ତିତ୍ୱ ଯେତେ ଛଦ୍ମବେଶରେ ରହିଲେ ମଧ୍ୟ ତାହା ଲୁଚି ରହିବା ସମ୍ଭବ ନୁହେଁ ।" ଏହାଶୁଣି ସେ କିଞ୍ଚିତ ସମୟ ପାଇଁ ହତାଶ ହୋଇ ପଡୁଥିଲେ ।

ଏହାପରେ ସମସ୍ତଙ୍କ ଆଖିରେ ଧୂଳି ଦେଇ ଗୋପନ ଭାବରେ ଏଲ୍‌ଗିନ ରୋଡ଼ ବାସଭବନରୁ ପଳାଇଯିବା ପରିକଳ୍ପନା ବା ଗୁପ୍ତ ଯୋଜନା ତିଆରି ହେଲାଯଥା— ସୁଭାଷ ଚନ୍ଦ୍ର ଆଗରୁ ଘୋଷଣା କରିବେ ଯେ କଚ୍ଛ୍ରସାଧନ ପାଇଁ ସେ ଲୋକ ଚକ୍ଷୁର ଅନ୍ତରାଳକୁ ଚାଲିଯିବେ । ଏହି ସ୍ୱେଚ୍ଛାକୃତ ଅବସର ବ୍ରତପାଳନ ସମୟରେ ସେ କାହାର ସଙ୍ଗେ ଦେଖା କରିବେ ନାହିଁ କିମ୍ବା କଥାଭାଷା ହେବେ ନାହିଁ । ସେ ରହିବା ଘରର ମଧ୍ୟସ୍ଥଳରେ ଦୁଇଟି ପର୍ଦ୍ଦା ଦୁଇଭାଗକୁ ବିଭକ୍ତ କଲଭଳି ଝୁଲାଇ ଦେବାକୁ ହେବ । ଯାହାର ଫଳରେ ଘରର ଭିତର ଦିଗଟା ସମ୍ପୂର୍ଣ୍ଣ ଭାବେ ଅଲଗା ହୋଇଯିବ ଏବଂ ସୁଭାଷ ବାବୁ ସେହି ଭିତର ଦିଗରେ ରହି ନିଜର ବ୍ରତ ଉଦ୍‌ଯାପନ କରିବେ । ଯେଉଁ ଠାକୁର ତାଙ୍କ ମା'ଙ୍କ ପାଇଁ ରୋଷେଇ କରନ୍ତି, ସେହି ଠାକୁର ତାଙ୍କ ପାଇଁ ମଧ୍ୟ ଯଥା ସମୟରେ ନିର୍ଦ୍ଧାରିତ ଦେଇ ଖାଦ୍ୟ ଥାଳୀ ଠେଲି ଦେଇ ଯାଉଥିବେ । ଆହାର୍ଯ୍ୟ ହେବ ନିରାମିଷ ଯଥା:- ଦୁଧ,ଛେନା, ତରକାରି, ମିଠା ଓ ଫଳ ପ୍ରଭୃତି । ସେ ଘର ଛାଡ଼ି ଚାଲିଯିବା ପରେ କଚ୍ଛ୍ରସାଧନ ପାଇଁ ଇଲା (ଝିଆରି)କୁ ଏହି ଖାଦ୍ୟ ଖାଇବା ଦାୟିତ୍ୱ ତୁଲାଇ ନେବାକୁ ହେବ । ଅର୍ଥାତ୍ ତାଙ୍କପାଇଁ ଯେଉଁସବୁ ଖାଦ୍ୟ ପ୍ରସ୍ତୁତ ହଉଆସୁଥିବ, ସେହି ସବୁ ଖାଦ୍ୟ ୧୦ଦିନ ପର୍ଯ୍ୟନ୍ତ ଇଲା ଖାଇବ ଏବଂ ଅନ୍ୟାନ୍ୟ ପ୍ରୟୋଜନୀୟ କାର୍ଯ୍ୟ ମଧ୍ୟ ସେ ତୁଲାଇଯିବ । ଏହା ଅତି ଚତୁରତାର ସହ ଗୋପନରେ ଇଲାକୁ ସମ୍ପାଦନା କରିବାକୁ ହେବ,

ଯେପରି ଅନ୍ୟ କେହି ଏ ସମ୍ବନ୍ଧେ ନ ଜାଣନ୍ତି । ଭଲ ଅଳ୍ପ ବୟସୀ ପିଲାଳିଆ ଥିବା ଯୋଗୁଁ, ଏବିଷୟରେ ତାଙ୍କୁ ସାହାଯ୍ୟ କରିବାପାଇଁ ଭଲର ଦାଦାପୁଅ ବଡ଼ଭାଇ ବୀରେନ୍ଦ୍ରନାଥ ବୋଷଙ୍କ ଉପରେ ମଧ୍ୟ କିଛି ଭାର ଦିଆ ଯାଇଥିଲା । ଦ୍ୱିତୀୟତଃ ଏଲ୍‌ଗିନ ରୋଡ଼ ବାସଭବନରେ କେତେକ ସୁବିଧା ଥିଲା ଯଥା— ମା ପ୍ରଭାବତୀ ଓ ଝିଅଣ ଭଲ ଛଡ଼ା, ବୋଷ ପରିବାରର ସମସ୍ତେ ତିନି ତାଲା ଉପରେ ଶୋଉଥିଲେ । କେବଳ ସୁଭାଷବାବୁଙ୍କ ଘରଟି ଦୋତାଲାରେ ଅବସ୍ଥିତ । ଆଉରି ଗୋଟିଏ ସୁବିଧା ଥିଲାଯେ, ମାତା ପ୍ରଭାବତୀ ସେତେବେଳେ ଘରର ବାହାରେ ହେଲେ ଦୈନନ୍ଦିନ ଜୀବନ ଯାତ୍ରା ସମ୍ବନ୍ଧ ଖୁଣ୍ଟି ନାଟି କିଛି ବୁଝୁନଥିଲେ । ଏଣୁ ସୁଭାଷ ବାବୁଙ୍କ ଏହି ବ୍ରତ ଉଦ୍‌ଯାପନ ପ୍ରସ୍ତାବରେ କେହି ଆଶ୍ଚର୍ଯ୍ୟ ହେବାର କଥା ନୁହେଁ-ସବେଧିତାର କୌଣସି ପ୍ରଶ୍ନ ଉଠେନା ।

ସୁଭାଷ ବାବୁ ଯିବା ସମୟରେ ନିଜର ବ୍ୟବହାରିକ ଜିନିଷସବୁ କ'ଣ କ'ଣ ସଙ୍ଗରେ ନେଇଯିବେ, ତାହା ଶିଶିର କୁମାରକୁ ଆଗରୁ ସୂଚନା ଦେଇଥିଲେ । ବିଶେଷ କରି କେତେ ଯୋଡ଼ା ପୋଷାକ, ଗଳାବନ୍ଧ, ଟୋପି, ଜୋତା, ଆଟାଚି, ଶେଯ ହୋଲଡ଼ାଲ ଯାହାକି ପୂର୍ବରୁ ତହଣି ସମୟରେ ବ୍ୟବହାର କରୁଥିଲେ । ସେସବୁ ବିଦେଶୀ ତିଆରି ଜିନିଷ ଏବଂ କିଛି ଔଷଧ ପତ୍ର, ଭଜା ମସଲ ତଥା ଦୁଇଖଣ୍ଡ ପବିତ୍ର କୋରାନ୍ ଗ୍ରନ୍ଥ । ଆଟାଚି ସୁଟକେଶ ପୃଷ୍ଠରେ ନାମ ଲେଖାଥିବ ଯଥା:-ମହମ୍ମଦ୍, ଟ୍ରାଭେଲିଙ୍ଗ୍ ଇନସ୍‌ପେକ୍ଟର, ଇଣ୍ଡିଆ, ଇଣ୍ଡିଆ ଲାଇଫ୍ ଇନସ୍ୟୁରେନ୍ସ କମ୍ପାନୀ ଲି: ।

ଘରୁ ବାହାରିବା ସମୟରେ କେଉଁ ମୋଟର ଗାଡ଼ି ବ୍ୟବହାର କରାଯିବ, ସେ ସମ୍ବନ୍ଧେ କକାପୁତୁରା ମଧ୍ୟେ ବେଶ୍ ଆଲୋଚନା ହୋଇଥିଲା । କାରଣ ସେତେବେଳେ ଶରତ୍ ଚନ୍ଦ୍ର ବୋଷଙ୍କ ଉଡ଼୍‌ବାନ ପାର୍କ ବାସଭବନରେ ନିଜସ୍ୱ ଦୁଇଟି ଗାଡ଼ି ରହିଥିଲା । ଗୋଟିଏ ବଡ଼ ଧରଣର 'ଷ୍ଟୁଡ଼ିବେକାର ପ୍ରେସିଡେଣ୍ଟ,' ଅନ୍ୟଟି ନୂଆ ଧରଣର ଜର୍ମାନୀ ତିଆରି ଗାଡ଼ି 'ୱାଣ୍ଡରର' । ପ୍ରଥମଟି ଶରତ୍ ବୋଷଙ୍କ ସ୍ତ୍ରୀ ବିଭାବତୀ ବସୁଙ୍କ ନାମରେ ଏବଂ ଦ୍ୱିତୀୟଟି ପୁତ୍ର ଶିଶିର କୁମାରଙ୍କ ନାମରେ ରେଜିଷ୍ଟ୍ରି ହୋଇଥିଲା । ପ୍ରତି ଗାଡ଼ିରେ ସ୍ୱତନ୍ତ୍ର ଭାବେ ଡ୍ରାଇଭର ଥିଲେ ମଧ୍ୟ, ଉଭୟ ଗାଡ଼ି ଚଳାଇବାରେ ଶିଶିର କୁମାର ବେଶ ପାରଙ୍ଗମ ଥିଲେ । ଶେଷକୁ ଠିକ୍ ହେଲାଯେ, ଗୃହ ତ୍ୟାଗ ପର୍ବ ୱାଣ୍ଡରର ଗାଡ଼ିରେ ସମ୍ପୂର୍ଣ୍ଣ ହେବ । ଏହାପରେ ଶିଶିର କୁମାର ବଜାରରୁ ଗୋଟିଏ ବଳକା ଟାୟାର୍, ନୂଆ ବ୍ୟାଟେରୀ, କିଣି ଗାଡ଼ିର ଇଞ୍ଜିନ ଚେକ-ଅପ କରିବା ସଙ୍ଗେ ସଙ୍ଗେ ନିଜର ଆତ୍ମବିଶ୍ୱାସ ବଢ଼ାଇବା ପାଇଁ ଦିନେ ଗାଡ଼ି ଡ୍ରାଇଭିଂ କରି ଗୋଟିଏ ନିର୍ଜନ ସ୍ଥାନରେ ପଙ୍କ୍‌ଚର ଟାୟାର ବଦଳାଇବା ଅଭ୍ୟାସ କରିଥିଲେ । କାରଣ, ଯିବା ସମୟରେ ବାଟରେ

ଯଦି ଗାଡ଼ି ଉଠାରୁ କିଛି ଖରାପ ହୁଏ, ତାକୁ ସୁଧାରିବା ପାଇଁ ସେ ପ୍ରସ୍ତୁତ ହୋଇଥିଲେ ।

ଏ ମନ ମଧ୍ୟରେ ସୁଭାଷ ଚନ୍ଦ୍ର ନିଜର ଘର ଭିତରେ ରହି, ବୋଷ ପରିବାରର ଅନ୍ୟ କେତେଜଣଙ୍କ ସହ ମିଶି ଏକାପ୍ରକାର ଯୋଜନାର ଖଣ୍ଟିନାଟି ସବୁ ବିଷୟରେ ଠିକ୍ ଠାକ କରି, ଚୂଡ଼ାନ୍ତ ନିଷ୍ପତ୍ତିରେ ପହଞ୍ଚି ସାରିଛନ୍ତି । ଯେତେ ଶୀଘ୍ର ସେ ଘର ଛାଡ଼ି ପଳାଇବାକୁ ପ୍ରସ୍ତୁତ । କିନ୍ତୁ ସୀମାନ୍ତ ପ୍ରଦେଶରୁ ଏ ଯାଏଁ କୌଣସି ସବୁଜ ସଙ୍କେତ ନ'ଆସିବା ଯୋଗୁଁ, ସେ ବଡ଼ ଉଦ୍‌ବିଗ୍ନ ଥିଲେ । ଯାହାହେଉ ଏତିକି ବେଳେ ହଠାତ୍ ସୀମାନ୍ତ ପ୍ରଦେଶରୁ ସବୁଜ ସଙ୍କେତ ଆସି ପହଞ୍ଚିଗଲା ଯେ— ଯିବା ପଥର ବନ୍ଦୋବସ୍ତ କାର୍ଯ୍ୟ ସରିଛି, ଏଣିକି ସୁଭାଷ ବାବୁ ଯେକୌଣସି ମୁହୂର୍ତ୍ତରେ ପେଶାବାର ଠାରେ ଆସି ପହଞ୍ଚିଲେ ହେଲା । ସଙ୍କେତ ପାଇ, ସେ ମନେ ମନେ ଭଗବାନଙ୍କ ନିକଟରେ ଅଶେଷ ଧନ୍ୟବାଦ ଜଣାଇଲେ ।

ସର୍ବ ଜନର ଆଶା ଆକାଂକ୍ଷା ଓ ପରିକଳ୍ପନାର, ବିଶେଷ କରି ସେହି ଐତିହାସିକ ଦିନଟି ଧୀରେ ଧୀରେ ଅତି ନିକଟରୁ ନିକଟତମ ହୋଇ ଆଗେଇ ଆସିଲା । ତାହାର ଦୁଇଦିନ ପୂର୍ବରୁ ସୁଭାଷ ବାବୁ ଭ୍ରାତୃଷ୍ପୁତ୍ର ଶିଶିର କୁମାରକୁ ନୋଟିସ୍ ଦେଇଦେଲେ ଯେ, ୧୬ ଜାନୁୟାରୀ, ଗୁରୁବାର, ୧୯୪୧ ସନ୍ଧ୍ୟା ସମୟରେ ଯାତ୍ରା ଆରମ୍ଭ ହେବ । ଶିଶିର କୁମାର ସେତେବେଳେ ୩ୟ ବାର୍ଷିକ ମେଡ଼ିକାଲ ଛାତ୍ର । ସେ ନୋଟିସ୍ ପାଇ ପୁଣି ଓୟାନ୍‌ଡ଼ାରର ଗାଡ଼ି ତଦାରଖରେ ଲାଗିପଡ଼ିଲେ । ଭାରତୀୟ ସ୍ୱାଧୀନତା ସଂଗ୍ରାମର ମହାନ ସେନାନୀ ଓ ବୀର ବରେଣ୍ୟ ମହାରଥୀ ସୁଭାଷ ଚନ୍ଦ୍ର ବୋଷ ବିଦାୟ ସମ୍ଭାଷଣ ପାଇଁ ଇତିହାସରେ ସ୍ମରଣୀୟ ସେହି ୧୯୪୧ ମସିହା ଜାନୁୟାରୀ ମାସର ୧୬ ତାରିଖ ଦିନଟି ଏକତା, ବିଶ୍ୱାସ ଓ ତ୍ୟାଗର ପ୍ରତୀକ ରୂପେ ବଡ଼ ନମ୍ରତାର ସହିତ ଉପସ୍ଥିତ ହେଲା । ଆଜି ସୁଭାଷ ବାବୁ ଶିଶିରକୁ ଡାକି କହିଲେ —" ମୁଁ ଅଜଣାରେ ଝାମ୍ପ ଦେବାକୁ ଯାଉଛି । ଭବିଷ୍ୟତ୍ ଅନିଶ୍ଚିତ । ଅନେକ ଦିନ, ହୁଏତ ୨୦ବର୍ଷ ପର୍ଯ୍ୟନ୍ତ ମୁଁ ଦେଶକୁ ଫେରି ନପାରେ, ତମମାନଙ୍କ ସଙ୍ଗେ ଦେଖା ହେବନାହିଁ ।" ନିଜ ଭାଗ୍ୟରେ କଣ ଘଟିବ ସେ ସମ୍ବନ୍ଧେ ଅନ୍ତର୍ଦ୍ଧାନ ସମୟ ଯେତେ ପାଖେଇ ଆସିଲା ତାଙ୍କର ମତାମତ ଟିକଏ ବଦଳିବାକୁ ଲାଗିଲା । ପ୍ରଥମରୁ ସେ ଭାବିଥିଲେ ଯେ, ଘଟଣାଟିର ଗୋପନୀୟତା ସମ୍ପୂର୍ଣ୍ଣ ରକ୍ଷା କରିବା ସମ୍ଭବ ହେବ । ଯାହାର ଫଳେ ସେ ବିପଦରେ ପଡ଼ିବେ ନାହିଁ । କିନ୍ତୁ ଯିବା ଆଗରୁ ସେ ଦୁଇଟି ଗୁରୁତ୍ୱପୂର୍ଣ୍ଣ କଥା କହିଥିଲେ । ୧— ଯଦି କୌଣସିମତେ ତମେମାନେ କଥାଟା ଗୁପ୍ତ-ଗୋପନ ରଖି ପାରିବ, ତାହେଲେ ମୁଁ ବିପଦ ପାର ହୋଇଯିବି । ଦ୍ୱିତୀୟତଃ, ଏହି ଅନ୍ତର୍ଦ୍ଧାନରେ ମୋର ଭୂମିକା ବେଶିଦିନ ଗୋପନ ରହିବନାହିଁ, କାରଣ ପ୍ରକାଶ ହୋଇଯିବା ସମ୍ଭାବନା ବେଶି ।" ଏଣୁ

ଶିଶିର ବୋଷକୁ ପୋଲିସ୍‌ର ନିର୍ଯ୍ୟାତନା ଓ ଦୀର୍ଘ କାରାବାସ ପାଇଁ ସେ ଯେପରି ପ୍ରସ୍ତୁତ ରହିବେ ଏବଂ ଯୁଦ୍ଧ ଯେତେଦିନ ପର୍ଯ୍ୟନ୍ତ ଚାଲିବ ସେତେଦିନ ପର୍ଯ୍ୟନ୍ତ ତାଙ୍କୁ ଜେଲରେ ରହିବାକୁ ପଡ଼ିବ । ଯେପରି ଦେଶର ଅନେକ ରହିଛନ୍ତି ।"

ଠିକ ଏ ସନ୍ଧ୍ୟା ହେବାପରେ ସୁଭାଷବାବୁ ସଙ୍ଗରେ ନେବାକୁ ଥିବା ସବୁ ଜିନିଷ ପତ୍ର ଶିଶିର କୁମାର ସଜାଡ଼ିବାରେ ଲାଗିଲେ । ଠିକ୍ ସେତିକିବେଳେ ଦ୍ୱିତଳ ମହଲାରୁ ଶରତ୍ ବାବୁ ଶିଶିରଙ୍କୁ ଡାକି ଛାତ ଉପରକୁ ନେଇଗଲେ । ଶରତ ବାବୁଙ୍କ ଚକ୍ଷୁ ଓ ମୁହଁରେ ଉଦ୍‌ବେଗର ଚିହ୍ନ ସ୍ପଷ୍ଟ ଥିଲା । ସେମାନଙ୍କର ପରିକଳ୍ପନା ସମ୍ବନ୍ଧେ ପ୍ରଥମେ ସେ କେତୋଟି ସ୍ପଷ୍ଟ ପ୍ରଶ୍ନ କରିଥିଲେ,— ଶିଶିର ବୁଝିପାରିଲେ ଯେ, ଯୋଜନାଟି ପୂରା ତାଙ୍କ ବାପାଙ୍କର ମନ ଦର୍ପଣରେ । ଶେଷରେ ଶରତ୍ ବାବୁ ଶିଶିରଙ୍କୁ ଲକ୍ଷ୍ୟକରି ପଚାରିଲେ— ତୁମେ ଯେଉଁ କାର୍ଯ୍ୟର ଭାର ନେଇଛ, ତାହା ଠିକ୍‌ଭାବେ କରିପାରିବ ତ ?" ଶିଶିର ଉତ୍ତର ଦେଇଥିଲେ— ମୁଁ ଗାଡି ଚଳାଇବାକୁ ଭଲପାଏ, ମୋର ନିଜ ଉପରେ ଓ ଗାଡି ଉପରେ ପୂର୍ଣ୍ଣ ବିଶ୍ୱାସ ଅଛି ।" କିନ୍ତୁ ଶରତ ବାବୁ ସେମାନଙ୍କର ନିରାପତ୍ତା କଥା ଭାବି ବେଶ୍ ଚିନ୍ତିତ ଥିଲେ । କାରଣ ବାଟରେ ଚନ୍ଦନ ନଗର ହୋଇଗଲାବେଳେ ଫରାସୀ ପୁଲିସ୍‌ଙ୍କ ବ୍ରେଗମାଲ୍ ପାଞ୍ଚ ଅନପୁରେ କାଳେ ଯଦି ସେମାନେ ଚ୍ୟାଲେଞ୍ଜ କରନ୍ତି ତାହେଲେ ସୁଭାଷ ଚନ୍ଦ୍ରଙ୍କ ଛଦ୍ମ ବେଶ ଧରା ପଡ଼ିବା ସମ୍ଭାବନା ବେଶି । ଏଣୁ କୌଣସିମତେ ଫରାସୀ ପୋଲିସ୍‌ଙ୍କ ନଜର ଏଡ଼ାଇ ଯାଇପାରିଲେ ହେଲା ।

୧୯୪୧ ଜାନୁୟାରୀ ୧୭ ତାରିଖ ସନ୍ଧ୍ୟା ୮ଟା ଭିତରେ ଉଡ଼ବାନ୍ ପାର୍କସ୍ଥ ବାସ ଭବନରୁ ଗ୍ରେଟ ଘର ଭଉଣୀ ଓ ଚାକର ବାକରଙ୍କ ନଜର ଏଡ଼ାଇ ଶିଶିର କୁମାର ଓ୍ୱାନ୍‌ଡାରର୍ ଗାଡି ପଛସିଟ ସୁଭାଷ ବାବୁଙ୍କ ମାଲପତ୍ର ସବୁ ସଜାଡ଼ି ରଖି-ଦେଲେ । ଠିକ୍ ରାତ୍ର ୮-୩୦ରେ ଗେଟର ରକ୍ଷକଙ୍କୁ କହିଲେ ଯେ— ମୁଁ ଭଟଡାସ୍ଥ ବାଗାନ୍ ବାଡ଼ିକୁ ଯାଉଛୁ, ଆସିବା ଯଦି ବିଳମ୍ବ ହୁଏ ତେବେ ଗେଟରେ ରହିଥିବ । ରାତ୍ର ୧୧ଟା ପରେ ଆଉ ଅପେକ୍ଷା ନକରି ଗେଟ ବନ୍ଦ କରିଦେବ ।" ଏହାପରେ ଶିଶିର କୁମାର ଗାଡ଼ି ଚଳାଇ ଏଲ୍‌ଗିନ୍ ରୋଡ଼ ରାସ୍ତା ଭେବର୍ଣ୍ଣ ଓକଟା ଫଗେ ଚଉକରି ଲେଷ୍ଟାର୍ ସାର୍କୁଲର ରୋଡ଼ସ୍ଥ ପେଟ୍ରୋଲ୍ ଷ୍ଟେସନରେ ପେଟ୍ରୋଲ୍ ଭରିନେଲେ । ଗାଡି ଚକ୍‌କାର ପ୍ରେସର୍ ଠିକ ଅଛି କି ନାହିଁ ଓ ବେଟାରୀ ଚେକ୍ କରି, ଚୌରଙ୍ଗୀ ରୋଡ଼ରେ ଗାଡି ଚଳାଇ ପଶ୍ଚିମ ଦରପଟ୍ ଏଲ୍‌ଗିନ୍ ରୋଡ଼ର ବାସ ଭବନ ଟେନ୍ସନ ପିଡ଼ ରାସ୍ତା ନିକଟରେ ଗାଡ଼ି ପାର୍କକରି, ନିରୁଦ୍ଧିଷ୍ଟ ଭାବେ ଘର ହୋଟାଲ ଉପରକୁ ଉଠିଗଲେ ।

ସୁଭାଷ ବାବୁ ସେତେବେଳେ ନିଜର ଜାମା କପଡ଼ା ବଦଳାଇ ସିଲ୍‌କ ଧୋତି ଓ ଚାଦର ପିନ୍ଧି ନେଇଥିଲେ । ନିର୍ଜନ ବାସପାଇଁ ସେ ଯେଉଁ ବ୍ରତ ପାଳନ କରିବେ

ବୋଲି ଆଗରୁ ଘୋଷଣା କରିଥିଲେ, ସେହି ବ୍ରତ ଆରମ୍ଭ କରିବା ପୂର୍ବରୁ ମା' ଓ ପରିବାରର ସମସ୍ତଙ୍କ ଉପସ୍ଥିତିରେ ସେ ଆନୁଷ୍ଠାନିକ ଭାବେ ଶେଷଥରପାଇଁ ଆହାର ଗ୍ରହଣ କରିବେ । ଏଥିପାଇଁ ବୋଲି ଭଲ, ହିରେନ୍ ଏବଂ ଅରବିନ୍ଦ [ଝିଅଘର ଓ ପୁତୁରା] ଏମାନେ ସବୁ ଘର ଭିତରେ ଚୌକା ଲଗାଇବା ବ୍ୟବସ୍ଥା କରିଛନ୍ତି । ସୁଭାଷ ବାବୁ ଶିଶିର କୁମାରକୁ ଡାକି, ଥିରି ଥିରିକରି କହିଲେ— ସେ ଘରୁ ଚାଲିଯିବା ପରେ, ତାଙ୍କର ଖାଦ୍ୟ ଋତିମତ ଯେପରି ଭଲି କମ୍ବା ଅରବିନ୍ଦ ଖାଇ ଯାଉଥିବେ, ସେ ସମ୍ବନ୍ଧେ ସାହାଯ୍ୟ କରିବାପାଇଁ ସେ ଅରବିନ୍ଦକୁ କହିଛନ୍ତି ।" ଘରର ଉତ୍ତର ପ୍ରାନ୍ତରେ ମାଟି ଉପରେ ବସି ସୁଭାଷ ବାବୁ ଯେତେବେଳେ ତାଙ୍କର ସେହି ବିଶେଷ ଆହାର ଭୋଜନ କରି ବସିଲେ, ସେତେବେଳେ ତାଙ୍କୁ ଘେରି କରି ବସିଥିଲେ ମା' ପ୍ରଭାବତୀ ଦେବୀ, ପାଞ୍ଚଜଣ ଭାଉଜଙ୍କ ବୋଉ ଏବଂ ଅସଂଖ୍ୟ ପୁତୁରା ଓ ଝିଅଘରି ଦଳ । ଭୋଜନ ଶେଷ ହେବାପରେ ମା' ପ୍ରଭାବତୀ ଓ ଅନ୍ୟ ସମସ୍ତେ ଜଣ-ଜଣକରି ବିଦାୟ ନେଇ ଚାଲିଗଲେ । ସେମାନେ ଭୁଲରେ ମଧ୍ୟ ଜାଣିପାରିଲେ ନାହିଁ ଯେ, ଏହି ବିଦାୟ ଚିରଦିନପାଇଁ, ବିଦାୟ ହେବାକୁ ଯାଉଛି । ସେହି ସମୟରେ ସୁଭାଷ ବାବୁଙ୍କ ମୁଖମଣ୍ଡଳ ଥର୍ ଥର୍ ହୋଇ ମଳିନ ଦେଖା ଯାଉଥିଲା । କିନ୍ତୁ ସେ ନିଜକୁ ଖୁବ୍ ସଂଯତ କରି ରଖି ପାରିଥିଲେ ।

ସୁଭାଷ ବାବୁ ଏହି ବ୍ରତ ପାଳନର ସଂକଳ୍ପ କଥା ପରିବାରର ସମସ୍ତଙ୍କ ମନରେ ବିଶ୍ୱାସ ଜନ୍ମାଇ ପାରିଥିଲେ । ତେବେ ଏହି ସ୍ୱେଚ୍ଛାକୃତ ନିର୍ଜନ ବାସ ସମୟରେ, କିପରି କ'ଣ କରିବାକୁ ହେବ ତାହା ମଧ୍ୟ ସମସ୍ତଙ୍କୁ ବୁଝାଇ ଦେଇ-ଥିଲେ । ଘଣ୍ଟିଆ ଠାକୁର କିପରି ଭାବେ ପର୍ଦ୍ଦାର ବାହାର ପଟୁ ଦୈନନ୍ଦିନ ଖାଦ୍ୟ ଥାଳୀ ଦେବାକୁ ହେବ, ସେ ସମ୍ବନ୍ଧେ ଭଲଭାବେ ବୁଝାଇ ଦେଇଥିଲେ । ଏହାଛଡ଼ା ସେ ନିଜ ହାତରେ କିଛି ରେଡିମେଡ୍ ଜବାବ୍ ଲେଖି ଚିଠା ତିଆରି କରି ରଖି ଯାଇଥିଲେ । ଯେଉଁମାନେ ତାଙ୍କୁ ଦେଖା କରିବାକୁ ଆସିବେ, ସେମାନେ କ' କାମରେ ଆସିଛନ୍ତି ? ଆନ୍ଦାଜ୍ କରି ସେ ଗୁଡ଼ିକ ତାଙ୍କୁ ବାଣ୍ଟିବାକୁ ହେବ, ଏହି ସବୁ ଚିଠାରେ କୌଣସିଟିରେ ଲେଖା ଅଛି— ଏ ସମ୍ବନ୍ଧରେ କଂଗ୍ରେସ ଅଫିସରେ ଖୋଜ କରନ୍ତୁ; ଅଥବା ଏ ସମ୍ବନ୍ଧେ କର୍ପୋରେସନରେ ଖୋଜ କରିବେ ।' ନଚେତ୍ 'ଶରୀର ଅସୁସ୍ଥ, ପରେ ଏ ବିଷୟରେ ଆଲୋଚନା ହେବ'; ଅଥବା 'ଅମୁକର ସଙ୍ଗେ ଏ ସମ୍ବନ୍ଧେ କଥା ହୁଅନ୍ତୁ' ଇତ୍ୟାଦି । ଏହା ଛଡ଼ା ଜେଲ୍‌ରେ ଯେଉଁ ସବୁ ସହକର୍ମୀ ଥିଲେ, ସେମାନଙ୍କ ଉଦ୍ଦେଶ୍ୟରେ ମଧ୍ୟ କେତୋଟି ଚିଠି ଲେଖି ରଖିଯାଇଥିଲେ । ସେ ଘରୁ ଚାଲିଯିବା ପରବର୍ତ୍ତୀ କୌଣସି ଦିନର ତାରିଖ ଦେଇ ଯେପରି ସେ ଗୁଡ଼ିକ ଡାକରେ ପକାଯିବ । ଏହି ସବୁ ଚିଠି ମଧ୍ୟରେ ହରିବିଷ୍ଣୁ କାମାଥଙ୍କୁ ଜାନୁୟାରୀ ୧୮ ତାରିଖ ଦେଇ ଖଣ୍ଡିଏ ଚିଠି ଲେଖା ହୋଇଥିଲା ।

## ଛଅ

କ୍ରମଶଃ ରାତି ଗଭୀର ହେବାରୁ ଘରର ସମସ୍ତେ ତଳତାଲା ଉପରକୁ ଯେ ଯାହାର ଘରେ ଶୋଇବାକୁ ଚାଲିଗଲେ । ମାତା ପ୍ରଭାବତୀ ସୁଭାଷ ବାବୁଙ୍କ ଘରକୁ ଲାଗି ତାଙ୍କ ନିଜର ଶୋଇବା ଘରକୁ ଚାଲିଯାଇଥିଲେ । ଅନ୍ୟମାନଙ୍କ ମଧ୍ୟରେ କେବଳ ତାଙ୍କର ଦୁଇଜଣ ସନ୍ଦେହମନା ପୁତୁରା ତଳତାଲା ଉପରେ ଚାଲି-ବୁଲି କରୁଥିଲେ । ଏଣେ ଅମୂଲ୍ୟ ସମୟ ଚାଲିଯାଉଥିବା ଦେଖି ସୁଭାଷ ବାବୁଙ୍କ ମନ ଚଞ୍ଚଳ ହୋଇ ଉଠିଲା । ଶେଷରେ ଦ୍ୱିଜେନ ବୋଷ (ପୁତୁରା)ଙ୍କୁ ଡାକି ସେ କହିଲେ— ତୁମର ସେହି ସନ୍ଦେହ ଗ୍ରସ୍ତ ଭାଇ ଦୁଇ ଜଣଙ୍କୁ ସଙ୍ଗରେ ନେଇଯାଇ ଛତଣୀରେ ଶୁଆଇବା ଚେଷ୍ଟା କର, ଏବଂ ଆମେ ଚାଲି ନ'ଯିବା ପର୍ଯ୍ୟନ୍ତ ଯେ କୌଣସିମତେ ସେମାନଙ୍କୁ ଅଟକାଇ ରଖିବ ।

ଘରୁ ବାହାରକୁ ଯିବାପାଇଁ ନିର୍ଦ୍ଦିଷ୍ଟ ଥିବା ଲମ୍ବା ସିମେଣ୍ଟ ଚଟାଣ ପଥ ଓ ଘରର ପଛପଟେ ଥିବା ସିଡ଼ି ରାସ୍ତା ପୁଣି ଥରେ ପରୀକ୍ଷାକରି ଦେଖାହେଲା, ସବୁ ଠିକ୍ ଅଛି ।

ଘର ଭିତର ଅର୍ଦ୍ଧା ଆରପଟେ ଠିଆହୋଇ ସୁଭାଷ ବାବୁ ଯେତେବେଳେ ମହମ୍ମଦ୍ ଜିଆଉଦ୍ଦିନ୍ ଛଦ୍ମ ପୋଷାକ ପିନ୍ଧି ଥିଲେ, ସେତେବେଳେ ଶିଶିର କୁମାର ତାଙ୍କର ନେକଟାଇ ଉଠାଇ ଠିକ୍ କରିଦେଲେ । ବାଦାମୀ ରଙ୍ଗର ଗଳାବନ୍ଧା ସରୁ ଲମ୍ବା କୋଟ ସଙ୍ଗେ ଢିଲା ପାଇଜାମା ଏବଂ ମୁଣ୍ଡରେ କଳା ରଙ୍ଗର ଫେଜ୍ ଟୋପି ସେ ପିନ୍ଧିନେଲେ । ଶେଷ ମୁହୂର୍ତ୍ତରେ ଛଦ୍ମ ବେଶରେ କିଛି ପରିବର୍ତ୍ତନ କରିଥିଲେ । ଆଗରୁ ଠିକ୍ ହୋଇଥିଲା ଯେ, ସେ କାବୁଲ୍ ଚପଲ ପିନ୍ଧିଯିବେ । କିନ୍ତୁ ପିନ୍ଧିବା ଦ୍ୱାରା ଚାଲିବା ବୁଲିବାରେ ବିଶେଷ କଷ୍ଟହେବ ଭାବି, ତାଙ୍କର ପୁରାତନ ଫିତାବନ୍ଧା ମଜବୁତ ଜୋତା, ଯାହାକି ସେ ୟୁରୋପରେ ବ୍ୟବହାର କରୁଥିଲେ ତାହାକୁ ପିନ୍ଧିଲେ । ସେ ସମୟରେ ଯେଉଁ ସେ ବ୍ୟବହାର କରୁଥିଲେ, ତାକୁ ରଖିଦେଇ ଦଶବର୍ଷ ପୂର୍ବର ପୁରୁଣା ରୋଲଡ୍‌ଗୋଲଡ୍ ଫ୍ରେମ୍ ବନ୍ଧା ଗୋଲ କାଚ ଚଷମା ସଙ୍ଗରେ ନେଇଥିଲେ ।

ଏହାର ପୂର୍ବରୁ ପୁତୁରା ଦ୍ୱିଜେନ୍ ବୋଷଙ୍କୁ ଭାର ଦିଆଯାଇଥିଲା ଯେ, ତାଙ୍କର ସନ୍ଦିଗ୍ଧ ବଡ଼ ଭାଇଙ୍କ ଅଟକାଇ ରଖିବେ ଏବଂ ପଥ ଘାଟକୁ ନଜର ରଖି ସଦର ଗେଟ୍ ନିକଟରେ ସି·ଆଇ·ଡି·ର କେହି ଲୋକ ଅଛନ୍ତି କି ନାହିଁ ଦେଖି, ସ'ଜୋରରେ ଗଳା ଖଙ୍କାରି ସଙ୍କେତ ଦେବେ ।

କିନ୍ତୁ ରାସ୍ତା କ୍ଲିୟାର୍ ହେବାପାଇଁ ଜଗିବସି ପ୍ରାୟ ତିନି ଘଣ୍ଟା ସମୟ କଟିଗଲା, କିଛି ହେଲେ ଜଣାପଡ଼ିଲା ନାହିଁ । ଶେଷକୁ ରାତି ଦେଢ଼ଟା ସମୟରେ ଉପର ମହଲାରୁ ଲାଇନ୍ କ୍ଲିୟାର୍ ସଙ୍କେତ ଆସିଲା ।

ସୁଭାଷ ବାବୁ ପର୍ଦ୍ଦାର ଏ ପଟକୁ ଆସି ଇଲା (ଝିଆରି) ନିକଟରୁ ସସ୍ନେହ ବିଦାୟ ନେଇ କହିଲେ— "ଭଗବାନ ତୋର ମଙ୍ଗଳ କରନ୍ତୁ ।" ଶିଶିର କୁମାର ମଧ୍ୟ ଇଲାକୁ ଲକ୍ଷକରି କହିଲେ— "ଆମେ ସବୁ ଚାଲିଯିବା ପରେ ଅନ୍ତତଃ ଆଜିର ଏକ ଘଣ୍ଟା ପର୍ଯ୍ୟନ୍ତ ଯେପରି ରାଙ୍ଗାକାକା ବାବୁ (ସୁଭାଷ ବାବୁ)ଙ୍କ ଘରର ବତି ଜଳୁଥିବ, ତାପରେ ଲିଭାଇବ ।"

ବେଡ଼ିଂ-ହୋଲ୍‌ଡ଼ାର୍ ଧରି ଅରବିନ୍ଦ ଆଗେ, ତାପରେ ସୁଭାଷ ବାବୁ, ପଛରେ ଶିଶିର କୁମାର ଘରର ଦେବାଲକୁ ଲାଗି ଚଟାଣ ଉପରେ ତିନିଜଣ ପାଦ ଚିପି ଚିପି ଧୀରଭାବେ ଚାଲିବାକୁ ଲାଗିଲେ । ସେଦିନ ଆକାଶରେ ଉଜ୍ଜ୍ୱଳ ଜ୍ୟୋସ୍ନା, ସୁଭାଷ ବାବୁ ସାବଧାନ କରାଇଦେଲେ ଚାଲିବା ସମୟରେ ଯେପରି ଦେବାଲ୍ ଉପରେ କାହାର ଛାୟା ନପଡ଼େ ।

ଏକାଥରେ ସାଇଲେଣ୍ଟ୍ ମାର୍ଚ୍ଚ କରି ସେମାନେ ପଛପଟର ସିଡ଼ି ରାସ୍ତାରେ ତଳକୁ ଓହ୍ଲାଇ ଗାଡ଼ି ନିକଟରେ ଆସି ପହଞ୍ଚିଗଲେ । ବେଡ଼ିଂଟାକୁ ଗାଡ଼ିର ଆଗ ସିଟ୍‌ରେ ରଖାହେଲା । ସୁଭାଷ ବାବୁ ନିଃଶବ୍ଦେ ଗାଡ଼ିରେ ଉଠି ଦରଜା ବନ୍ଦ ନକରି ହାତରେ ଧରି ରହିଲେ, କେଜାଣି ଯଦି କାଳେ ଚେତାଥିବ ତା ହେଲେ ଦୁଇଟା ଦରଜା ବନ୍ଦ ହେବା ଶବ୍ଦ ସେ ଶୁଣିବାକୁ ନପାଏ, କାରଣ ସନ୍ଦେହ ହେବ ଯେ, ଦୁଇଜଣ ଲୋକ ବାହାରି ଗଲେ ।

ସୁଭାଷ ବାବୁ ଗାଡ଼ିରେ ବସିବା ପରେ, ଶିଶିର କୁମାର ଗୋଡ଼ର ଚଟିଜୋତା ଫଟ୍ ଫଟ୍ ଆବାଜ୍ କରି ଉପରକୁ ଉଠି ସଶବ୍ଦ ଦରଜା ବନ୍ଦ କରିଦେଲେ । ଏହି ସବୁ ଚେଷ୍ଟାକୃତ ଗୋଳମାଳ ମଧ୍ୟରେ ଦୂରରୁ କେଉଁଠି କେତୋଟି କାକ କା, କା, ରବ ଦେଇ ଉଡ଼ିଗଲେ । ଅରବିନ୍ଦ ଆଗରୁ ଯାଇ ସଦର ଗେଟ୍‌ର ଦରଜାଟା ଖୋଲିଦେଲେ, ଏତିକିବେଳେ ଶିଶିର କୁମାର ୱାଣ୍ଡେରର୍ ଗାଡ଼ିକୁ ଭୁମୁକ ଗର୍ଜନ ଜୋରରେ ଚଳାଇ ରାସ୍ତାକୁ ବାହାରି ପଡ଼ିଲେ । ସେଦିନ ଥିଲା, ୧୯୪୧ ମସିହା ଜାନୁୟାରୀ ୧୭ ତାରିଖ ଗୁରୁବାର ରାତି ୧ ଘଣ୍ଟା ୩୦ ମିନିଟ୍ ସମୟ ।

ସୁଭାଷ ବାବୁଙ୍କ ପୂର୍ବ ନିର୍ଦ୍ଦେଶାନୁସାରେ ପ୍ରଥମେ ଗାଡ଼ି ଦକ୍ଷିଣ ମୁଖ ହୋଇ ଯେତେବେଳେ ଏଲ୍‌ଗିନ୍ ରୋଡ଼ ଛାଡ଼ି, ପୁଣି ଡାହାଣ ଦିଗକୁ ବୁଲି ଏଲେନ୍‌ବି

ଗେଟ ଦେଇ ଦକ୍ଷିଣକୁ ଆସିଗଲା । ସେତେବେଳେ ନିକଟରେ - କୌଣସି ଉପଦ୍ରବର ସମ୍ଭାବନା ନଥିଲା । ଏଲ୍‌ଗିନ୍ ରୋଡ଼ ଓ ଉଡବାର୍ନ ରୋଡ଼ ମୋଡ଼ରେ କାଠ ଖମ୍ବିଆ ପକାଇ ପୁଲିସ୍ ଓ ସି. ଆଇ. ଡି.ର ଲୋକମାନେ ଘୁଷୁଣି ଜଗାଇଥିଲେ । ଗାଡ଼ି ଯେତେବେଳେ ସେହି ରାସ୍ତା ଦେଇ ପାର ହେଲା, ସମ୍ଭବତଃ ସେମାନେ କମ୍ବଳ ଘୋଡ଼େଇ ହୋଇ ବେଶ୍ ଆରାମରେ ଶୋଇ ପଡ଼ିଥିଲେ । ଇଂରେଜ ସରକାରଙ୍କ ଉଦ୍ଦେଶ୍ୟ ଥିଲା ଯେ, ଦୁଇ ରାସ୍ତାର ସଙ୍ଗମସ୍ଥଳେ ପର୍ଯ୍ୟବେକ୍ଷଣ କେନ୍ଦ୍ର ସ୍ଥାପନ କରି, ଗୋଟିଏ ଢେଲାରେ ଦୁଇଟି ପକ୍ଷୀ ମାରିବା । କାରଣ ସେହି କେନ୍ଦ୍ରରୁ ବସୁ ପରିବାରର ଦୁଇଟି ଯାକ ଘର ଉପରେ ନଜର ରଖାଯାଉଥିଲା । ଦରକାର ପଡ଼ିଲେ ତୁରନ୍ତ କୌଣସି ଘର ସାମନାରେ ପୋଲିସ ଉପସ୍ଥିତ ହୋଇପାରୁଥିଲେ । ଯାହା ହେଉ, ସେମାନଙ୍କର କୌଶଳ ବ୍ୟର୍ଥତାରେ ପର୍ଯ୍ୟବସିତ ହେଲା ଏବଂ ଯୋଡ଼ିଏ ପକ୍ଷୀ ସେମାନଙ୍କ ଅଜାଣତରେ ଉଡ଼ିଗଲେ ।

ଗାଡ଼ି ଚଳାଇବା ବେଳେ ଶିଶିର ପଛକୁ ଫେରି ଦେଖୁଥାନ୍ତି ଯେ, ଅନ୍ୟ କୌଣସି ଗାଡ଼ି ତାଙ୍କୁ ଅନୁସରଣ କରୁଛି କି ନାହିଁ ? ଏଥିରେ ସୁଭାଷ ବାବୁ ଶିଶିରଙ୍କୁ ପଚାରିଲେ— "ଆମ ପଛରେ କିଏ ଲାଗିଛି ବୋଲି ତୁମେ କାହିଁକି ଅଯଥାରେ ସନ୍ଦେହ କରୁଛ କି ?" ଲକ୍ଷ୍ୟ ଥିଲା, ସକାଳ ହେବା ପୂର୍ବରୁ ସେମାନେ ଧାନ୍‌ବାଦରେ ପହଞ୍ଚି ଯିବେ ଅଥଚ ଘରୁ ବାହାରିବାରେ ବିଶେଷ ଡେରି ହୋଇଗଲା । ହ୍ୟାରିସନ୍ ରୋଡ଼ ଦେଇ ଗାଡ଼ି ଗଲାବେଳେ ସମସ୍ତେ ଜଣାଗଲା ଯେ ସାରା କଲିକତା ସହର ସେତେବେଳେ ଘୋର ନିଦ୍ରାରେ ମଗ୍ନ— ଆଉ ଭୟର କାରଣ ନାହିଁ, କେବଳ ହାୱଡ଼ା ବ୍ରିଜ୍ ନିକଟରେ କେତୋଟି ଟ୍ୟାକ୍ସି ନଜରରେ ପଡ଼ିଥିଲା । ତା'ପରେ ଲିଲୁଆ, ଉତ୍ତରପଡ଼ା, ବାଲି, କୋନ୍ନଗର, ରିଷଡ଼ା, ଶ୍ରୀରାମପୁର ପାର ହେବାପରେ ଶିଶିର ସୁଭାଷବାବୁଙ୍କୁ କହିଲେ,— ଆପଣ ଟିକିଏ ଶୋଇ ପଡ଼ନ୍ତୁ ।" କିନ୍ତୁ ସୁଭାଷ ବାବୁ କହିଲେ— "ନା । ଏହା ତୁମ ପକ୍ଷରେ ଭଲ ହେବ ନାହିଁ । ଗାଡ଼ିର ଏକମାତ୍ର ଆରୋହୀ ଯଦି ଶୋଇ ପଡ଼େ ତା ହେଲେ ଯିଏ ଡ୍ରାଇଭିଂ କରେ, ସେ ମଧ୍ୟ କ୍ଲାନ୍ତ ଅନୁଭବ କରିବ । ଏଣୁ ଚାଳକ ସଙ୍ଗେ ମଝି ମଝିରେ କଥାଭାଷା ହେବା ଉଚିତ ।"

ଘରୁ ଆସିବା ସମୟରେ ଝିଆରି ଇଲା ଥର୍ମୋଫ୍ଲାସ୍କରେ କଫି ଭରିଦେଇଥିଲା । ବାଟରେ ଲେଭଲ୍ କ୍ରସିଂଠାରେ ଗାଡ଼ି ଅଟକିଲେ, ସୁଭାଷ ବାବୁ କପେ କଫି ଶିଶିରଙ୍କୁ ଦେଇ ନିଜେ ଖାଇ ନଥାନ୍ତି । ହାୱଡ଼ାଠାରୁ ବର୍ଦ୍ଧମାନ ପର୍ଯ୍ୟନ୍ତ ଗ୍ରାଣ୍ଡଟ୍ରଙ୍କ ରୋଡ଼ ଅଧିକାଂଶ ଯାଗା ଅଙ୍କାବଙ୍କା । ପ୍ରାୟ ୮ ଟାକୁ ସେଠାରେ ପହଞ୍ଚିଥିଲେ,

ଘୁମନ୍ତ ସହର ଓ ରେଳ ଷ୍ଟେସନ । ବର୍ଦ୍ଧମାନ ପରେ ରାସ୍ତା ସିଧା ହେବାରୁ ଗାଡ଼ିର ଗତି ବଢ଼ିବାକୁ ଲାଗିଲା । ସେତେବେଳେ ଡକାୟତି ପାଇଁ କୁଖ୍ୟାତ ଦୁର୍ଗାପୁର ଜଙ୍ଗଲ ରାସ୍ତାରେ ଗାଡ଼ିକୁ ଅତି ଦ୍ରୁତ ଗତିରେ ଚଳାଇ, ଆସାନ୍‌ସୋଲ୍ ନିକଟରେ ପହଞ୍ଚିଲା ବେଳକୁ ପୂର୍ବାକାଶରେ ରକ୍ତାଭାର ମାଝ ମାଝ ଭୋର ହେବାକୁ ଯାଉଛି— ଚତୁର୍ଦ୍ଦିଗ କୁହୁଡ଼ିରେ ଆଚ୍ଛନ୍ନ, ସହର ନିକଟ ବାହାରେ ଗୋଟିଏ ପେଟ୍ରୋଲ ଷ୍ଟେସନରେ ସୁଭାଷବାବୁ ଅନିଚ୍ଛା ସତ୍ତ୍ୱେ ଶିଶିର କୁମାର ଶର୍ତ୍ତ ରକ୍ଷିବା ପାଇଁ ଗୋଟିଏ ଟିଣରେ ପେଟ୍ରୋଲ ଭରି ନେଇଥିଲେ ।

ଆସାନ୍‌ସୋଲ ଠାରୁ ଗ୍ରାଣ୍ଡଟ୍ରଙ୍କ ରୋଡ଼ ଯେଉଁଠି ଧାନବାଦ୍ ରାସ୍ତା ବଙ୍କେଇ ଯାଇଛି, ତା ନିକଟରେ ଗୋବିନ୍ଦପୁର ନାମକ ଗ୍ରାମରେ ଚେକ୍‌ପୋଷ୍ଟ ଅଛି, ସେଠାରେ ଜଣେ ଲୋକ ଆସି ଖାତାରେ ଗାଡ଼ିର ନମ୍ବର ଲେଖି ନେଲା, ଏଥିରେ ସୁଭାଷ ବାବୁ କିଛିଏ ଅତୃପ୍ତି ବୋଧ କଲେ । କିନ୍ତୁ ଶିଶିର ବୁଝାଇ ଦେଲେ ଯେ, ଏହା ସେମାନଙ୍କର ଧାରାବାହିକ କାର୍ଯ୍ୟ । କାରଣ ଅତୀତରେ ସେ ଏହି ରାସ୍ତା ଦେଇ କେତେଥର ତାଙ୍କର ବଡ଼ଭାଇଙ୍କ ନିକଟକୁ ଯିବାଆସିବା କରିଛନ୍ତି, ଏଣୁ ଏ ସମ୍ବନ୍ଧରେ ତାଙ୍କର ବେଶ୍ ଧାରଣା ଅଛି । ଏହାପରେ ଧାନବାଦ ସହର ଛାଡ଼ି ବାହାର ପଥରେ ଗାଡ଼ି ଧାବମାନ ହେଲା, ଅଳ୍ପ କିଛି ସମୟ ପରେ ବାରାରୀର କୋକ୍ ଓଭେନ ପ୍ଲାଣ୍ଟର ପ୍ରକାଣ୍ଡ ଚିମନୀ ଦୂରରୁ ଦେଖାଗଲା । ଏଠାରେ ଶରତ ଚନ୍ଦ୍ର ବୋଷଙ୍କର ବଡ଼ ପୁଅ ଡା ଅଶୋକନାଥ ବୋଷ ବେଶ୍ ମୋଟା ଦରମାରେ ସର୍ଭିସ୍ କରି ସସ୍ତ୍ରୀକ ରହୁଥିଲେ । ଆଗରୁ ଠିକ୍ ହୋଇଥିଲା ଯେ, ଅଶୋକନାଥ ବୋଷଙ୍କ ପାଖକୁ ଗଲାବେଳେ, ତାଙ୍କ ଘରଠୁଁ କିଛି ଦୂର ବାଟରେ ସୁଭାଷ ବାବୁ ଓହ୍ଲାଇ ପଡ଼ିବେ, କେବଳ ଶିଶିର କୁମାର ଡ୍ରାଇଭିଂ କରି ଏକେଲା ଯିବେ । ସେହି ପ୍ରକାରେ ୪ଶହ ଗଜ ଦୂରରୁ ସେ ଓହ୍ଲାଇ ପଡ଼ି ଚାଲି ଚାଲି ଗଲେ । ତା ପୂର୍ବରୁ ଶିଶିର କୁମାର ଗାଡ଼ିରେ ପହଞ୍ଚି ବଡ଼ଭାଇ ଅଶୋକ ନାଥଙ୍କ ନିକଟରେ ସମସ୍ତ ବୃତ୍ତାନ୍ତ ଜଣାଇ ଦେଇଥିଲେ । କିଛି ସମୟ ପରେ ସୁଭାଷ ବାବୁ ମଧ୍ୟ ସେଠାରେ ପହଞ୍ଚି, ନିଜକୁ ଜଣେ ଇନ୍‌ସୁରେନସ୍ ଏଜେଣ୍ଟ ଭାବେ ପରିଚୟ ଦେଇ ଡ଼କ୍ଟର୍ ବୋଷଙ୍କ ସଙ୍ଗେ ବ୍ୟବସାୟିକ କଥାଭାଷା କରିବାକୁ ଆସିଛନ୍ତି ବୋଲି ଚପରାଶିକୁ କହିଲେ । ଏହାପରେ ଚପରାଶି ଘର ଭିତରକୁ ଯାଇ ଖବର ଦେଲେ ଯେ, ଜଣେ ମୁସଲମାନ ଭଦ୍ରବ୍ୟକ୍ତି, ବାବୁଙ୍କ ସଙ୍ଗେ ଦେଖା କରିବା ପାଇଁ ବାହାରେ ଅପେକ୍ଷା କରିଛନ୍ତି । ଖବର ପାଇ ଡା.ଅଶୋକନାଥ ବୋଷ ସଙ୍ଗେ ସଙ୍ଗେ ବାହାର ବାରଣ୍ଡାକୁ ଆସି ଅପରିଚିତ ଆଗନ୍ତୁକ ବ୍ୟକ୍ତିଙ୍କ ସଙ୍ଗେ ଯଥା ରୀତି ଇଂରାଜୀରେ କଥାବାର୍ତ୍ତା କରି ସଙ୍ଗରେ ନେଇ ବୈଠକଖାନାରେ ବସାଇଲେ । ନିଜର ଭୃତ୍ୟକୁ ଡାକି ନିର୍ଦ୍ଦେଶ ଦେଲେ ଯେ ଆଜି ଦିନକ ପାଇଁ

ସେ ଏଠାରେ ରହିବେ, ବଳକା ଥିବା ଶୋଇବା ଘରଟି ତାଙ୍କ ପାଇଁ ବନ୍ଦୋବସ୍ତ କରିଦେବ ଏବଂ ଖାଦ୍ୟପେୟ ମଧ୍ୟ ସେ ଘରକୁ ପଠାଇଦେଲେ ଚଳିବ । ଅଶୋକ ନାଥଙ୍କ ଚାହିଦା ପ୍ରକାରେ, ଗୃହ ରକ୍ଷୀ ମୁସଲମାନ ଭଦ୍ର ବ୍ୟକ୍ତିଙ୍କୁ ସ୍ୱ ଜଳଖିଆ ଦେବାପରେ ତାଙ୍କର ସମସ୍ତ ପ୍ରକାର ପରିଚର୍ଯ୍ୟାରେ ନେଇ ପଥ୍ୟ ଦେଇ ସେବା ସତ୍କାର କରିଥିଲେ ।

ସେଇ ୧୭ ଜାନୁୟାରୀ ୧୯୪୧, ଧନବାଦରେ ଯେପରି ସେମାନେ ଅଭିନୟ କରିଗଲେ, ତାହା ଲେଖିଲେ ଅନ୍ୟ ପ୍ରକାର କାହାଣୀ ହେବ । ଛଦ୍ମବେଶି ବୀମା ଏଜେଣ୍ଟ ମହମ୍ମଦ ଜିଆଉଦ୍ଦିନ୍ ଜଳଖିଆ ଖାଉଥିଲେ, ଅଶୋକ ନାଥ ଅତିଥିଙ୍କର ସଙ୍ଗେ ଶିଶିରଙ୍କୁ 'ପରିଚୟ' କରାଇ ଦେବାକୁ ଯାଇ କହିଲେ ଯେ, 'ଏଇଟି ହେଉଛି ମୋର ସାନ ଭାଇ ଶିଶିର ବୋଷ ।'

ସକାଳ ଦଶଟାବେଳେ ଡା·ଅଶୋକ ନାଥ ଗାଡି ନେଇ ନିଜର ଡ୍ୟୁଟିକୁ କୋକ୍ ଓ ଭେନ୍ ପ୍ଲାଣ୍ଟକୁ ଚାଲିଗଲେ । ଶିଶିର କୁମାର କିଛି ସମୟ ଭାଉଜ ବୋଉଙ୍କ ସଙ୍ଗେ ଗପସପ କରି ବିଶ୍ରାମ ନେଲେ । ମହମ୍ମଦ୍ ଜିଆଉଦ୍ଦିନ୍ ମଧ୍ୟ ତାଙ୍କ ବସା ଘରେ ବିଶ୍ରାମ ନେଲେ । ମଧ୍ୟାହ୍ନର ଭୋଜନ ପାଇଁ ଅଶୋକ ନାଥ ବାବୁ ଘରକୁ ଆସିଲେ । ବାହାର ଲୋକଙ୍କୁ ଯେପରି ଜଣାପଡୁଏ, ସେହିପରି ମହମ୍ମଦ୍ ଜିଆଉଦ୍ଦିନଙ୍କ ପାଇଁ ଖାଦ୍ୟ ତାଙ୍କର ବସା ଘରକୁ ପଠାଇ ଦିଆଗଲା । ବାକି ଅନ୍ୟମାନେ ସମସ୍ତେ ମିଳିମିଶି ଘର ଭିତରେ ଖାଇବାକୁ ବସିଲେ । ଅଶୋକ ନାଥ ଅତିଥି ସଙ୍ଗେ ଆଉ ଦେଖା ନକରି ପୁଣି କାର୍ଯ୍ୟକୁ ଚାଲିଗଲେ । ଏହା ଭିତରେ ଶିଶିର ବାହାରକୁ ଯାଇ ଗାଡିରେ ପେଟ୍ରୋଲ ଭରି ନେଲେ । ମହମ୍ମଦ୍ ଜିଆଉଦ୍ଦିନ୍ ଖାଇସାରି ଦ୍ୱିପ୍ରହରରେ ବେଶ୍ କିଛି ସମୟ ପାଇଁ ସୁଖ ନିଦ୍ରା ଗଲେ ।

ଅଶୋକ ବାବୁ କାର୍ଯ୍ୟରୁ ଘରକୁ ଫେରିବାପରେ ଟେଲିଫୋନ୍ ଦ୍ୱାରା ଖବର ଦେଲେ ଯେ, ଏଥର ବୀମା ଏଜେଣ୍ଟ ସଙ୍ଗେ ସେ ନିକଟ କଥା ହେବାକୁ ଚାହାଁନ୍ତି । ଅଶୋକ ନାଥ ଓ ବୀମା ଏଜେଣ୍ଟ ଜିଆଉଦ୍ଦିନ୍ ବାହାର ବାରଣ୍ଡାରେ ବସି କଥାବାର୍ତ୍ତା ହେଲେ । ଶିଶିର ସେତେବେଳେ ବୈଠକ ଖାନାରେ ବସି କେବଳ ମାଗାଜିନ୍‌ର ପୃଷ୍ଠା ଓଲଟାଉ ଥିଲେ । ଜିଆଉଦ୍ଦିନ୍ ସିଦ୍ଧାନ୍ତ କଲେ ଯେ, ଆସାନ୍‌ସୋଲ ପରିବର୍ତ୍ତେ 'ଗୋମୋ' ରେଳ ଷ୍ଟେସନରେ ସେ ବସିବେ । ପରିବର୍ତ୍ତନ କଥା ଶୁଣି ଶିଶିର କହିଲେ ଯେ— ଏଠାରୁ ଗୋମୋ ଯିବା ରାସ୍ତା ମୋତେ ଜଣାନାହିଁ, ରାତିରେ ରାସ୍ତାରେ ଡ୍ରାଇଭିଂ କରିବା ଆହୁରି ଅସୁବିଧା ହେବ । ତେଣୁ ବଡଭାଇ ସଙ୍ଗରେ ଗଲେ ଭଲ ହୁଅନ୍ତା, ଯେହେତୁ

ଯେ ରାସ୍ତା ଚଳିନ୍ତି । ଏଥିରେ ସୁଭାଷ ବାବୁ ରାଜି ହେଲେ, କିନ୍ତୁ ଅଶୋକ ନାଥ କହିଲେ ଯେ— ରାତିବେଳା ଏଠାରେ ତାଙ୍କୁ (ନିଜର ସ୍ତ୍ରୀକୁ) ଏକାକୀ ଛାଡ଼ିଯିବା ନିରାପଦ ନୁହେଁ । ଏଥିରେ ସୁଭାଷ ବାବୁ କହିଲେ— ଠିକ୍ ଅଛି, ତାଙ୍କୁ ମଧ୍ୟ ସଙ୍ଗରେ ନେଇଯିବ । ଘରର ଭୃତ୍ୟମାନଙ୍କୁ କୁହାଗଲା ବାହାରର ଭଦ୍ର ବ୍ୟକ୍ତିଙ୍କୁ ଯେପରି ଶୀଘ୍ର ଖାଦ୍ୟ ଦେବେ, କାରଣ ତାଙ୍କୁ ଟ୍ରେନ୍ ଧରିବାକୁ ହେବ, ଅନ୍ୟମାନେ ମଧ୍ୟ ସକାଳ ଖାଇ ସାରିଲେ । ଆଗରୁ ସମସ୍ତଙ୍କ ନିକଟରେ ପ୍ରଚାର କରାଯାଇଛି ଯେ, ଉକ୍ତ ବାବୁ ତାଙ୍କର ସ୍ତ୍ରୀ ଓ ଭଉଣୀ ସଙ୍ଗରେ ନେଇ ବୁଲିବାପାଇଁ ବାହାରକୁ ବୁଲିଯିବେ ।

ଶୀତ ଦିନର ସନ୍ଧ୍ୟା ଯେତେବେଳେ ଗାଢ଼ ରୂପ ଧାରଣ କଲା, ଛଦ୍ମବେଶୀ ସୁଭାଷ ବାବୁ ଘରର ବାରଣ୍ଡାରେ ଠିଆହୋଇ ସମସ୍ତ ଭୃତ୍ୟଙ୍କ ଆଗରେ ବେଶ୍ ଲୋକ ଦେଖାଣିଆ ଭାବେ ସେମାନଙ୍କ ନିକଟରୁ ବିଦାୟ ନେଇଗଲେ । କହିବା ବାହୁଲ୍ୟ ଢଙ୍ଗରେ ବିଦାୟ ସମ୍ଭାଷଣ ହୋଇଥିଲା । କଥାଥିଲା ଯେ ଯେଉଁ ପଥରେ ଘରକୁ ଆସିଥିଲେ ସେଇ-ପଥରେ କିଛି ଦୂର ଆଗକୁ ଯାଇ ଅପେକ୍ଷା କରିଥିବେ । ଏହାର କିଛି ସମୟ ପରେ ଶିଶିର, ଅଶୋକ ନାଥ ଓ ତାଙ୍କର ସ୍ତ୍ରୀ ଗାଡ଼ିରେ ବସି ବାହାରି ପଡ଼ିଲେ । ସେତେବେଳେ ରାସ୍ତାରେ କୌଣସି ଜଣେ ନ'ଥିଲା । ସୁଭାଷ ବାବୁ ଟୋପି ପକାଇ ସେହି ରାସ୍ତାରେ ବୁଲି ବୁଲି ଯାଉଥିଲେ । ଗାଡ଼ି କିଛି ଦୂର ଯିବାପରେ ତାଙ୍କର ଛଦ୍ମବେଶୀ ଚେହେରା ଆଖିରେ ପଡ଼ିବାରୁ, ସଙ୍ଗେ ସଙ୍ଗେ ବ୍ରେକ କଷି ସେମାନେ ତାଙ୍କୁ ଗାଡ଼ିରେ ଉଠାଇ ନେଇଥିଲେ ।

ଅଶୋକ ନାଥ ରାସ୍ତା ଦେଖାଇ ଦେଲେ ଏବଂ ଶିଶିର କୁମାର 'ଗୋମୋ' ଷ୍ଟେସନ ଦିଗରେ ଗାଡ଼ି ଚଳାଇବାକୁ ଲାଗିଲେ । ତିନି ଜଣ ପଛ ସିଟ୍‌ରେ ବସିଥିଲେ, କେବଳ ଶିଶିରଙ୍କ ସଙ୍ଗୀ ପାଖ ସିଟ୍‌କୁ ଲାଗି, ସୁଭାଷ ବାବୁଙ୍କ ବେଡ଼ିଙ୍ଗ୍‌ଟା ଥିଲା । ସମୟ ଯଥେଷ୍ଟ ସେମାନଙ୍କ ହାତରେ ଥିଲା । 'ଦିଲ୍ଲୀ-କଲିକତା' ମେଲ ରାତି ବାରଟା ପରେ ଗୋମୋ ଷ୍ଟେସନରେ ପହଞ୍ଚିବା କଥା । କିନ୍ତୁ ସେମାନଙ୍କୁ ଯିବାକୁ ହେବ ମାତ୍ର ୩୦ ମାଇଲ ପଥ । ରାସ୍ତାଟା ଅବଶ୍ୟ ଗ୍ରାଣ୍ଡଟ୍ରଙ୍କ ରୋଡ଼ ପରି ଭଲ ନୁହେଁ, ଧକ୍କାଧକ୍କି ଓ ଯାଗା ଯାଗାରେ ଝାଙ୍କ ଖାଉଥିଲା ।

ଯିବାବେଳେ ବେଶ୍ କିଛି ସମୟ ପାଇଁ ବାଟରେ ଦୁଇଥର ଗାଡ଼ି ଅଟକିଥିଲା । କାରଣ, ରାସ୍ତା ଉପରେ ଧାଡ଼ି ବାନ୍ଧି ଦଳେ ବଳଦ ଗାଡ଼ି (ଶଗଡ଼) ଟଣ୍‌ଟାଣ ଶବ୍ଦରେ ଯେପରି ଶୋଭାଯାତ୍ରା କରି ବୁଲୁଥିଲେ, ତାହା ଏକ ପ୍ରକାର ଦେଖଣିଆ ଦୃଶ୍ୟ

ଥିଲା । ସମ ସାମୟିକ ଇତିହାସର ଗୋଟିଏ ଆଡ଼ଭାଞ୍ଚରର ପୃଷ୍ଠଭୂମି ହିସାବରେ ସେଇ ସବୁ ବଳଦ ବେକର ଘଣ୍ଟି ଘାଗୁଡ଼ିର ଟୁନ୍ ଟାନ ସଙ୍ଗୀତ ମୂର୍ଚ୍ଛନା କେମିତି ଯେପରି ଅସ୍ପର୍ଶ୍ୟ ବୋଧ ହେଉଥିଲା ।

ଦ୍ୱିଗ୍ରସ୍ଥର ପାଇଁ ଗୋମୋ ଷ୍ଟେସନ - ପାଖାପାଖି ଗାଡ଼ି ଅଟକ ଥିଲା । ଚତୁର୍ଦ୍ଦିଗରେ ହଳଦୀ ରଙ୍ଗର ଲହ ଲହ ପାଚିଲା ଧାନ କ୍ଷେତ, ତା ଉପରେ ଶୁଭ୍ର ଚନ୍ଦ୍ର କିରଣର ଅଲୌକିକ ମାୟା ଯେପରି ଜମିଯାଉଛି । ଦୂର ଦିଗନ୍ତରେ ବାବା ପରେଶନାଥ ପାହାଡ଼ର ମନୋହର ରୂପରେଖ ଦେଖାଯାଉଥିଲା ।

ଗୋମୋ ଷ୍ଟେସନ ନିକଟରେ ରାସ୍ତାର ଅବସ୍ଥା ବଡ଼ ଦୁର୍ଗମ୍ୟ ଥିଲା । ଷ୍ଟେସନ ଭିତରେ ପହଞ୍ଚିଲା ବେଳକୁ, ଟ୍ରେନ୍ ଆସିବା ସମୟ ପ୍ରାୟ ହୋଇଥିଲା । ଅଶୋକ ନାଥ ଓ ଶିଶିର ମିଶି ଗାଡ଼ିରୁ ଜିନିଷ ପତ୍ର ବେଡ଼ିଂ, ସୁଟ୍‌କେଶ ଏବଂ ଆଟାଚି କେସ୍ ପ୍ରଭୃତି ତଳକୁ ଓହ୍ଲାଇ କୁଲିପାଇଁ ଡାକ ପକାଇଲେ । ଜତ ଧାଉଁଥିବା ମୁହୂର୍ତ୍ତରେ ଜଣେ କୁଲି ଆସି ଜିନିଷ ଗୁଡ଼ିକ ସବୁ ମୁଣ୍ଡରେ ଉଠାଇ ନେଲା ।

'ମୁଁ ଯାଉଛି, ତୁମେ ସବୁ ଫେରିଯାଅ,— ବିଦାୟ ମୁହୂର୍ତ୍ତରେ ଏହା ଥିଲା ତାଙ୍କର ଶେଷ କଥା । ଶିଶିର କୁମାର ଯେପରି ନିର୍ବାକ ଓ ନିସ୍ପନ୍ଦ ଭାବେ ଠିଆହୋଇ ରହିଲେ, ଏପରିକି ପ୍ରଣାମ କରିବାକୁ ମଧ୍ୟ ସେ ଭୁଲିଗଲେ । ଗମ୍ଭୀର ରାତିର ଗୋମୋ ଷ୍ଟେସନର ଓଭରବ୍ରିଜ୍ ଉପରେ ସୁଭାଷ ବାବୁ ତାଙ୍କର ସ୍ୱଭାବ ସିଦ୍ଧ ଦୃପ୍ତ ଅଥଚ ଧୀର ଭଙ୍ଗୀରେ ଚାଲି ଚାଲି ଯାଉଥିଲେ, ଆଗେ ଆଗେ ଚାଲୁଥିଲେ କୁଲି ମୁଣ୍ଡରେ ଜିନିଷ ପତ୍ର ନେଇ— ଚିର ଦିନ ପାଇଁ ଏଇ ଛବିଟି ଶିଶିର କୁମାର ମନରେ ମୁଦ୍ରିତ ହୋଇ ରହିଲା । ଆଉ ପଛ ସିଡ଼ିରୁ ଓହ୍ଲାଇ ସୁଭାଷ ବାବୁ ପ୍ଲାଟଫର୍ମର ଅନ୍ଧକାର ଭିତରେ ମିଶିଗଲେ ।

ଇତ୍ୟବସରରେ ମେଲ୍ ଟ୍ରେନ୍‌ର ଗୁମ୍ ଗୁମ୍ ଧ୍ୱନି ଶୁଣାଗଲା । ଶିଶିର ଓ ଅଶୋକ ନାଥ ଗାଡ଼ି ନେଇ ଟିକିଏ ଦୂରକୁ ଆସି ଅପେକ୍ଷା କରିଥିଲେ । ହସ୍ ହସ୍ ଶବ୍ଦ କରି ଟ୍ରେନ୍ ଆସି ରହିଲା ପୁଣି କିଛିକ୍ଷଣ ପରେ ଛାଡ଼ି ଦେଲା । ସେମାନେ କାନପାରି କେବଳ ଟ୍ରେନ୍‌ର ଆବାଜ ଶୁଣିବାକୁ ଲାଗିଲେ । ତାପରେ ଟ୍ରେନ୍ ଚକ୍‌ର ଛନ୍ଦୋମୟ ଝଙ୍କାର ସଙ୍ଗେ ଅନ୍ଧକାର ବୁକୁରେ ଗୋଟିଏ ଆଲୋକର ମାଳା ଯେପରି ଝୁଲି ଝୁଲି, ଦୁଲି ଦୁଲି ଦୂରକୁ ଚାଲିଗଲା, ଦେଖିବାକୁ ପାଇଲେ ।

## କଲିକତାରୁ ପେଶାବାର ଓ କା ବ ଯାତ୍ରା

୧୯୪୧ ମସିହା ଜାନୁଆରୀ ୨୬ ତାରିଖ ଦିନ ସୁଭାଷ ଚନ୍ଦ୍ରଙ୍କ ଗୃହ ତ୍ୟାଗ ସମ୍ବାଦ ସର୍ବପ୍ରଥମେ ଭାରତ ବର୍ଷରେ ପ୍ରଚାରିତ ହୋଇଥିଲେ ମଧ୍ୟ, ସେ ପ୍ରକୃତରେ ଜାନୁଆରୀ

୧୬ ତାରିଖ ଗୁରୁବାର ଦିନ ମଧ୍ୟରାତ୍ର ପରେ ଏଲ୍‌ଗିନ୍ ରୋଡ୍ ବାସ ଭବନ ତ୍ୟାଗ-କରି ଜାନୁୟାରୀ ୧୭ ତାରିଖ ସକାଳ ସାଢ଼େ ଆଠଟା ସମୟରେ ବାରାରିରେ ପହଞ୍ଚିଥିଲେ । ଦିନ ତମାମ ସେଠାରେ ବିଶ୍ରାମ କରି ପୁଣି ସନ୍ଧ୍ୟା ସାଢେ ୮ଟାରେ ସେଠାରୁ ବାହାରି ଗୋମୋ ରେଳ ଷ୍ଟେସନକୁ ଯାଇଥିଲେ । ଉକ୍ତ ଦିନ ରାତି ସାଢ଼େ ୧୨ଟାରେ ଦିଲ୍ଲୀ-କାଲ୍‌କା ମେଲ୍ ଯୋଗେ ସେ ପେଶାୱାର ଅଭିମୁଖେ ଯାତ୍ରା କରିଥିଲେ । ଏଲଗିନ୍ ରୋଡ୍ ବାସ ଭବନରୁ ଗୋମୋ ରେଳ ଷ୍ଟେସନ ପର୍ଯ୍ୟନ୍ତ ସୁଭାଷ ଚନ୍ଦ୍ରଙ୍କୁ ଗାଡ଼ିରେ ବସାଇ ନିଜେ ଡ୍ରାଇଭିଂ କରି, ଯିଏ ଛାଡ଼ି ଆସିଥିଲେ, ସିଏ ହେଉଛନ୍ତି ତାଙ୍କର ଭ୍ରାତୃଷ୍ପୁତ୍ର ଡକ୍ଟର ଶିଶିର କୁମାର ବୋଷ । ଉପରୋକ୍ତ ସମସ୍ତ ଘଟଣା ଶ୍ରୀଯୁକ୍ତ ବୋଷଙ୍କ 'ମହାନିଷ୍କ୍ରମଣ' ବହିରେ ପ୍ରକାଶିତ ।

## ବୀମା କଂପାନୀ ଟ୍ରାଭେଲିଙ୍ଗ୍ ଇନସ୍‌ପେକ୍ଟର୍

୧୯୪୧ ଜାନୁୟାରୀ ୧୭, ଶୁକ୍ରବାର ମଧ୍ୟ ରାତିପରେ ଗୋମୋ ରେଳ ଷ୍ଟେସନରୁ ଦିଲ୍ଲୀ-କାଲ୍‌କା ମେଲ୍ ଯୋଗେ ସୁଭାଷ ଚନ୍ଦ୍ର ପେଶାୱାର ଯାତ୍ରା କରିଥିଲେ । ଟ୍ରେନ୍‌ରେ ରାତିଟା ବେଶ୍ ନିରାପଦରେ କଟିଥିଲା । ପରଦିନ ଜଣେ ଶିଖଯାତ୍ରୀ ସେହି ଡବାରେ ଉଠିଥିଲେ । ପରସ୍ପର କଥୋପକଥନ ପ୍ରସଙ୍ଗରେ ଶିଖ୍ ଭଦ୍ରବ୍ୟକ୍ତି ପରିଚୟ ବୁଝିଥିଲେ । ଛଦ୍ମବେଶୀ ପରିଚୟ ଛଳେ କହିଲେ ଯେ— ମୋର ନାମ ହେଉଛି ମହମ୍ମଦ ଜିଆଉଦ୍ଦିନ୍, ଘର ଲକ୍ଷ୍ନୌରେ । ମୁଁ ଏମ୍ପାୟାର୍ ବୀମା କମ୍ପାନୀର ଟ୍ରାଭେଲିଙ୍ଗ ଇନସ୍ପେକ୍ଟର, ବର୍ତ୍ତମାନ ରାଉଲପିଣ୍ଡି ଯାଉଛି ।” ସେ ଅବସ୍ଥାରେ ତାଙ୍କୁ ଚିହ୍ନିବା ଜଣେ ଡିଟେକ୍‌ଟିଭ୍ ପକ୍ଷେ ମଧ୍ୟ ଅସମ୍ଭବ ଥିଲା, ଯେହେତୁ ସେ ଜଣେ ଖାଣ୍ଟି ମୌଲବୀ ପରି ଦେଖା ଯାଉଥିଲେ । ଜାନୁୟାରୀ ୧୯ ତାରିଖ ରାତି ୯ଟା ବେଳେ ପେଶାୱାର ଷ୍ଟେସନରେ ପହଞ୍ଚିଥିଲେ । ଷ୍ଟେସନ ବାହାରେ ତାଙ୍କ ପାଇଁ ଅପେକ୍ଷା କରିଥିବା ଖଣ୍ଡେ ଗାଡ଼ିରେ ବସି, ପୂର୍ବ ନିର୍ଦ୍ଦିଷ୍ଟ ଯାଗାକୁ ଯାଇଥିଲେ ।

ସୁଭାଷ ଚନ୍ଦ୍ର ପେଶାୱାରରେ ପହଞ୍ଚିଲେ, ତାଙ୍କର ବିଶେଷ ନିରାପଦ ପାଇଁ, ବନ୍ଧୁଗଣ ଯଥେଷ୍ଟ ସୁବିଧା କରିଥିଲେ । ମୌଲବୀ ବେଶ ପରିବର୍ତ୍ତେ ସେଠାରେ ତାଙ୍କୁ ସୀମାନ୍ତ ପଠାଣ ପୋଷାକ ପିନ୍ଧିବାକୁ ପଡ଼ିଲା । ରହମତ୍ ଖାଁ, ଜିଆଉଦ୍ଦିନ୍ ଓ ଅନ୍ୟ ତିନି ଜଣ ବନ୍ଧୁଙ୍କ ସହ ମିଶି ପେଶାୱାର ତ୍ୟାଗ କରିବା ଠିକ୍ ହେଲା ।

## ଭାରତ ସୀମାନ୍ତ ଅତିକ୍ରମ

ପେଶାୱାରରୁ ପ୍ରଥମେ ମଟର ଯୋଗେ ବାହାରି ଜାମ୍‌ରୁଦ୍ କିଲ୍ଲା ଦେଇ ଯାଉଥିବା ସଡ଼କରେ ସେମାନେ ଗତି କଲେ । କିନ୍ତୁ ସେ ରାସ୍ତାରେ ବିପଦ

ସମ୍ଭାବନା ଜାଣି, ଅନ୍ୟ ଏକ ରାସ୍ତାଧରି 'ଗାର୍ଦ୍ଧି'ନାମକ ଗୋଟିଏ ପଠାଣ ଗ୍ରାମରେ ପହଞ୍ଚିଲେ । ସେଠାରେ ମଟର ରାସ୍ତା ପ୍ରାୟ ଶେଷ । ସୁତରାଂ ରାତିଟା ସେଠାରେ କଟାଇବାକୁ ପଡ଼ିଲା । ମୁରଜନ ରହମତ୍ ଖାଁ ଓ ଜ୍ୟାଉଦ୍ଦିନ ଦୁଇଜଣ ବନ୍ଧୁକଧାରୀ ପଠାଣ ଅଙ୍ଗରକ୍ଷୀ ସହ କାବୁଲ ଅଭିମୁଖେ ପଦଯାତ୍ରା ଆରମ୍ଭ କଲେ । ପେଶାୱାର ଠାରୁ ଗାଡ଼ି ନେଇ ଆସିଥିବା ଲୋକଟି ଗାର୍ଦ୍ଧି ଗ୍ରାମରୁ ପୁଣି ପେଶାୱାର ଫେରିଗଲେ । ପୂର୍ବ ନିର୍ଦ୍ଧାରିତ ଯୋଜନାରେ ସ୍ୱଚ୍ଛନ୍ଦଭାବେ ଏଥର ଜଡ଼ା ଓ ବଧିର ଅଭିନୟ କରି ଚାଲିବାକୁ ହେଲା । ପରଦିନ ସନ୍ଧ୍ୟା ସୁଦ୍ଧା ସେମାନେ ଭାରତ ସୀମା ପାର ହୋଇ 'ଅଫ୍ରିଡ଼ି' ନାମକ ଗୋଟିଏ ପଠାଣ ଗ୍ରାମରେ ପହଞ୍ଚିଲେ । ସେଠାରେ ଆଡ଼ାଶରୀଫ୍ ନାମକ ବିଖ୍ୟାତ ଦରଘାରେ, ଜଣେ ପୀର ବାସ କରୁଥିଲେ । ସେମାନଙ୍କର ରହି ଖାଇବା ପାଇଁ ସମସ୍ତ ବ୍ୟବସ୍ଥା ଆଗରୁ ସେଠାରେ ହୋଇଥିଲା । ଦିନ ସାରା ବିପଦ ସଙ୍କୁଳ ପଥରେ ଚାଲି ଚାଲି ଅତ୍ୟନ୍ତ କ୍ଳାନ୍ତ ହୋଇ ପଡ଼ିଥିଲେ । ପୀର୍ ସାହେବଙ୍କ ଦରଘାରେ ରାତିଟା ବେଶ୍ ଆରାମରେ କଟିଗଲା ।

## ଦୁର୍ଗମପଥ ଯାତ୍ରୀ

'ଗାର୍ଦ୍ଧି' ଗ୍ରାମରୁ ଯେଉଁ ଦୁଇଜଣ ସଶସ୍ତ୍ର ପଠାଣ ଆସିଥିଲେ, ସେମାନେ ଦରଘାରୁ ବିଦାୟ ନେଲେ । ପରଦିନ ପୁଣି ଅନ୍ୟ ତିନିଜଣ ବନ୍ଧୁକଧାରୀଙ୍କ ସଙ୍ଗରେ ବାହାରିଗଲେ । ଦେଖିଲେ ପଥ ବଡ଼ ଦୁର୍ଗମ, ବାଟରେ ବିଶ୍ରାମ କରି କରି ରାତି ୯ଟା ସମୟରେ 'ଲାଲପୁର' ନାମକ ଜାଗାରେ ପହଞ୍ଚିଲେ । ସେଠାରେ ମଧ୍ୟ ତାଙ୍କ ପାଇଁ ଆଗରୁ ସମସ୍ତ ବ୍ୟବସ୍ଥା ଠିକ୍ ହୋଇଥିଲା । ସେଠାରେ ଜଣେ ପ୍ରଭାବଶାଳୀ ଖାଁଙ୍କ ଆତିଥ୍ୟ ଗ୍ରହଣକରି, ରାତିଟା ସେଠାରେ କଟାଇଥିଲେ । ଖାଁ, ସେଠାକାର ଶାସନ କର୍ତ୍ତା ଥିଲେ । ଲାଲପୁର ତ୍ୟାଗ ପୂର୍ବରୁ, ଖାଁ ସାହେବ ସେମାନଙ୍କୁ ଫାରସୀ ଭାଷାରେ ଲିଖିତ ଖଣ୍ଡିଏ ପରିଚୟ ପତ୍ର ଦେଇଥିଲେ । ପତ୍ରରେ ଲେଖାଥିଲା "— ରହମତ୍ ଖାଁ ଓ ଜ୍ୟାଉଦ୍ଦିନ ଲାଲପୁର ଅଞ୍ଚଳର ଲୋକ । ସେମାନେ ସାଖୀ ସାହେବ ଦରଘାକୁ ଯାଉଛନ୍ତି । ମୁଁ ସେମାନଙ୍କ ଜାମିନ ରୂପେ ପରିଚୟ ପତ୍ର ଦେଉଛି, କେହି ଯେପରି ସେମାନଙ୍କୁ ହଇରାଣ ବା ବିପଦରେ ନ ପକାନ୍ତି ।"

ଏଥର କିଛି ଦୂର ଚାଲିବାପରେ ସେମାନେ କାବୁଲ ନଦୀ କୂଳରେ ପହଞ୍ଚିଗଲେ କିନ୍ତୁ ଲାଲପୁରରୁ ଯେଉଁ ଦୁଇଜଣ ସଶସ୍ତ୍ର ପ୍ରହରୀ ତାଙ୍କ ସହ ଆସିଥିଲେ ସେଠାରୁ ବିଦାୟ ନେଲେ । ନଦୀ ପାର ହେବା ସହଜ ନ'ଥିଲା । ସ୍ଥାନୀୟ ଲୋକେ ଚମଡ଼ା ଥଳିକ ଦୌଡ଼ିରେ ବାନ୍ଧି ତାହାରି ଉପରେ ନଦୀ ପାର ହୁଅନ୍ତି । ରହମତ୍ ଖାଁ ଓ ଜ୍ୟାଉଦ୍ଦିନ୍ ସେହିପରି ନଦୀ ପାର ହୋଇ ଅଫଗାନସ୍ଥାନରେ ପହଞ୍ଚିଲେ ।

ଜାମରୁଦ୍ ଦୁର୍ଗଠାରୁ କୁଲଣିଆ ରାସ୍ତାରେ ଭାରତ ସୀମାନ୍ତରେ ଥିବା ପ୍ରସିଦ୍ଧ ଡାକା ଘାଟିକୁ ଏଡ଼ାଇ ସେମାନେ ଦୁର୍ଗମ ପଥରେ ଚାଲିବାକୁ ଅଧିକ ଉଦ୍ଦନ ସମୟ ଲାଗିଥିଲା । ପେଶୱାର ଠାରୁ ୫୦ ମାଇଲ ଦୂରରେ ଡାକାଘାଟି ଅବସ୍ଥିତ, କାବୁଲ ଓ ପେଶାୱାର ମଧ୍ୟରେ ଯାତାୟାତ କରିବା ବ୍ୟକ୍ତିଙ୍କୁ, ଏହି ଘାଟିରେ ବାଣିଜ୍ୟ ଶୁଳ୍କ ଓ ପରିଚୟ ପତ୍ର ଦେବାକୁ ପଡ଼ିଥାଏ । ଜନାନୁମତରେ ଭାରତ ସୀମାନ୍ତ ଅତିକ୍ରମ କରିବା ବ୍ୟକ୍ତି, ସେଠାରେ ଧରା ପଡ଼ିଯିବା ଯଥେଷ୍ଟ ସମ୍ଭାବନା ଥାଏ । ପ୍ରାୟ ତିନି ଜାଗାରେ ଗୁପ୍ତଚର ପରୀକ୍ଷା ହୁଏ । ଏଣୁ ବାଧ୍ୟ ହୋଇ ସେମାନେ ସେହି ରାସ୍ତା ତ୍ୟାଗକରି ବୁଲି ବୁଲି ଯାଇଥିଲେ ।

କାବୁଲ ନଦୀ ପାର ହୋଇ ସେମାନେ 'ଠାଣ୍ଡି' ନାମକ ଯାଗାରେ ପହଞ୍ଚି, ବସ୍ ଅପେକ୍ଷାରେ ରହିଲେ । ଦୀର୍ଘ ସମୟ ପରେ ଖଣ୍ଡିଏ ଲରି ଆସିବାରୁ ରହମତ୍ ଖାଁ ହାତମାରି ରଖିଲେ । କିନ୍ତୁ ଲରିଟା କମଳା ପେଟିରେ ପରିପୂର୍ଣ୍ଣ, ତଥାପି କୌଣସି ମତେ ସେଥିରେ ଯିବାକୁ ହେବ, ଅଥଚ ବସିବାପାଇଁ ଟିକିଏ ଯାଗା ନାହିଁ । ଅଗତ୍ୟା ଲରି ଉପରକୁ ଉଠି ଗୋଟିଏ ବାକ୍ସ ଉପରେ ବସିଲେ । ଭୀଷଣ ଶୀତ ରାତି, ପୁଣି ଚତୁର୍ଦ୍ଦିଗରେ ଅବିଶ୍ରାନ୍ତ ବରଫ ବୃଷ୍ଟି । ଖୋଲା ମଇଦାନ ଭିତରେ ଟ୍ରକ ଚାଲିଥିଲା । ଅସହ୍ୟ ଶୀତରୁ ଦେହ ରକ୍ଷାପାଇଁ ଶୀତ ବସ୍ତ୍ରର ଅଭାବ, ଏପରିକି ବରଫ ମାଡ଼ରେ ଆଖିପତା ମଧ୍ୟ ଖୋଲେ ନାହିଁ । ରାତି ତମାମ ଏହିଭଳି ଲରି ଉପରେ ବସି, ପରଦିନ ସେମାନେ 'ବାଟଘାକ' ନାମକ ଯାଗାରେ ପହଞ୍ଚିଥିଲେ । ସେଠାରେ ପୁଲିସ-ପହ ଯାଞ୍ଚ ହେଉଥାଏ । ରହମତ୍ ଖାଁ ଜିଆଉଦ୍ଦିନଙ୍କୁ ଦେଖାଇ ଉତ୍ତର ଦେଉଥିଲେ ଯେ— ଏ ହେଉଛନ୍ତି ମୋର ବଡ଼ ଭାଇ, ଜନ୍ମରୁ କାଲା ଓ ବଧିର । ତାଙ୍କୁ ମୁଁ ସାଖୀ ସାହେବଙ୍କ ଦରଗାକୁ ନେଇ ଯାଉଛି । ଆମେ ସ୍ୱାଧୀନ ପାର୍ବତ୍ୟ ଅଞ୍ଚଳର ନିବାସୀ, ଏହା କହି, ଲାଲପୁରା ଖାଁ ସାହେବଙ୍କ ପ୍ରଦତ୍ତ ପରିଚୟ ପତ୍ରଟି ଦେଖାଇବାରୁ ପ୍ରଶ୍ନକର୍ତ୍ତା ଚୁପ ହୋଇଯାଉଥିଲେ ।

ଦୀର୍ଘ ଓ ଦୁର୍ଗମ ବରଫ ବର୍ଷଣ ଶୀତପଥ ଅତିକ୍ରମ କରି ପରିଶେଷରେ ସୁଭାଷ ଚନ୍ଦ୍ର ଓ ଭଗତରାମ ଆଫଗାନିସ୍ଥାନର ରାଜଧାନୀ କାବୁଲ ସହରରେ ପହଞ୍ଚିଲେ । କିନ୍ତୁ କାବୁଲ ତାଙ୍କପାଇଁ ସମ୍ପୂର୍ଣ୍ଣ ଅପରିଚିତ ଓ ଅଜ୍ଞାତ ପୁରୀ ଥିଲା । ସାଥୀ ରହମତ୍ ଖାଁଙ୍କ ଛଡ଼ା, ସେଠାରେ ତାଙ୍କର ଅନ୍ୟ କେହି ହେଲେ ଜଣେ ଚିହ୍ନା ପରିଚିତ ବ୍ୟକ୍ତି ନଥିଲେ । ତଥାପି ସେ ଧୈର୍ଯ୍ୟ ନ ହରାଇ ସମସ୍ତ ବାଧା ବିଘ୍ନକୁ ସହାସ୍ୟ ବଦନରେ ବରଣକରି ଭାରତ ତ୍ୟାଗର ଉଦ୍ଦେଶ୍ୟ ସଫଳ କରିବା ତାଙ୍କର ଚରମ ଲକ୍ଷ୍ୟ ଥିଲା । ଏଣୁ ସେ ମାତୃଭୂମିର ସ୍ୱାଧୀନତା ସ୍ୱପ୍ନରେ ବିଭୋର ଥିଲେ । ଏଲଗୀନ୍ ରୋଡ଼ର ବିଶାଳ ପ୍ରାସାଦ କକ୍ଷ ଅଧିବାସୀ, ଆଇ. ସି. ଏସ୍.ର ଭୂତପୂର୍ବ ସଭ୍ୟ

ଓ ଭାରତ ଜାତୀୟ କଂଗ୍ରେସର ଥରେ ଯେ ରାଷ୍ଟ୍ରପତି ଆସନ ଅଳଂକୃତ କରିଥିଲେ, ସେ ସମସ୍ତ ଭୁଲିଯାଇ—ଅଫ୍‌ଗାନିସ୍ଥାନର ବରଫ ବୃତ୍ତ ଭୂ-ଖଣ୍ଡରେ, ଜଣେ ଛଦ୍ମବେଶି ପଳାତକ ଭାବେ ନିଜକୁ କେତେ ଗୌରବାନ୍ୱିତ ମନେ କରୁଥିଲେ । ଏଣୁ ଆଫ୍‌ଗାନିସ୍ଥାନରୁ କୌଣସି ମତେ ଶୀଘ୍ର ସେ ମସ୍କୋ, ରୋମ୍, ବା ବର୍ଲିନ୍ ଯିବାପାଇଁ ଚେଷ୍ଟା କରିଥିଲେ ।

## ରୁଷ ଦୂତାବାସ ସହିତ ସଂପର୍କ

ରହମତ୍ ଖାଁ ଓ ଜ୍ୟାଉଦ୍ଦିନ୍ କାବୁଲରେ ପହଞ୍ଚିବା ପରେ, ଗୋଟିଏ ସରାଇଖାନାର ଆଶ୍ରୟ ନେଲେ । ଯାଗାଟା ଅତ୍ୟନ୍ତ ଅପରିଷ୍କାର ଅପରିଚ୍ଛନ୍ନ । ଗୋଟିଏ ଘରରେ ଓଟ ଲେଣ୍ଡିର ଦୁର୍ଗନ୍ଧ, ଆବର୍ଜନା ପରିପୂର୍ଣ୍ଣ । ଅତ୍ୟା ସେହି ଅନ୍ଧକାର ପ୍ରକୋଷ୍ଠରେ ରହି ଦିନରାତି ଜଣ୍ଡା, ବଧିର ଅଭିନୟ କରିବା ସଙ୍ଗେ ସଙ୍ଗେ ଚେଣେ ରୁଷ ଦୂତାବାସ ସହ ସଂଯୋଗ ସ୍ଥାପନ ପାଇଁ ଚେଷ୍ଟା ଚଳାଇଲେ । ଦିନେ ସୁଭାଷ ବାବୁ ଓ ଭଗତ ରାମ ଉଭୟେ ସାରାଦିନ ରୁଷ ଦୂତାବାସ ଅଫିସ ସାମନାରେ ଜଗିରହି ଶେଷରେ ରୁଷ ରାଜଦୂତ ସଙ୍ଗେ ମିଳିଥିଲେ । ରହମତ୍ ଖାଁ ଭଙ୍ଗା ଭଙ୍ଗା ପାରସୀ ଭାଷାରେ, ସୁଭାଷ ଚନ୍ଦ୍ର ଛଦ୍ମବେଶରେ ଅଫ୍‌ଗାନିସ୍ଥାନରେ ରହିଥିବା କଥା ଏବଂ ସେ ମସ୍କୋ ଯିବାପାଇଁ ତାଙ୍କୁ ସାହାଯ୍ୟ କରିପାରିବେ କି ନାହିଁ ପଚାରି ବୁଝିଥିଲେ । କିନ୍ତୁ ରୁଷ ଦୂତଙ୍କ ଉତ୍ତର ଘୋର ନୈରାଶ୍ୟ ଜନକ ଥିଲା । ସେ କହିଲେ ଯେ— ସୁଭାଷ ଚନ୍ଦ୍ରଙ୍କୁ ମୁଁ ନିଜେ ଚିହ୍ନେ ନାହିଁ । ଯାହାକୁ ସୁଭାଷ ଚନ୍ଦ୍ର ବୋଲି କୁହାଯାଉଛି ପ୍ରକୃତରେ ତାର ପ୍ରମାଣ ଦେବ କିଏ ?

ସେଦିନ ରୁଷ ରାଜ ଦୂତଙ୍କ ପ୍ରଶ୍ନର କୌଣସି ବୋଧଗମ୍ୟ ଉତ୍ତର ଦେଇ ନ'ପାରି ରହମତ୍ ଖାଁ ଓ ଜ୍ୟାଉଦ୍ଦିନ ମନ ଦୁଃଖରେ ଫେରି ଆସିଲେ । ଏଥିରେ ସୁଭାଷ ବାବୁଙ୍କ ମନ ଏକ ପ୍ରକାର ଭାଙ୍ଗି ପଡ଼ିଥିଲା । ପରମୁହୂର୍ତ୍ତରେ ସେ ଧୈର୍ଯ୍ୟସହ ଉପାୟ ଚିନ୍ତାକରି ତାଙ୍କର ଏହି ସବୁ ଅସୁବିଧା କଥା ପେଶୋଵାରସ୍ଥ ବନ୍ଧୁମାନଙ୍କୁ ଜଣାଇବାପାଇଁ ସ୍ଥିରକଲେ । କାରଣ ରୁଷ ଦୂତାବାସର କର୍ମଚାରୀଙ୍କ ସହିତ ଘନିଷ୍ଠ ପରିଚୟ ଲାଭକରିଥିବା ଏବଂ ପାରସୀ ଓ ରୁଷ ଭାଷାରେ ଅଭିଜ୍ଞତା ଥିବା ଜଣେ ଲୋକକୁ ପଠାଇଲେ ତାଙ୍କର କାର୍ଯ୍ୟ ଶୀଘ୍ର ହୁଅନ୍ତା । ଏଣୁ ରହମତ୍ ଖାଁଙ୍କ ଚେଷ୍ଟାରେ ଜଣେ ଲରି ଡ୍ରାଇଭର ହାତରେ ପେଶୋଵାରକୁ ପତ୍ର ପଠାଇବା ସ୍ଥିର କରି, ଦୁହେଁ ଘୋର ଦୁଃଖିତ ମନରେ ସେଦିନ ସରାଇଖାନାକୁ ଫେରି ଆସିଥିଲେ ।

## ଅଫଗାନୀ ପୁଲିସ୍‌ର ଜୁଲମ୍

ଏଠାରେ ଉଲ୍ଲେଖ ଯୋଗ୍ୟ ଘଟଣା ଯେ, ୧୯୪୧ ଜାନୁଆରୀ ୨୭ ତାରିଖ ଦିନ ସୁଭାଷ ଚନ୍ଦ୍ର ଓ ଭଗତ ରାମ 'ଲହୋରୀ ଦରଜା' ଠାରେ ଲରିରୁ ଓହ୍ଲାଇ

କୌଣସି ମତେ ଗୋଟିଏ ସରାଇ ଆବିଷ୍କାର କରିଥିଲେ । ସେଇଠିକି ବହୁତ ଓଟ ଓ ଘୋଡ଼ା ବନ୍ଧା ହୋଇ ରହନ୍ତି । ସେହି ସରାଇରେ ଗୋଟିଏ କ୍ଷୁଦ୍ର କୋଠରୀ ଓ ଦୁଇଟି ଛେଣ୍ଡ ଖଟିଆ ସଂଗ୍ରହ କରି ଦିନକୁ ୨ ଟଙ୍କା ଭଡ଼ାରେ ଜାନୁୟାରୀ ୨୫ ଠାରୁ ଫେବୃୟାରୀ ୩ ତାରିଖ ପର୍ଯ୍ୟନ୍ତ ସେଠାରେ ଆଶ୍ରୟ ଗ୍ରହଣ କରି ରହିଥିଲେ ।

ରହମତ୍ ଖାଁ ରୁଟି କିଣିବା ପାଇଁ ଯେଉଁ ଦୋକାନକୁ ଯାଉଥିଲେ, ସେହି ଦୋକାନରେ ଜଣେ ସାଧା ପୋଷାକଧାରୀ ଅଫ୍‌ଗାନସ୍ଥାନ ଗୁଇନ୍ଦା କନେଷ୍ଟବଲ, ରହମତ୍ ଖାଁଙ୍କୁ ବିଦେଶୀ ସନ୍ଦେହ କରି ପିଛା ଧରିଲା ଏବଂ ସରାଇ ଭିତରକୁ ଆସି ପୁସ୍ତୁ ଭାଷାରେ ଧମକ ଚମକ ଦେଖାଇ ପଚାରିଲା—"ତୁମେ ଦୁହେଁ କିଏ ? କେଉଁଠାରୁ ଆସି ଏଠାରେ ରହିଛ ?"

ରହମତ୍ ଖାଁ ତାର ଜବାବ ଦେଇ କହିଥିଲେ—ଆମେ ଦୁହେଁ ମୁସାଫିର୍ । ଅଫଗାନ-ଭାରତ ପାହାଡ଼ିଆ ଅଞ୍ଚଳରୁ ଆସିଛୁ । ସେ ହେଉଛନ୍ତି ମୋର ବଡ଼ ଭାଇ । ସେ ସମ୍ପୂର୍ଣ୍ଣ କଲା ଓ ବଧିର । ଏଣୁ ତାଙ୍କୁ ନେଇ ମୁଁ ହାଜୀ ସାହେବଙ୍କ ଦରବାରକୁ ଯିବି । ବରଫ ପଡ଼ୁଥିବା ଯୋଗୁଁ, ରାସ୍ତା ବନ୍ଦ ଅଛି, ରାସ୍ତା ଖୋଲିଲେ ଆମେ ଏଠାରୁ ଚାଲିଯିବୁ ।

କନେଷ୍ଟବଲ ରହମତ୍ ଖାଁଙ୍କ କଥାରେ କର୍ଣ୍ଣପାତ ନକରି ରୁକ୍ଷ ଭାଷାରେ କହିଲା— ଏସବୁ ବାଜେ କଥା ଛାଡ଼ ମୋ ସାଙ୍ଗରେ ଥାନାକୁ ଚାଲ, ସେଠାରେ ସବୁ କଥା ଜଣାପଡ଼ିବ ।

ଏହି ସବୁ ଉପଦ୍ରବରୁ ରକ୍ଷା ପାଇବାପାଇଁ ସୁଭାଷ ବାବୁ ସରାଇ ଛାଡ଼ି ଅନ୍ୟତ୍ର ଚାଲିଯିବାପାଇଁ ସ୍ଥିର କରି, ରହମତ୍ ଖାଁଙ୍କୁ କହିଲେ ଯେ— "ଅନ୍ୟ ଆଶ୍ରୟସ୍ଥଳ ଅନୁସନ୍ଧାନ କର ।" ରହମତ୍ ଖାଁ ଆଗରୁ ଜାଣିଥିଲେ ଯେ ତାଙ୍କର ପୂର୍ବ ପରିଚିତ ଜଣେ ବନ୍ଧୁ କାବୁଲରେ ରହି ବ୍ୟବସାୟ କରୁଛନ୍ତି । ବର୍ତ୍ତମାନ ତାଙ୍କୁ ଖୋଜି ବାହାର କରିବାକୁ ହେବ ।

## ଇଟାଲୀୟ ରାଜଦୂତଙ୍କ ସହ ସମ୍ପର୍କ ସ୍ଥାପନ

ଏ ମଧ୍ୟରେ ରୁଷ ଦୂତାବାସର ନୈରାଶ୍ୟଜନକ କଥା ଶୁଣି ସୁଭାଷ ବାବୁ ଭାବିଲେ ଯେ, ସେଣାବାର ବନ୍ଧୁମାନଙ୍କ ଠାରୁ ଉଚିତ ଉତ୍ତର ଅପେକ୍ଷା ନ'କରି ଯଦି ଇଟାଲୀୟ ରାଜ ଦୂତଙ୍କ ସହ କୌଣସିମତେ ଯୋଗାଯୋଗ ସ୍ଥାପନ ହୋଇ ପାରିବ ତା ହେଲେ ମନ୍ଦ କ'ଣ ? ଏଣୁ ସେ ଇଟାଲୀୟ ଦୂତାବାସ ଭବନଟି କେଉଁଠି ଅଛି, ତାହା ଠିକ୍ କରି, ଦିନେ ରହମତ୍ ଖାଁ ଦୂତାବାସର

ଘାତପ୍ରାପ୍ତ କର୍ମଚାରୀଙ୍କ ସହିତ ଦେଖା କରିବାକୁ ଗଲେ । ଦ୍ୱାର ଦେଶରେ ଆଫ୍‌ଗାନୀ ପୁଲିସ୍ ତାଙ୍କୁ ବାଧା ଦେବାରୁ, ରହମତ୍ ଖାଁ ନିଜକୁ ଜାପାନୀ ଦୂତାବାସର ଜଣେ ଚୌକିଦାର ବୋଲି ପରିଚୟ ଦେଇ ଭିତରେ ପ୍ରବେଶ କରିଗଲେ । ଘାତପ୍ରାପ୍ତ କର୍ମଚାରୀଙ୍କ ନାମ ଥିଲା ସେନୋର୍ କାରୋନି, ରହମତ୍ ଖାଁ ସୁଭାଷ ଚନ୍ଦ୍ରଙ୍କ ସମ୍ପର୍କରେ ସମସ୍ତ କଥା ଖୋଲି ତାଙ୍କୁ ଜଣାଇଲେ । ସେନୋର୍ କାରୋନି ଏହା ଶୁଣି ଅତ୍ୟନ୍ତ ଆନନ୍ଦିତ ହୋଇ ରହମତ୍ ଖାଁଙ୍କୁ କହିଲେ ଯେ,—"ଆଜି ହିଁ ରୋମ ଓ ବର୍ଲିନକୁ ଖବର ପଠାଇ ଯେତେ ଶୀଘ୍ର ସମ୍ଭବ ଗ୍ରୁଣ୍ଡଟେନ୍ ଅଣାଇ ଏଠାରୁ ସୁଭାଷ ବାବୁଙ୍କୁ ପଠାଇବା ବ୍ୟବସ୍ଥା ସେ କରିବେ ।"

## ଜର୍ମାନ୍ ବ୍ୟବସାୟୀ ହେରଟମାସ

କାରୋନିଙ୍କ ସଙ୍ଗେ ମିଶିବା ପରେ ରହମତ୍ ଖାଁ ଦୂତାବାସ ଭିତରକୁ ଆସି ଖବର ନେବା କେତେ ଅସୁବିଧା ଅଛି ତାହା ଜଣାଇଥିଲେ । ସେ ନୋର୍ କାରୋନି ରହମତ୍ ଖାଁଙ୍କୁ କହିଲେ ଯେ,—"ହେର୍‌ଟମାସ ନାମକ ଜଣେ ଜର୍ମାନ ବ୍ୟବସାୟୀ ପ୍ରତିନିଧିଙ୍କ ବାସଭବନକୁ ଆସି ଖବର ନେବ, ଦୁଇଦିନ ଭିତରେ ରୋମ କିମ୍ବା ବର୍ଲିନରୁ ଖବର ଆସିଯିବା ସମ୍ଭାବନା । ସୁତରାଂ ଆପଣ ତିନିଦିନ ପରେ ହେର୍‌ଟମାସଙ୍କ ଘରକୁ ଆସି ଖବର ବୁଝି ନେବେ ।

ଆଫଗାନିସ୍ତାନରେ ସେତେବେଳେ ବହୁ ଜର୍ମାନ ବିଭିନ୍ନ ପ୍ରକାର ବ୍ୟବସାୟ ଆଦି ଛଳନାରେ ବାସ କରୁଥିଲେ । କିନ୍ତୁ ପ୍ରକୃତରେ ସେମାନେ ସବୁ ଜର୍ମାନ କୂଟନୀତିକ ବିଭାଗରେ କାର୍ଯ୍ୟ କରୁଥିଲେ । ସେହିପରି ହେର୍‌ଟମାସ ମଧ୍ୟ କୂଟନୀତିକ ବିଭାଗର ଜଣେ ବିଶିଷ୍ଟ କର୍ମଚାରୀ ଥାଇ, ଏଣେ ଆଫଗାନିସ୍ତାନର ବହୁ ଜର୍ମାନ ବ୍ୟବସାୟ ପ୍ରତିଷ୍ଠାନର ପ୍ରତିନିଧିଭାବେ ବିଭିନ୍ନ କାରବାରରେ ବେଶ ଜଡ଼ିତ ଥିଲେ ।

## ଆଶ୍ରୟଦାତା ଉତ୍ତମଚାନ୍ଦ

ସୁଭାଷବାବୁ ଇଟାଲୀୟ ଦୂତାବାସରୁ ସାହାଯ୍ୟ ପ୍ରତିଶ୍ରୁତି ପାଇଥିଲେ ମଧ୍ୟ ସରାଇରେ ରହିବା ତାଙ୍କ ପକ୍ଷେ ଆଉ ସମ୍ଭବ ନଥିଲା । କିନ୍ତୁ ପ୍ରଶ୍ନ ହେଲା ସେ କେଉଁଠିକି ଯିବେ ? ରହମତ୍ ଖାଁଙ୍କ ଜଣେ ବନ୍ଧୁ କାବୁଲରେ ରହି ବ୍ୟବସାୟ କରୁଛନ୍ତି, ସେଠାକୁ ଯିବା କଥା କହିବାରୁ ସେ ସେଥିରେ ସନ୍ଦେହ ପ୍ରକାଶ କଲେ । କାରଣ ସେଠାକୁ ଯାଇ ରହିଲେ ଗିରଫ ହେବା ଆଶଙ୍କା ତାଙ୍କୁ ବିବ୍ରତ କଲା । ଯାହାହେଉ ଶେଷକୁ ରହମତ୍ ଖାଁଙ୍କ ବନ୍ଧୁଙ୍କଠାରେ ଆଶ୍ରୟ ନେବା ସ୍ଥିର ହେଲା । ଦିନେ ବହୁ କଷ୍ଟରେ ଖୋଜି ଖୋଜି ରହମତ୍ ଖାଁ ତାଙ୍କ ବନ୍ଧୁଙ୍କୁ ଆବିଷ୍କାର କଲେ । ବନ୍ଧୁ ଜଣଙ୍କ କାବୁଲ ସହର ହିନ୍ଦୁଗୁଜରର ଅଧିବାସୀ ଏବଂ ବେପାର

ବ୍ୟବସାୟ ଦ୍ୱାରେ ଲକ୍ଷାଧିକ ଟଙ୍କାର ମାଲିକ ହୋଇ ପାରିଛନ୍ତି । ରହମତ୍ ଖାଁଙ୍କ ପୂର୍ବ ପରିଚିତ ଏହି ବନ୍ଧୁ ଜଣଙ୍କର ପ୍ରକୃତ ନାମ ହେଉଛି ଉତ୍ତମ ଚାନ୍ଦ ମାଲହୋତ୍ରା ।

୧୯୪୧ ଫେବୃୟାରୀ ମାସର ପ୍ରଚଣ୍ଡ ହାଡ଼ ଭଙ୍ଗା ଶୀତ ସକାଳ । କାବୁଲ୍ ନଗରୀର ରାଜପଥ ଜନମାନବ ଶୂନ୍ୟ । କିନ୍ତୁ ଉତ୍ତମ ଚାନ୍ଦ ସକାଳୁ ଉଠି ଭାରତରୁ ଆସିଥିବା କେତେକ ଖବର କାଗଜ ଦେଖିବାରେ ବ୍ୟସ୍ତ । ଅଳ୍ପଦିନ ତଳେ ସୁଭାଷ ଚନ୍ଦ୍ରଙ୍କ ଅନ୍ତର୍ଦ୍ଧାନ, ସାଧୁବେଶରେ ହରଦ୍ୱାର ଠାରେ ଗିରଫ ହେବା, ପୁଣି ରେଡିଓ ଘୋଷଣାରେ ତାହା ମିଥ୍ୟା ପ୍ରମାଣିତ ହେବା କଥା ସବୁ ଶୁଣିଥିଲେ । କିନ୍ତୁ ସେଦିନ ତାଜାଖବର ଥିଲା, ଫର୍‌ୱାର୍ଡ ବ୍ଲକ ପ୍ରତିଷ୍ଠାନର ସଭାପତି ସର୍ଦ୍ଦାର ଶାର୍ଦ୍ଦୁଳ ସିଂ କଭିଶ୍ୱରଙ୍କ ଏକ ବିବୃତି—''ମୋର ମନେ ହୁଏ, ସୁଭାଷ ଚନ୍ଦ୍ର ସାଧୁ ହୋଇ ଦକ୍ଷିଣ ଭାରତର କୌଣସି ତୀର୍ଥ ସ୍ଥାନରେ ରହିଛନ୍ତି ।'' ବିବୃତିଟି ପଢ଼ି ଉତ୍ତମଚାନ୍ଦ ଖୁବ୍ ନିରାଶ ହୋଇଥିଲେ ।

ଠିକ୍ ଏତିକିବେଳେ ଜଣେ ଶେଣାବାଣୀ ପୋଷାକରେ ସଜ୍ଜିତ ମୁସଲମାନ୍ ଭଦ୍ରବ୍ୟକ୍ତି ଆଗରେ ଠିଆ ହୋଇ 'ସଲାମ୍‌ଆଲାଇକୁମ୍' କହିଲେ । ଆଗନ୍ତୁକ କ'ଣ କହିବାକୁ ଯାଉଥିଲେ, କିନ୍ତୁ ଉତ୍ତମଚାନ୍ଦଙ୍କ ଚାକର ଅମରନାଥ ଥିବାରୁ କିଛି ନ'କହି ଚୁପ୍ ହେଲେ । ଉତ୍ତମ ଚାନ୍ଦ ବୁଝିପାରି ଚାକରକୁ ଚାହା ଆଣିବା ପାଇଁ ପଠାଇ ଦେଇ ଆଗନ୍ତୁକଙ୍କୁ ପଚାରିଲେ—''କହନ୍ତୁ ଆପଣଙ୍କ ପାଇଁ ମୁଁ କି ସେବା କରିପାରେ ?'' ଅତି ନମ୍ର ସ୍ୱରରେ ଆଗନ୍ତୁକ ପଚାରିଲେ—''ଆପଣଙ୍କ ନାମ କ'ଣ ଉତ୍ତମ ଚାନ୍ଦ ?''

ଏ ପ୍ରଶ୍ନ ଶୁଣି ଉତ୍ତମ ଚାନ୍ଦ ଆଶ୍ଚର୍ଯ୍ୟାନ୍ୱିତ ହେଲେ ଏବଂ ପର ମୁହୂର୍ତ୍ତରେ ଜାଣିପାରିଲେ ଯେ, ଆଗନ୍ତୁକ ଜଣେ ଭାରତବାସୀ ଏବଂ ରାଜନୈତିକ ଉଦ୍ଦେଶ୍ୟରେ ଆସି ତାଙ୍କର ସେ ସାହାଯ୍ୟ ପ୍ରାର୍ଥୀ ହୋଇଛନ୍ତି ।

ଆଗନ୍ତୁକଙ୍କ ସହ ଆଲୋଚନା ପରେ ଜଣାଗଲା ଯେ, କେବଳ ଭାରତବାସୀ ନୁହନ୍ତି; ଉତ୍ତମଚାନ୍ଦ—ଖାସ୍ ସେ ଜଣେ ବନ୍ଧୁ । 'ଭାରତ ନଓଜୀବନ ସଙ୍ଘ'ର ଉତ୍ତମ ଚାନ୍ଦ ସମ୍ପାଦକ ଥିଲାବେଳେ ଆଗନ୍ତୁକ ମଧ୍ୟ ସେଥିର ଜଣେ ସଭ୍ୟ ଥିଲେ । ବହୁଦିନ ପରେ ବାଲ୍ୟବନ୍ଧୁଙ୍କ ସାକ୍ଷାତରେ ଆନନ୍ଦିତ ହୋଇ ଉତ୍ତମ ଚାନ୍ଦ ଭଗତ-ରାମଙ୍କୁ କୁଣ୍ଢାଇ ପକାଇଲେ । ଯେଉଁ ସୁଭାଷ ଚନ୍ଦ୍ରଙ୍କ କଥା ଜାଣିବା ପାଇଁ ସେ କିଛି କ୍ଷଣ ପୂର୍ବେ ଖବର-କାଗଜ ପଢ଼ୁଥିଲେ, ବନ୍ଧୁ ଭଗତରାମ ସେହି ସୁଭାଷଙ୍କୁ ସଙ୍ଗରେ ନେଇ କାବୁଲ ଆସିଛନ୍ତି । ଖାଲି ସେତିକି ନୁହେଁ, ଭଗତରାମଙ୍କ ଜରିଆରେ ସ୍ୱୟଂ ସୁଭାଷ ଚନ୍ଦ୍ର ଆଜି ଉତ୍ତମ ଚାନ୍ଦଙ୍କ ଆଶ୍ରୟ ପ୍ରାର୍ଥୀ ।

ଏକଥା ଜାଣିବା ପରେ ଉତ୍ତମ ଚାନ୍ଦଙ୍କ ଶରୀର ଏକ ଅପୂର୍ବ ଆନନ୍ଦରେ ରୋମାଞ୍ଚିତ ହୋଇଉଠିଲା । ସେ ଯେପରି ଏକ ସ୍ୱପ୍ନ ରାଜ୍ୟରେ ବିଚରଣ କରୁଛନ୍ତି ।

ଭଗତରାମ ସେଦିନ ଉତ୍ତମ ଚାନ୍ଦଙ୍କ ସଙ୍ଗେ ଆଲୋଚନା କରି ଅପରାହ୍ଣ ୪ ଟାରେ ଆସିବେ କହି ଚାଲିଗଲେ । କିନ୍ତୁ ଉତ୍ତମ ଚାନ୍ଦଙ୍କ ମନରେ ନାନା ଚିନ୍ତା ଉଦ୍ରେକ ହେଲା । ସୁଭାଷ ଚନ୍ଦ୍ର ପରି ବିରାଟ ବ୍ୟକ୍ତିଙ୍କୁ ସାହାଯ୍ୟ ଦେବା ତାଙ୍କ ପକ୍ଷେ ସମ୍ଭବ କି'ନା ସେ ଭାବିଲେ । କାରଣ ଇଂରେଜ ଗୁଇନ୍ଦା ଦଳ ତାଙ୍କ ପିଚ୍ଛାଧରି ନିଶ୍ଚୟ ଆସିଥିବେ ଏବଂ ଶେଷ ସୁଦ୍ଧା ନିଜେ ସେ ଜଡ଼ିତ ହୋଇପଡ଼ିବେ ବୋଲି ମନରେ ଆଶଙ୍କା ହେଲା । ତେବେ ହାଜୀ ସାହେବ ନାମକ ସ୍ଥାନୀୟ ଜଣେ ବନ୍ଧୁ ଉପରେ ତାଙ୍କର ଭରସା ଥିଲା । ସେ ଜଣେ ଭାରତୀୟ ମୁସଲମାନ୍ । ପ୍ରଥମ ବିଶ୍ୱ ଯୁଦ୍ଧରେ ସୈନ୍ୟ ବିଭାଗରେ ଯୋଗ ଦେଇଥିଲେ । ଅବସର ପରେ ଜଣେ ଜର୍ମାନ୍ ମହିଳାଙ୍କୁ ବିବାହ କରି, କାବୁଲରେ ଗୋଟିଏ ମୋଜା-ଗେଞ୍ଜି କାରଖାନା ଖୋଲି, ବସବାସ କରିଥିଲେ । ଭାରତରୁ ସୁଭାଷ ଚନ୍ଦ୍ରଙ୍କ ଅନ୍ତର୍ଦ୍ଧାନ ସମ୍ପର୍କରେ ଉତ୍ତମ ଚାନ୍ଦଙ୍କୁ ପ୍ରଚୁର ଖବର ବୁଝୁଥିଲେ । ସ୍ୱଭାବତଃ ସେ ଘୋର ଇଂରେଜ ବିରୋଧୀ । ଭାରତକୁ ନଯାଇ କାବୁଲରେ ରହିବା ତାଙ୍କର ଇଚ୍ଛା ।

## ହାଜୀ ସାହେବଙ୍କ କଥା

ରହମତ୍ ଖାଁ ଚାଲିଯିବା ପରେ, ଉତ୍ତମ ଚାନ୍ଦ ଦୋକାନ ବନ୍ଦ କରି ହାଜୀ ସାହେବଙ୍କ ଘରକୁ ଗଲେ । ସମସ୍ତ ବିଷୟ ନ'କହି, କେବଳ ଏତିକି କହିଲେ ଯେ, ଭାରତରୁ ଗୁପ୍ତଭାବେ କେତେ ଜଣ ରାଜନୈତିକ ଉଦ୍ଦେଶ୍ୟରେ କାବୁଲ୍ ଆସିଛନ୍ତି । ସେମାନଙ୍କୁ ସାହାଯ୍ୟ ଦେବା ସମ୍ବନ୍ଧରେ ଆପଣଙ୍କର ମତାମତ କ'ଣ ?

କଥା ଶୁଣି ହାଜୀ ସାହେବ ରାଗି ଉଠିଲେ । ନିଜ ଅଭିଜ୍ଞତା ବର୍ଣ୍ଣନା କରି ସେ କହିଲେ, ଅତୀତରେ ସେ ବହୁ ଭାରତୀୟଙ୍କୁ ସାହାଯ୍ୟ କରି ଫଳ କିଛି ହୋଇନାହିଁ ବରଂ ନିଜେ ସେ ଅଧିକ ବିପଦଗ୍ରସ୍ତ ହୋଇଛନ୍ତି । ଆଶ୍ରୟ ପ୍ରାର୍ଥୀଙ୍କ ସମ୍ବନ୍ଧେ ସନ୍ଦେହ ପ୍ରକାଶ କରି ସେ ସଫା କହିଲେ ଯେ—"ବୃଦ୍ଧ ବୟସରେ ଆଉ ରାଜନୈତିକ ଘଟଣାରେ ସମ୍ପୃକ୍ତ ହେବା ତାଙ୍କର ଇଚ୍ଛା ନାହିଁ ।"

ବନ୍ଧୁମାନଙ୍କ ଉପରେ ହାଜୀ ସାହେବ ସନ୍ଦେହ କରିବାରୁ, ଉତ୍ତମ ଚାନ୍ଦ ତାଙ୍କୁ ତିରସ୍କାର କଲେ । ଶେଷକୁ ଆଲୋଚନା ପରେ ଠିକ୍ ହେଲା, ଯଦି କୌଣସି ବିଶିଷ୍ଟ ଭାରତୀୟ ଆସିଥାନ୍ତି, ତା ହେଲେ ଆଶ୍ରୟ ଦେବାକୁ ସେ ପ୍ରସ୍ତୁତ ବୋଲି ରାଜି ହେଲେ ।

ହାଜୀ ଉତ୍ତମ ଚାନ୍ଦଙ୍କୁ ଲକ୍ଷ୍ୟ କରି କହିଲେ—"ତୁମେ ତ ଆଜି ସୁଭାଷ ଚନ୍ଦ୍ର ଭଳି ଲୋକଙ୍କୁ ଆଣି ମୋ ଜିମା ଦେଇ ପାରିବ ନାହିଁ ? ପାରିବ କି ?"

ଏଥିରେ ଉତ୍ତମ ଚାନ୍ଦ ସଦର୍ପରେ କହିଲେ—"ତେବେ ମନେ ରଖନ୍ତୁ, ଯିଏ ଆଶ୍ରୟ ପ୍ରାର୍ଥୀ ହୋଇ ଆସିବେ, ସେ ନିଶ୍ଚୟ ସୁଭାଷ ଚନ୍ଦ୍ର ।"

ଉତ୍ତମ ଚାନ୍ଦଙ୍କ କଥାଶୁଣି ହାଜୀ ସାହେବ ସ୍ତମ୍ଭିତ ହୋଇ, ଅନେକ କ୍ଷଣ ଯାଏଁ 'ତୋବା' 'ତୋବା' ବୋଲି ବ୍ୟାକୁଳରେ ନାମ ଜପିବାକୁ ଲାଗିଲେ ।

ଏହାପରେ ଉତ୍ତମ ଚାନ୍ଦ୍ ପଚାରିଲେ,'—ବର୍ତ୍ତମାନ ଆପଣ କ'ଣ କହୁଛନ୍ତି ?'

ହାଜୀ ସାହେବ କହିଲେ "—ମୋ ଘରେ ଆଶ୍ରୟ ଦେବାକୁ ରାଜି ଅଛି । କିନ୍ତୁ ମୋ ଘର ତ ଦେଖିଛ । କେଉଁ କୋଠରୀରେ ତାଙ୍କୁ ରଖିଲେ ଭଲ ହେବ କହିଲ ?"

ଉତ୍ତମ ଚାନ୍ଦ୍ କହିଲେ, "—ମେସିନ୍ ଘର କଡ଼କୁ ଲାଗି ରହିଥିବା କୋଠରୀଟି ଭଲ ହେବ ।"

କିନ୍ତୁ ପରବର୍ତ୍ତୀଭାବେ ହାଜୀ ସାହେବ ନିଜର ନାନା ଅସୁବିଧା ଥିବା ଆଳ ଦର୍ଶାଇ ଉତ୍ତମ ଚାନ୍ଦଙ୍କୁ କହିଲେ, '—ବରଂ ତୁମ ନିଜଘରେ ତାଙ୍କୁ ରଖିଲେ ଭଲ ହୁଅନ୍ତା ।'

ହାଜୀ ସାହେବ ଇଂରେଜ ବିରୁଦ୍ଧରେ ସମାଲୋଚନା କରି ଆଗରୁ ଖୁବ୍ ବଡ଼ ବଡ଼ କଥା କହୁଥିଲେ, କିନ୍ତୁ ନିଦାନ କାଳକୁ ରାଜି ହେଲେ ନାହିଁ । ଉତ୍ତମଚାନ୍ଦ ନିଜ ଘରେ ସୁଭାଷ ବାବୁଙ୍କୁ ଆଶ୍ରୟ ଦେବେ ବୋଲି ଦୃଢ଼ଭାବେ ଘୋଷଣା କରି ଫେରି ଆସିଲେ । କାରଣ ସେତେବେଳକୁ ପ୍ରାୟ ୯ଟା ହେବା ଉପରେ, ତେଣେ ରହମତ୍ ଖାଁଙ୍କ ଫେରିବା ସମୟ ହୋଇଥିଲା ।

## ଉତ୍ତମ ଚାନ୍ଦଙ୍କ ପ୍ରଥମ ଦର୍ଶନ

ଉପରବେଳା ୯ଟାକୁ ଦଶ ମିନିଟ୍ ବାକିଥିଲା, ରହମତ୍ ଖାଁ ଆସି ଉତ୍ତମ ଚାନ୍ଦଙ୍କ ଦୋକାନରେ ପହଞ୍ଚିଲେ । ଉତ୍ତମ ଚାନ୍ଦ ଅଧୀର ହୋଇ ସଙ୍ଗେ ସଙ୍ଗେ ସୁଭାଷ ବାବୁଙ୍କ କଥା ପଚାରିଲେ । କିନ୍ତୁ ସୁଭାଷ ବାବୁ ସେଠାରୁ ପାଞ୍ଚଶତ ଦୂର କାବୁଲ ନଦୀ ପୋଲ ଉପରେ ଠିଆ ହୋଇଥିଲେ । ଆଗରୁ କଥାଥିଲା ଯେ, ରହମତ୍ ଖାଁ ଓ ଉତ୍ତମ ଚାନ୍ଦ ସେଠାରେ ଯାଇ ତାଙ୍କ ସହିତ ମିଶିବେ ।

ଉତ୍ତମ ଚାନ୍ଦଙ୍କ ଦୋକାନଟା କାବୁଲ ନଦୀକୂଳରେ ଥିଲା । ନଦୀର ଅପର ପଟରେ ଠିଆ ହୋଇଥିବା ଜଣେ ଲୋକଙ୍କୁ ଦେଖାଇ ରହମତ୍ ଖାଁ କହିଲେ, ହେଇ ଦେଖ, ସେଠାରେ ଠିଆ ହୋଇଛନ୍ତି । କିନ୍ତୁ ଅବିକଳ ସେ ଜଣେ ଆଫ୍ରିଦି ପଠାଣ

ଥିଲେ, ତାଙ୍କୁ ସୁଭାଷ ଚନ୍ଦ୍ର ବୋଲି ଚିହ୍ନିବା କଷ୍ଟକର । ଯାହା ହେଉ ସଙ୍ଗେ ସଙ୍ଗେ ଦୋକାନ ବନ୍ଦ କରି ଉତ୍ତମ ଚାନ୍ଦ, ରହମତ୍ ଖାଁଙ୍କୁ ସଙ୍ଗରେ ନେଇ ପୋଲ ଆଡ଼କୁ ଚାଲିଲେ । ଚାକର ଅମର ନାଥ ଦ୍ୱାରା ଘରକୁ ଖବର ପଠାଇଦେଲେ ଯେ, ଦୁଇଜଣ ବନ୍ଧୁ ଆଜି ଘରେ କୁଣିଆ ହେବେ ।

ରହମତ୍ ଖାଁ ଓ ଉତ୍ତମ ଚାନ୍ଦ ଯାଇ ପୋଲ ନିକଟରେ ପହଞ୍ଚିଗଲେ । ସେତେବେଳେ ସରକାରୀ ଅଫିସ ସବୁ ବନ୍ଦ ହେବା ସମୟ । ପୋଲ ଉପରେ ଭିଡ ଜମି ଯାଇଛି । ସୁଭାଷ ଚନ୍ଦ୍ରଙ୍କର କୌଣସି ପତ୍ତା ନାହିଁ । କିନ୍ତୁ ରହମତ୍ ଖାଁ ସୁଭାଷବାବୁଙ୍କୁ ଚିହ୍ନିନେଲେ । ପରିଧାନରେ ଅତ୍ୟନ୍ତ ଅପରିଷ୍କାର, ମଇଳା, ଆଫ୍ରିଦି ସାଲଓ୍ୱାର୍ ସଙ୍ଗେ ଅନୁରୂପ କୁର୍ତ୍ତା ଓ ପଗଡ଼ି । ତାଙ୍କୁ ଯିଏ ପୂର୍ବରୁ ଦେଖିଛି, ଏ ଅବସ୍ଥାରେ ଚିହ୍ନିବା ସମ୍ପୂର୍ଣ୍ଣ ଅସମ୍ଭବ । ସେତେବେଳେ ବରଫ ବର୍ଷା ହେଉଥିଲା । ଉତ୍ତମ ଚାନ୍ଦ ବହୁ କ୍ଷଣ ନିରୀକ୍ଷଣ କରି ମଧ୍ୟ ସୁଭାଷ ବାବୁଙ୍କୁ ଚିହ୍ନି ପାରିଲେ ନାହିଁ । ରହମତ୍ ଖାଁ ହଠାତ୍ ଉତ୍ତମ ଚାନ୍ଦଙ୍କୁ କହିଲେ—"ଠିଆରେ କ'ଣ ଭାବୁଛନ୍ତି ? ଶୀଘ୍ର ଚାଲନ୍ତୁ ।"

ପ୍ରବଳ ଶୀତ ଓ ବରଫ ବୃଷ୍ଟି ଯୋଗୁଁ, ହାଟ ଚାଲିବା ସୁଭାଷ ବାବୁଙ୍କ ପକ୍ଷେ ବଡ଼ କଷ୍ଟ ହେଉଥିଲା । ଏପରିକି ୩/୪ ଥର ବରଫ ଗଦା ଝୁଣ୍ଟି ପଡ଼ି ପଡ଼ି ରକ୍ଷା ପାଇଛନ୍ତି । ଯାହା ହେଉ ଶେଷକୁ ନିର୍ବିଘ୍ନରେ ଘରେ ପହଞ୍ଚି, ଓଦା ପୋଷାକ ବଦଳାଇଲେ । ପରେ ଚା'ର ବ୍ୟବସ୍ଥା ହେଲା । ତେଣେ ସରାଇରେ ଛାଡି ଆସିଥିବା ଜିନିଷ ଚାକର ଅମରନାଥକୁ ପଠାଇ ଆଣିବା ବ୍ୟବସ୍ଥା ହେଲା ।

ଅମରନାଥ ଓ ରହମତ୍ ଖାଁ ସରାଇକୁ ଯିବାପରେ, ଭୁଷେଇ କାମ କେତେଦୂର କ'ଣ ହେଲା, ବୁଝିବା ପାଇଁ ଉତ୍ତମ ଚାନ୍ଦ ସ୍ତ୍ରୀଙ୍କ ନିକଟକୁ ଗଲେ । ସ୍ତ୍ରୀ କୁଣିଆଙ୍କ ଉପସ୍ଥିତିରେ ସନ୍ଦେହ ପ୍ରକାଶ କରି, ବିପଦର ସମ୍ଭାବନା ଅଛି ବୋଲି ଅନୁମାନ କଲେ । କିନ୍ତୁ ଉତ୍ତମ ଚାନ୍ଦ ସ୍ତ୍ରୀଙ୍କ ପ୍ରବୋଧ ଦେଲେ ମଧ୍ୟ, ଗୃହିଣୀ ସନ୍ତୁଷ୍ଟ ହେଲେ ନାହିଁ । ପିଲାଛୁଆ ଧରି ବିଦେଶରେ ଅଛନ୍ତି, ନିଶ୍ଚିତ ବିପଦର ସଙ୍କେତ ତାଙ୍କୁ ବିବ୍ରତ କରିଦେଲା । ଉତ୍ତମ ଚାନ୍ଦ ମଧ୍ୟ ମନେ କଲେ ଯେ, କୁଣିଆଙ୍କ ପ୍ରକୃତ ପରିଚୟ ଓ ଉଦ୍ଦେଶ୍ୟ ଘରଣୀଙ୍କଠାରୁ ଲୁଚାଇ ରଖିବା ଠିକ୍ ହେବ ନାହିଁ ।

### ଗୃହିଣୀଙ୍କ ପ୍ରତିଜ୍ଞା

ଅମରନାଥ ସରାଇରୁ ଫେରିବା ପରେ, ଉତ୍ତମ ଚାନ୍ଦ କୁଣିଆଙ୍କ ରାତି ଭୋଜନ ସାରି ରେଡିଓ ଶୁଣିବାକୁ ଗଲେ । ବହୁ ଦିନ ପରେ ଆଜି ସୁଭାଷବାବୁଙ୍କ ଆହାର ଓ ବିଶ୍ରାମ ଆରାମପ୍ରଦ ହୋଇଥିଲା । ପେଶାବାର ଛାଡ଼ିବା ଦିନଠାରୁ ଏ ପର୍ଯ୍ୟନ୍ତ ସେ

କୌଣସି ସମ୍ବାଦ ପାଉନଥିଲେ, ତେଣୁ ସଂକ୍ଷିପ୍ତ ସମ୍ବାଦ ଜାଣିବାପାଇଁ ଉତ୍ତମ ଚାନ୍ଦଙ୍କୁ ଅନୁରୋଧ କଲେ । ଉତ୍ତମ ଚାନ୍ଦଙ୍କ ଯାହା ମନେଥିଲା, ତାହା ସେ ଜଣାଇଲେ । ରାତି ବେଶି ହୋଇ ଯାଇଥିବାରୁ ଅଧିକ ଆଲୋଚନା ନ'କରି ସମସ୍ତଙ୍କର ଶୋଇବା ବ୍ୟବସ୍ଥା ପରେ, ଉତ୍ତମ ଚାନ୍ଦ ନିଜେ ମଧ୍ୟ ଶୋଇବାକୁ ଗଲେ ।

ରାତି ଅଧିକ ହେଲେ ମଧ୍ୟ ଉତ୍ତମ ଚାନ୍ଦଙ୍କ ସ୍ତ୍ରୀ ନ'ଶୋଇ ଅପେକ୍ଷା କରିଥିଲେ । କୁଣ୍ଡୁଆଙ୍କ ସମ୍ବନ୍ଧ ସ୍ୱାମୀ-ସ୍ତ୍ରୀଙ୍କ ଭିତରେ ପୁଣି ଆଲୋଚନା ହେଲା । ଆଲୋଚନା କ୍ରମଶଃ ବଚସା ଏବଂ ବଚସାରୁ କ୍ରମଶଃ ରୋରୁଦ୍ୟମାନ ଓ ମହିଳା କଣ୍ଠର ଆର୍ତ୍ତ ଚିତ୍କାର । ଏଥିରେ ଉତ୍ତମ ଚାନ୍ଦ ପ୍ରମାଦ ଗଣିଲେ । ଶେଷରେ ବାଧ୍ୟହୋଇ ସ୍ତ୍ରୀଙ୍କୁ ସମସ୍ତ କଥା ଫିଟାଇ କହିଲେ । ସୁଭାଷ ବାବୁ ଛଦ୍ମ ବେଶରେ ଆତ୍ମଗୋପନ କରିଥିବା ଶୁଣି ତାଙ୍କ ସ୍ତ୍ରୀ ଅତ୍ୟନ୍ତ ଭୟ ପାଇଗଲେ । କିନ୍ତୁ ଉତ୍ତମ ଚାନ୍ଦ ବୁଝାଇଲେ ଯେ— "ଯଦି ଆମ ଘରେ ରହି ସୁଭାଷ ବାବୁ ଗିରଫ ହୁଅନ୍ତି, ତା'ହେଲେ ଆମର କଳଙ୍କର ସୀମା ରହିବ ନାହିଁ ।"

ଉତ୍ତମ ଚାନ୍ଦଙ୍କ କଥାରେ ଗୃହିଣୀ ହଠାତ୍ ବଦଳିଗଲେ । ସୁଭାଷ ଚନ୍ଦ୍ରଙ୍କ ମହାନ୍ ବ୍ୟକ୍ତିତ୍ୱ ଓ ଅସାଧାରଣ ତ୍ୟାଗ ତାଙ୍କୁ ଚମତ୍କୃତ କରିଦେଲା । ସେ ପ୍ରତିଜ୍ଞା ବଦ୍ଧ ହୋଇ କହିଲେ ଯେ— "ସୁଭାଷ ବାବୁଙ୍କୁ ସାହାଯ୍ୟ କରିବା ଆମର କର୍ତ୍ତବ୍ୟ । ସେଥିପାଇଁ ଯଦି ପ୍ରାଣ ଦେବାକୁ ପଡ଼େ, ତା ହେଲେ ମୁଁ କୁଣ୍ଠିତ ହେବି ନାହିଁ । ଭଗବାନଙ୍କ ଅପାର ଦୟା ଯେ, ଜଣେ ଶ୍ରେଷ୍ଠ ଦେଶ ପ୍ରେମିକ ଆମ ଘରେ ଅତିଥି ହୋଇଛନ୍ତି । ଏହି ମହାନ୍ ସୁଯୋଗ ଆମେ ହରାଇବା ଉଚିତ ନୁହେଁ ।"

ବାସ୍ତବରେ ଉତ୍ତମ ଚାନ୍ଦ ଗୃହିଣୀଙ୍କ ଅପୂର୍ବ ସେବା ଓ ପ୍ରତ୍ୟୁତ୍ପନ୍ନ ମତି ଯୋଗୁଁ ବାହାରର କେହି ହେଲେ ଜଣେ ଶେଷ ସୁଦ୍ଧା, ସୁଭାଷ ବାବୁଙ୍କ ଅବସ୍ଥାନ କଥା ଜାଣି ପାରିନଥିଲେ ।

ପରଦିନ ଉତ୍ତମ ଚାନ୍ଦ ଦୋକାନକୁ ଯିବା ପୂର୍ବରୁ ତାଙ୍କପାଇଁ କେତେକ ଖବର କାଗଜ ଓ 'ସିଭିଲ ମିଲିଟାରୀ ଗେଜେଟ' ଆଣିଦେଲେ । ସୁଭାଷ ବାବୁ ଯେଉଁ କୋଠରିରେ ରହୁଥିଲେ, ସେହି କୋଠରିର ବାହାରପଟ୍ ଦିନରାତି ତାଲା ପଡ଼ୁଥିଲା । ଏହିପରି ଦୀର୍ଘ ୪୧ ଦିନ ଚାରିଦିଆ ଘରେ ସୁଭାଷ ବାବୁ ରହିବାକୁ ପଡିଥିଲା ।

## ଇଟାଲୀୟ ଦୂତାବାସ ସହ ପତ୍ର ବିନିମୟ

ଇଟାଲୀୟ ରାଜଦୂତଙ୍କ ପୂର୍ବ ନିର୍ଦ୍ଦେଶାନୁଯାୟୀ, ରହମତ୍ ଖାଁ ନିର୍ଦ୍ଦିଷ୍ଟ ଦିନ, ହେର୍‌ଟମାସଙ୍କଠାରୁ ସେନୋର୍‌କାରୋନଙ୍କ ହାତ ଲିଖିତ ପତ୍ର ଖଣ୍ଡିଏ ପାଇଲେ । ପତ୍ରରେ ଲେଖାଥିଲା—

କାବୁଲରେ ଆପଣଙ୍କ ଇଚ୍ଛିତ ସମ୍ବାଦ, ରୋମ ଓ ବର୍ଲିନକୁ ଜଣାଇ ଦେଲି । ଖବର ପାଇ ସେଠା କର୍ତ୍ତୃପକ୍ଷ ଖୁବ୍ ଆନନ୍ଦିତ ହୋଇ ଆପଣଙ୍କୁ ଧନ୍ୟବାଦ ଜଣାଇଛନ୍ତି । ଆପଣଙ୍କ ସାହାଯ୍ୟ ପାଇଁ ମୋତେ ଆଦେଶ ହୋଇଛି । ଅଳ୍ପଦିନ ମଧ୍ୟରେ ସମସ୍ତ ବ୍ୟବସ୍ଥା ହୋଇଯିବ । ଇତି । ଭବଦୀୟ, କାରୋଣି ।

ପତ୍ର ପାଇ ସୁଭାଷ ଚନ୍ଦ୍ର, ହେର୍ ଟମାସ ଜରିଆରେ ତା'ର ଉତ୍ତର ପଠାଇ ଦେଲେ । ଯଥା—"ଆପଣଙ୍କ ପତ୍ର ପାଇ ଆନନ୍ଦିତ ହେଲି । ମୋ ପାଇଁ ଗୁପ୍ତପଥର ବ୍ୟବସ୍ଥା କରୁଥିବା ଶୁଣି, ଆନ୍ତରିକ ଧନ୍ୟବାଦ ଜଣାଉଛି । ଯେତେ ଶୀଘ୍ର ବ୍ୟବସ୍ଥା ହେବ ଭଲ । କାରଣ ବେଶିଦିନ ଏଠାରେ ରହିବା ମୋ ପକ୍ଷେ ବିପଜ୍ଜନକ । ବର୍ଲିନ୍ ଓ ରୋମର କର୍ତ୍ତୃପକ୍ଷଙ୍କୁ ମୋର ଧନ୍ୟବାଦ ଜଣାଇଦେବ ।"

ଉତ୍ତମ ଚାନ୍ଦ ଜଣେ ରେଡ଼ିଓ ବ୍ୟବସାୟୀ, ହେର୍ ଟମାସ ମଧ୍ୟ ଥିଲେ ରେଡ଼ିଓ ବ୍ୟବସାୟୀ, ଏଣୁ ଜଣେ ରେଡ଼ିଓ ବ୍ୟବସାୟୀ, ଅନ୍ୟ ରେଡ଼ିଓ ବ୍ୟବସାୟୀ ଘରକୁ ଯିବା, କେହି ସନ୍ଦେହ କରିବେ ନାହିଁ । ସୁଭାଷ ବାବୁ ଏ କଥା ଜାଣି ପୁଣି ଖଣ୍ଡିଏ ପତ୍ର ଉତ୍ତମ ଚାନ୍ଦଙ୍କ ଦ୍ୱାରା ହେର୍ ଟମାସ୍‌ଙ୍କ ନିକଟକୁ ପଠାଇଲେ ଯଥା—"ସହରରେ ରହିବା ବିପଦ ସୂଚନା ଦେଇ, ଆମେ ଜଣେ ବନ୍ଧୁଙ୍କ ଘରେ ଆଶ୍ରୟ ନେଇଛୁ । ସେ ରେଡ଼ିଓ ବ୍ୟବସାୟ କରନ୍ତି, ଦୋକାନଟା ତାଙ୍କର ନଦୀକୂଳରେ ଅବସ୍ଥିତ । ଆଶାକରେ ଆପଣ ଗୁପ୍ତପଥ ବ୍ୟବସ୍ଥା କରି ସାରିଥିବେ । ଭବିଷ୍ୟତରେ ଯଦି କୌଣସି ଖବର ଦିଅନ୍ତି, ତାହେଲେ ଏହି ବନ୍ଧୁଙ୍କ ଦୋକାନକୁ ପଠାଇଦେବେ ।"

ଉତ୍ତମ ଚାନ୍ଦ ଚିଠି ଖଣ୍ଡିକ ନେଇ ହେର୍ ଟମାସ୍‌ଙ୍କ ସହ ଦେଖାକଲେ । କିନ୍ତୁ ସୁଭାଷ ବାବୁଙ୍କ ପାଇଁ ହେର୍ ଟମାସଙ୍କ ନିକଟରୁ କୌଣସି ଚିଠି ନଥିଲା । ସେ ଦିନ ସନ୍ଧ୍ୟାରେ ହାଜୀ ସାହେବ ଉତ୍ତମ ଚାନ୍ଦ ଦୋକାନକୁ ଆସି, ସୁଭାଷ ବାବୁଙ୍କ କୁଶଳ ବାର୍ତ୍ତା ପଚାରି ଗଲେ । ତାଙ୍କ ସହିତ ସାକ୍ଷାତ୍ କରିବା ହାଜୀସାହେବଙ୍କର ପ୍ରବଳ ଇଚ୍ଛା ଥିଲା । ପ୍ରସଙ୍ଗ କ୍ରମେ ଉତ୍ତମ ଚାନ୍ଦ ହେର୍ ଟମାସ ଓ ହାଜୀସାହେବଙ୍କ କଥା ସୁଭାଷ ବାବୁଙ୍କୁ ଜଣାଇଲେ । କିନ୍ତୁ ସେ ସାକ୍ଷାତ୍ ପାଇଁ ମନା କରିଦେଲେ । କିନ୍ତୁ ପରେ ବୁଝିଲେ ଯେ, ହାଜୀସାହେବ ସମସ୍ତ କଥା ଜାଣନ୍ତି, ସେତେବେଳେ ସେ ହାଜୀଙ୍କ ସହିତ ସାକ୍ଷାତ ପାଇଁ ରାଜି ହେଲେ ।

## ପୁଣି ଏକ ନୂଆ ବିପଦ

ଉତ୍ତମ ଚାନ୍ଦଙ୍କ ତଳ ମହଲରେ 'ମିଷ୍ଟର୍ ଆର୍' ନାମକ ଜଣେ ଭଦ୍ରବ୍ୟକ୍ତି ରହୁଥିଲେ । ସେଦିନ କୌଣସି କାରଣରୁ ଉପରକୁ ଆସି ହଠାତ୍ ସୁଭାଷ ବାବୁଙ୍କ

ସହିତ ମୂର୍ଚ୍ଛିତ ହୋଇଗଲେ । ତାଙ୍କୁ ସେ ଯେଉଁ ଅବସ୍ଥାରେ ଦେଖିଲେ, ଚିହ୍ନି ପାରିବା ଆଶଙ୍କା ନଥିଲା । କିନ୍ତୁ ଚଷମା ଦୁଇଟା ସନ୍ଦେହର କାରଣ ହେଲା । ଉତ୍ତମ ଚାନ୍ଦଙ୍କ ଘରେ ଜଣେ ଅପରିଚିତ ଲୋକଙ୍କୁ ଦେଖି ସ୍ତମ୍ଭିଭୂତ ହୋଇ ତାଙ୍କ ମନକୁ ସନ୍ଦେହ ଛୁଇଁଲା । ଉତ୍ତମ ଚାନ୍ଦ ଓ 'ମିଷ୍ଟର୍ ଆର୍' ସୁଭାଷ ବାବୁଙ୍କ ଅନ୍ତର୍ଦ୍ଧାନ କଥା ବହେ ଆଲୋଚନା କରିଥିଲେ । ଏଣୁ ରହମତ୍ ଖାଁ ଓ ସୁଭାଷ ଚନ୍ଦ୍ର ଏଥିରେ ପ୍ରମାଦ ମଣିଲେ ।

ସନ୍ଧ୍ୟାରେ ଦୋକାନରୁ ଫେରି ଉତ୍ତମ ଚାନ୍ଦ୍ ଶୁଣିଲେ ଯେ, ମିଷ୍ଟର୍ ଆର୍ ଭୟଙ୍କର ଭାବେ ପୀଡ଼ିତ ହୋଇ ପଡ଼ିଛନ୍ତି । ପରଦିନ ମିଷ୍ଟର୍ ଆର୍ ଆସି ଉତ୍ତମ ଚାନ୍ଦ୍‌ଙ୍କୁ କହିଲେ ଯେ,'--ଏ ଘରେ ମୁଁ ରହିବି ନାହିଁ । କାରଣ ପ୍ରେତାତ୍ମା ଆବିର୍ଭାବ ଯୋଗୁଁ, ମୋ ଦେହ ଅସୁସ୍ଥ ହେଉଛି ।'' ପରେ ଜଣାଇଲେ ଯେ, ଜଣେ ଅପରିଚିତ ବ୍ୟକ୍ତି ରହୁଥିବା ଯୋଗୁଁ, ତାଙ୍କ ସ୍ତ୍ରୀ ଏଠାରେ ରହିବାକୁ ଅନିଚ୍ଛୁକ ।

ମିଷ୍ଟର୍ ଆର୍ ସେ ଘରୁ ଚାଲିଗଲେ କାଳେ କିଛି କ୍ଷତି ଘଟାଇବେ ଏହି ଆଶଙ୍କାରେ, ଉତ୍ତମ ଚାନ୍ଦ୍ ସେ ଦୁହିଁଙ୍କୁ ୩/୪ଦିନ ପାଇଁ ଧର୍ମଶାଳା ଠିକ୍ କରି ପଠାଇଦେଲେ । କାରଣ ମିଷ୍ଟର୍ ଆର୍ ଚାଲିଯିବାପରେ ଯଦି ଖାନ୍‌ତଲାସ୍ ହୁଏ ତାହେଲେ ଭୟର କାରଣ ନଥିବ । ସେ ରାତିରେ ମିଷ୍ଟର୍ ଆର୍‌ଙ୍କ ସହଧର୍ମିଣୀ, ଉତ୍ତମ ଚାନ୍ଦଙ୍କ ସହଧର୍ମିଣୀଙ୍କ ଠାରୁ, ବିଦାୟ ନେବାକୁ ଆସି ଯାହା କହିଲେ, ଜଣାଗଲା ଯେ, ଉତ୍ତମ ଚାନ୍ଦଙ୍କ ଘରେ ଥିବା ଭଦ୍ରବ୍ୟକ୍ତିଙ୍କୁ ସୁଭାଷ ଚନ୍ଦ୍ର ମନେ-କରି, ସନ୍ଦେହରେ ସେ ଘର ଛାଡ଼ି ଚାଲିଗଲେ ।

ଦୁଇଦିନ ପରେ ଉତ୍ତମ ଚାନ୍ଦ୍ ମିଷ୍ଟର୍ ଆର୍‌ଙ୍କୁ ବଜାରରେ ଦେଖିଲେ । 'ମିଷ୍ଟର୍ ଅର୍' ଦଫା ଫିଟାଇ କହିଲେ ଯେ, ସେ ସୁଭାଷ ଚନ୍ଦ୍ରଙ୍କୁ ସମ୍ପୂର୍ଣ୍ଣ ଚିହ୍ନି ପାରି, ଭୟରେ ସେ ଦିନ ତାଙ୍କୁ ଜ୍ୱର ହୋଇଗଲା । ବିପଦର ସମ୍ଭାବନା ଜାଣି, ଅତର୍କିତାରେ ସେ ଘର ଛାଡ଼ି ଚାଲି ଆସିଲେ । କିନ୍ତୁ ଉତ୍ତମ ଚାନ୍ଦ୍ ମିଷ୍ଟର୍ ଆର୍‌ଙ୍କୁ ସ୍ପଷ୍ଟ ଜଣାଇ ଦେଲେ ଯେ, ସୁଭାଷ ଚନ୍ଦ୍ର ଆଉ ତାଙ୍କ ଘରେ ନାହାନ୍ତି—ଅନ୍ୟତ୍ର ଚାଲିଗଲେଣି । ସତର୍କ ରହିବା ପାଇଁ ମିଷ୍ଟର୍ ଆର୍‌ଙ୍କୁ ସେ ଅନୁରୋଧ କଲେ ଯେ, କାବୁଲରେ ଯଦି ସୁଭାଷ ଚନ୍ଦ୍ର ଗିରଫ୍ ହୁଅନ୍ତି, ତା ହେଲେ ମିଷ୍ଟର୍ ଆର୍ ସେଥିପାଇଁ ସମସ୍ତ କଳଙ୍କର ଭାଗୀ ହେବେ ।

ସୁଭାଷ ବାବୁ ଓ ରହମତ୍ ଖାଁ ତିନିଦିନ ପରେ ଧର୍ମଶାଳାରୁ ଫେରି ପୁଣି ଉତ୍ତମ ଚାନ୍ଦଙ୍କ ଘରକୁ ଆସିଥିଲେ । ଏଥର ସରାଇରେ ରହି ବଜାରର ରୁଟି ଭଜା ଖାଇ, ସୁଭାଷ ବାବୁ ଆମାଶୟ ରୋଗରେ ପୀଡ଼ିତ ହୋଇ ପଡ଼ିଲେ । କିନ୍ତୁ ଉତ୍ତମ ଚାନ୍ଦ ଗୃହିଣୀଙ୍କ ଅକ୍ଳାନ୍ତ ସେବା ଶୁଶ୍ରୂଷା ଫଳରେ ସେ ସୁସ୍ଥ ହୋଇଉଠିଲେ ।

ଜ୍ୟାଉଦ୍ଦିନ୍ ଓ ରହମତ୍ ଖାଁ ସରାଇରେ ଥିଲାବେଳେ, ଦିନେ ଇଟାଲୀୟ ରାଜଦୂତଙ୍କ ସ୍ତ୍ରୀ, ଉତ୍ତମ ଚାନ୍ଦଙ୍କ ଘରକୁ ଆସି, ତାଙ୍କ ସ୍ୱାମୀ ଦେଇଥିବା ଚିଠି ଖଣ୍ଡିକ ଦେଇ, ପୁଣି ଦିନେ ଆସିବେ କହି ଫେରିଗଲେ । ଚିଠି ଖଣ୍ଡିକ ଉତ୍ତମ ଚାନ୍ଦ ଯଥା ସମୟରେ ସୁଭାଷବାବୁଙ୍କ ନିକଟକୁ ପଠାଇ ଦେଇଥିଲେ । ସେଥିରେ ଲେଖାଥିଲା—"ଆପଣଙ୍କ ପତ୍ର ପାଇଛୁ । ସରାଇରୁ ଆପଣ ବନ୍ଧୁ ଘରକୁ ଯିବା ଶୁଣି ଖୁସି ହେଲୁ । ରୋମ୍ ଓ ବର୍ଲିନ୍‌କୁ ଆପଣଙ୍କ ଧନ୍ୟବାଦ ବାର୍ତ୍ତା ପଠାଇ ଦେଇଛୁ । ଛାଡ଼-ପତ୍ର ବ୍ୟବସ୍ଥା ପାଇଁ ଆମର ମସ୍କୋସ୍ଥିତ ରାଜଦୂତଙ୍କୁ ଜଣାଇଛୁଁ । ଖବର ଆସିଲେ ଆପଣଙ୍କୁ ଜଣାଇ ଦିଆଯିବ ।"

ଏହାପରେ ଏକ ସପ୍ତାହ ବିତିଗଲା, ଇଟାଲୀୟ ଦୂତାବାସରୁ ଆଉ କୌଣସି ଖବର ଆସିଲା ନାହିଁ । ରାଜଦୂତଙ୍କ ସ୍ତ୍ରୀ ସେନୋରା କାରୋନୀ, ତିନି ଥର ଦୋକାନକୁ ଆସିଥିବେ, କିନ୍ତୁ ଛାଡ଼-ପତ୍ର ସମ୍ବନ୍ଧରେ ପ୍ରଶ୍ନ କଲେ, ସେ ଉତ୍ତର ଦିଅନ୍ତି ଯେ, କାହିଁକି ଡେରି ହେଉଛି ସେ ଜାଣନ୍ତି ନାହିଁ । କିନ୍ତୁ ପ୍ରତି ଦିନ ଏ ସମ୍ବନ୍ଧରେ ଉଚ୍ଚ କର୍ତ୍ତୃପକ୍ଷଙ୍କୁ ସ୍ମରଣ କରାଇ ଦିଆଯାଉଛି ।

ଇଟାଲୀୟ ଦୂତାବାସରୁ ଏ ଯାବତ୍ କୌଣସି ଠିକ ସମ୍ବାଦ ନପାଇ ସୁଭାଷ ବାବୁ ପୁଣି ଏକ ପତ୍ର ଲେଖି, ଧେର୍ଟମାଲଙ୍କ ମାର୍ଫତରେ ସେନୋରା କାରୋନୀଙ୍କ ନିକଟକୁ ପଠାଇଲେ ଯେ— 'ଯଥାଶୀଘ୍ର ଛାଡ଼ପତ୍ର ଯୋଗାଡ଼ ବ୍ୟବସ୍ଥା ହେବା ଉଚିତ୍, ନଚେତ୍ ବିପଦର ସମ୍ଭାବନା ରହିଛି ।'

ଇଟାଲୀୟ ରାଜଦୂତ ପତ୍ରରେ ଜଣାଇଲେ ଯେ— ଶ୍ରୀଯୁକ୍ତ ବୋଷଙ୍କ ଅବସ୍ଥା ସେ ନିଜେ ହୃଦୟଙ୍ଗମ କରିପାରୁଛନ୍ତି । ଉପରିସ୍ଥ କର୍ତ୍ତୃପକ୍ଷଙ୍କୁ ଖବର ଦେବା ଛଡ଼ା ସେ ଆଉ କ'ଣ କରିପାରିବେ ? ସମ୍ଭବତଃ ମସ୍କୋରେ କିଛି ଗଣ୍ଡଗୋଳ ହୋଇଛି; ଯାହାର ଫଳେ ଛାଡ଼ପତ୍ର ମିଳିବାରେ ବିଳମ୍ବ ଘଟୁଛି !

ବାସ୍ତବରେ ସୁଭାଷ ବାବୁଙ୍କ ଛାଡ଼ପତ୍ର ନେଇ ମସ୍କୋରେ ଗଣ୍ଡଗୋଳ ହୋଇ-ଥିଲା । କାରଣ ଦୁଇଦିନ ପରେ ପୁଣି ଇଟାଲୀୟ ଦୂତାବାସରୁ ଖଣ୍ଡିଏ ପତ୍ର ଆସି ପହଞ୍ଚିଲା ଯେ— ଇଟାଲୀ ଓ ଜର୍ମାନ କର୍ତ୍ତୃପକ୍ଷ ରୁଷ ରାସ୍ତାରେ ୟୁରୋପ ଯିବାପାଇଁ ସୁଭାଷ ବାବୁଙ୍କ ଛାଡ଼ପତ୍ରର ବ୍ୟବସ୍ଥା କରୁଥିଲେ । କିନ୍ତୁ ରୁଷ ସରକାର ଏଥିରେ ରାଜି ହୋଇନଥିଲେ । ଯାହାହେଉ ପରେ ରୁଷପକ୍ଷ ରାଜି ହୋଇଛନ୍ତି । ତେବେ ଇଟାଲୀରୁ ଜଣେ ବାର୍ତ୍ତାବହ ତାଙ୍କପାଇଁ ଶୀଘ୍ର ଏଠାରେ ଆସି ପହଞ୍ଚିବେ । ତାପରେ ସୁଭାଷ ବାବୁଙ୍କ ଯିବା ବ୍ୟବସ୍ଥା ଠିକ ହୋଇଯିବ ।

ଇତ୍ୟବସରରୁ ଜଣେ ବାର୍ତ୍ତାବହ ଆସୁଥିବା ଶୁଣି, ସୁଭାଷ ଚନ୍ଦ୍ର ଭାବିଲେ ଯେ, ଏଯାଏଁ ତାଙ୍କପାଇଁ ଛାଡ଼ପତ୍ରର ବ୍ୟବସ୍ଥା ହୋଇପାରି ନାହିଁ । ତେଣୁ ଏଭଳି ଜଣଙ୍କୁ ପଠାଯାଉଛି, ଯାହାର ଛଦ୍ମନାମରେ ସେ ଛାଡ଼ପତ୍ର ନେଇ ଯାଇପାରିବେ ।

## ଅଧ୍ୟାପକ ଜ୍ୟାଉଦ୍ଦିନ୍

ଅଣା ଓ ନଗଣାର ଭିତରେ ଦୋକାନମାନ ଅବସ୍ଥାରେ ପୁଣି ସପ୍ତାହେ କଟିଗଲା । ବାର୍ତ୍ତାବହ ଆଗମନର କୌଣସି ପତ୍ତା ନାହିଁ । ତେବେ ମଝି ମଝିରେ ରାଜଦୂତଙ୍କ ସ୍ତ୍ରୀ ସେନେଓର କାରେଗନା ଆସି ସୁଭାଷ ବାବୁଙ୍କ କୁଶଳ ବାର୍ତ୍ତା ପଚାରି ଯାଉଥାନ୍ତି । କିନ୍ତୁ ସୁଭାଷ ଚନ୍ଦ୍ର ଏହିପରି ଆଉ କେତେ ଦିନ ଘର ଦୁଆର ଭିତରେ ବସି ରହିବେ ? ବଡ଼ କ୍ଲାନ୍ତ ହୋଇ ପଡ଼ିଥିଲେ । ତେଣେ ଇଚ୍ଛା ହେଲା, ସେ କାବୁଲ ବଜାର ବୁଲି ଆସିବେ ।

ଏ ମଧ୍ୟରେ ରହମତ୍ ଖାଁ କାବୁଲର ଗଳି କନ୍ଦି ଓ ବଜାର ସହିତ ପରିଚିତ ହୋଇ ଯାଇଥିଲେ । ପଠାଣ ପୋଷାକ ଛଡ଼ା, ସୁଭାଷ ବାବୁଙ୍କ ଅନ୍ୟ କୌଣସି ପୋଷାକ ନଥିଲା । ପଠାଣ ପୋଷାକ ଦେଖିଲେ କେହି ବିଦେଶୀ ବୋଲି କହିବେ, ବରଂ କାବୁଲ ପୋଷାକରେ ଚାଲିବା ଉପାୟ ନାହିଁ । ଏଣୁ ଉତ୍ତମ ବୁଝି ବଜାର ଉତ୍ତମ କାବୁଲ ପୋଷାକ ଦେଲେ । ସୁଭାଷ ବାବୁଙ୍କୁ ତାହା ବେଶ ମାନିଲା । କିନ୍ତୁ ଗୋଡ଼କୁ ଜୋତା ଟ୍ଲେଟ ହେଲା ।

ଜ୍ୟାଉଦ୍ଦିନ ଓ ରହମତ୍ ଖାଁ ସେଦିନ କାବୁଲର କେତେକ ଜାଗା ବୁଲି ଫେରି ଆସିବା ବେଳେ ଏକ ଦୁର୍ଘଟଣା ଘଟିଗଲା । ଗୋଟିଏ ଦୋକାନକୁ ଜୋତା କିଣିବାକୁ ଗଲେ, କିନ୍ତୁ ମାଲିକ ଜଣେ ଭାରତୀୟ । ଏ ଦୁହିଁଙ୍କୁ ଭାରତୀୟ ଉର୍ଦ୍ଦୁରେ ପରିଚୟ ମାଗିଲେ । ସୁଭାଷ ବାବୁ ହଠାତ୍ କହି ପକାଇଲେ— 'ମୁଁ ହବିବିୟା କଲେଜର ଅଧ୍ୟାପକ । ମୋ ନାମ ଜ୍ୟାଉଦ୍ଦିନ ।' ଦୋକାନୀ ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲେ ଯେ ହବିବିୟା କଲେଜର ସମସ୍ତ ଭାରତୀୟ ଅଧ୍ୟାପକଙ୍କୁ ସେ ଜାଣନ୍ତି, ଅଥଚ ତାହାଙ୍କୁ ସେ କେବେହେଲେ ଦେଖି ନାହାନ୍ତି । ଯାହାହେଉ ପରେ ଏଣେ ତେଣେ କହିଦେଇ କୌଣସିମତେ ସେଦିନ ସେ ଖସି ପଳାଇ ଆସିଲେ ।

## ପୁଣି ରୁଷ ଯିବାପାଇଁ ଉଦ୍ୟମ

ଦେଖୁ ଦେଖୁ ଏକ ମାସରୁ ଊର୍ଦ୍ଧ୍ୱ ସମୟ କାବୁଲରେ କଟିଗଲା । ଅଥଚ ଇଟାଲୀୟ ଦୂତାବାସରୁ କୌଣସି ସମ୍ବାଦ ଆସିନ ନାହିଁ । ଦିନ ସେତିକି ଗଡ଼ୁଥାଏ

ସୁଭାଷ ବାବୁ ସେତେକ ଅଧୀର ହୋଇ ଉଠନ୍ତି । ତାଙ୍କ ଜୀବନ ଏକ ପ୍ରକାର ଦୁର୍ବହ ହୋଇ ପଡ଼ିଲା ।

ମସ୍ଜିଦରେ ବାହାରକୁ ଯାଇ ବୁଲି ଆସିବାକୁ କହିଲେ, ସୁଭାଷ ବାବୁ ରାଜି ହୁଅନ୍ତି ନାହିଁ । ବୁଲିଯିବା ହାଗ ଧର ପଡ଼ିବା ଭୟ ଥାଏ । ତେବେ ହାଜୀ ସାହେବ ଘ୍ର ଖାଇବାକୁ ନିମନ୍ତ୍ରଣ କଲେ । ସେହି ଦିନଠାରୁ ସେ ମସ୍ଜିଦରେ ହାଜୀ ସାହେବଙ୍କ ଘରକୁ ଯାଉଥାନ୍ତି, ହାଜୀ ସାହେବଙ୍କ କର୍ମୀମାନ ସ୍ତ୍ରୀ ଆଦର ସମ୍ଭାଷଣ ଦ୍ୱାରା ତାଙ୍କର ମନବ୍ୟଥା ଦୂର କରିବାପାଇଁ ଯଥାସାଧ୍ୟ ଚେଷ୍ଟା କରନ୍ତି । ତଥାପି ସୁଭାଷ ବାବୁ ସେଠାରେ ଆଉ ପଡ଼ି ରହିବାକୁ ଇଚ୍ଛା କଲେ ନାହିଁ ।

ତେବେ ସେ ଉତ୍ତମ ଚାନ୍ଦଙ୍କ ନିକଟରେ ପ୍ରସ୍ତାବ କଲେ ଯେ, ଚଳ ବାଟରେ ଆଫଗାନ ସୀମା ପାରହୋଇ ରୁଷରେ ପହଞ୍ଚାଇ ଦେବାପାଇଁ ଜଣେ ଲୋକର ବ୍ୟବସ୍ଥା କଲେ ଭଲ ହୁଅନ୍ତା । ଏଥିରେ ଉତ୍ତମ ଚାନ୍ଦ ରାଜି ହେଲେ, କିନ୍ତୁ ପଥ ଅତ୍ୟନ୍ତ ଦୁର୍ଗମ ଯୋଗୁଁ ତାଙ୍କୁ ବଡ଼ କଷ୍ଟ ହେବ ବୋଲି ଆଶଙ୍କା କଲେ ।

ଯେତେ ବଡ଼ କଷ୍ଟ ହେଲେ ମଧ୍ୟ ଏ ପ୍ରସ୍ତାବକୁ କାର୍ଯ୍ୟକାରୀ କରିବାପାଇଁ ସେ ଉତ୍ତମ ଚାନ୍ଦଙ୍କୁ ଅନୁରୋଧ କଲେ । ରୁଷ ଯିବା କେଉଁଠା ସିଧା ରାସ୍ତା ହେବ, ସ୍ଥିର କରିବାପାଇଁ ଖଣ୍ଡିଏ ମ୍ୟାପ କିଣି ଅଣାହେଲା । ଇଟାଲୀୟ କର୍ତ୍ତୃପକ୍ଷଙ୍କୁ ଅପେକ୍ଷା ନ'କରି କୌଣସିମତେ ଆଫଗାନସ୍ଥାନରୁ ଚାଲିଯିବା ସେ ଉଚିତ ମନେ କଲେ ।

ଉତ୍ତମ ଚାନ୍ଦ କହିଲେ ଯେ, ରୁଷ ସୀମାନ୍ତ ପର୍ଯ୍ୟନ୍ତ ଯିବାପାଇଁ ଲୋକର କୌଣସି ଅଭାବ ନାହିଁ । କାରଣ ଅନେକ ଲୋକ ଅଛନ୍ତି, ଯେଉଁମାନେ ଉକ୍ତ ସୀମାନ୍ତ ଅତିକ୍ରମକରି ବେପାର ବାଣିଜ୍ୟ କରନ୍ତି । କିନ୍ତୁ ସେହି ଦୁର୍ଗମ ପଥରେ ସାଧାରଣ ଲୋକ ଯିବା ବଡ଼ କଷ୍ଟ ସାଧ୍ୟ ।

କିନ୍ତୁ ପଥ ଯେତେ ଦୁର୍ଗମ ବା କଷ୍ଟ ସାଧ୍ୟ ହେଉନା କାହିଁକି, ଏଥିପାଇଁ ଯେତେ ଅଧିକ ଖର୍ଚ୍ଚ ପଡ଼ୁନା କାହିଁକି, ସେ ବହନ କରିବାକୁ ପ୍ରସ୍ତୁତ । କେବଳ ରୁଷ ସୀମାନ୍ତ ଯାଏଁ ପହଞ୍ଚାଇ ଦେବା ଜଣେ ଲୋକକୁ ଯୋଗାଡ଼ ପାଇଁ ସେ ଉତ୍ତମ ଚାନ୍ଦଙ୍କୁ ବିଶେଷ ଅନୁରୋଧ କଲେ ।

## ମିଷ୍ଟର, 'ଏମ'

ରୁଷ ଓ ଆଫଗାନ ସୀମାନ୍ତର ପାର୍ବତ୍ୟ ଅଞ୍ଚଳରେ 'ହ୍ୟାଙ୍ଗୋ' ନାମକ ଗୋଟିଏ ସ୍ରୋତ ନଦୀ ଅଛି । ଉତ୍ତମ ଚାନ୍ଦଙ୍କ ଜଣେ ପରିଚିତ ଲୋକ ସେ ନଦୀ ଯାଏ,

ଯିବା ଆସିବା କରୁଥାଏ । ତାଙ୍କର ନାମ ହେଉଛି 'ମିଷ୍ଟର ଏମ୍' । ସେ ସୀମାନ୍ତ ଅଞ୍ଚଳର ଲୋକ । ଯେବେ ଉତ୍ତମ ବୃନ୍ଦ ତାଙ୍କୁ ଡାକ କଥା ପ୍ରସଙ୍ଗରେ ଏ ସବୁ କଥା ପଚାରିବାରୁ ସେ କହିଲେ ଯେ, ହ୍ୟାଙ୍କୋ ନଦୀ ପାର ହୋଇ ରୁଷିଆ ଯିବା କୌଣସି କଷ୍ଟସାଧ୍ୟ ନୁହଁ । ପରିଶେଷରେ ମିଷ୍ଟର 'ଏମ୍' ସହିତ ସ୍ଥିର ହେଲା ଯେ, ଦରକାର ପଡ଼ିଲେ ସେ ଜଣେ ଲୋକକୁ ଗୋପନରେ ରୁଷ ସୀମାନ୍ତ ପାଏ ପହଞ୍ଚାଇ ଆସିବ । କିନ୍ତୁ ଏଥିପାଇଁ ତାଙ୍କୁ ଆଶାଜନକ ପୁରସ୍କାର ମିଳିବା ଉଚିତ ।

ଉତ୍ତମ ବୃନ୍ଦ ମିଷ୍ଟର 'ଏମ୍'ଙ୍କ ସମ୍ବନ୍ଧେ ସମସ୍ତ କଥା, ସୁଭାଷ ବାବୁଙ୍କୁ ଜଣାଇଲେ । ମାନଚିତ୍ର ଦେଖିବାରୁ ଜଣାଗଲା ଯେ, 'ଏମ୍' ଯେଉଁ ରାସ୍ତାରେ ରୁଷ ସୀମାନ୍ତ ପାର ହେବା କଥା କହିଲେ, ତାହା ସୁବିଧାଜନକ । ତେବେ 'ଏମ୍'ଙ୍କ ସହିତ ବ୍ୟକ୍ତିଗତ ଭାବେ ରହମତ୍ ଖାଁ ପରିଚିତ ହେବାପାଇଁ ବୁଝିବାରୁ, ପରଦିନ ପାଇଁ ଉତ୍ତମ ବୃନ୍ଦ ସ୍ଥିର କଲେ ।

ପରଦିନ ୧୧ଟା ବେଳେ ରହମତ୍ ଖାଁ ଓ 'ଏମ୍'ଙ୍କ ଭିତରେ ଦେଖା ସାକ୍ଷାତ ହେଲା । ଉତ୍ତମ ବୃନ୍ଦ ଉଭୟଙ୍କୁ ପରିଚୟ କରାଇ ଦେଲେ । ରୁଷ ସୀମା ଅତିକ୍ରମ ସମ୍ବନ୍ଧେ ଗୁପ୍ତ ପରାମର୍ଶ ପାଇଁ, 'ଏମ୍' ରହମତ୍ ଖାଁଙ୍କୁ ଡାକ ନିଜ ଘରକୁ ନେଇଗଲା ।

ରାତିରେ ଘରକୁ ଫେରି ଉତ୍ତମ ବୃନ୍ଦ ଶୁଣିଲେ ଯେ, ତିନି ଆରଦିନ ମିଷ୍ଟର 'ଏମ୍'ଙ୍କ ସହ ସୁଭାଷ ବାବୁ କାବୁଲ ତ୍ୟାଗ କରିବା ସମ୍ପର୍କରେ ସମସ୍ତ ବ୍ୟବସ୍ଥା ରହମତ୍ ଖାଁ କରିସାରିଛନ୍ତି । କେବଳ ମଟର ଲରୀରେ ସିଟ୍ ରିଜର୍ଭ କରିବା ବାକି ରହିଛି ।

## ଶେଷକୁ ଇଟାଲୀ ଦୂତାବାସରୁ ଚିଠି

ପରଦିନ ସକାଳେ ଉତ୍ତମଚାନ୍ଦ ନିଜର ଦୋକାନକୁ ଗଲେ । କିଛିକ୍ଷଣ ପରେ ପେଶାବାରରୁ ଆସିଥିବା ପୂର୍ବ ପରିଚିତ ଜୀବନ ଲାଲ ନାମକ ଜଣେ ଫଳ ବ୍ୟବସାୟୀ ବନ୍ଧୁ ଆସି ପହଞ୍ଚିଲେ । ଜୀବନ ଲାଲ ଓ ଉତ୍ତମ ବୃନ୍ଦ କଥାବାର୍ତ୍ତା ହେଉଛନ୍ତି, ଏତିକିବେଳେ ଇଟାଲୀୟ ରାଜଦୂତଙ୍କ ସ୍ତ୍ରୀ ସେନୋରା କାରୋନୀ ଆସି, ଉତ୍ତମ ବୃନ୍ଦଙ୍କ ହାତକୁ ଖଣ୍ଡିଏ ଲଫାଫା ବଢ଼ାଇଦେଲେ । ଶ୍ରୀମତୀ କାରୋନୀଙ୍କୁ ଆନନ୍ଦିତ ଥିବା ଦେଖି, ଉତ୍ତମ ବୃନ୍ଦ ତାହାର କାରଣ ପଚାରିବାରୁ— 'ଚିଠି ଖଣ୍ଡିକ ପଢ଼ିଲେ ଜାଣିପାରିବ ।' ଏହା କହି ସେ ଚାଲିଗଲେ ।

ଦୋକାନରୁ ସମସ୍ତେ ଚାଲିଯିବାପରେ, ଶ୍ରୀମତୀ କାରୋଣୀ ଦେଇଥିବା ଚିଠି ଖଣ୍ଡିକ ଉତ୍ତମ ଚାନ୍ଦ ପଢ଼ିଲେ । ରାଜଦୂତ ଲେଖିଛନ୍ତି— 'ଆଜ ରୋମଠାରୁ ସନ୍ତୋଷ-ଜନକ ଖବର ମିଳିଛି, ବାର୍ତ୍ତାବାହକ ରୋମ ତ୍ୟାଗ କରିଛନ୍ତି, ସପ୍ତାହ ମଧ୍ୟରେ ଆସି ପହଞ୍ଚିବେ । ପାସପୋର୍ଟ ପାଇଁ ଆପଣଙ୍କର ଖଣ୍ଡିଏ ଫଟୋ ଆବଶ୍ୟକ । ଆସନ୍ତା କାଲି ୧୧ଟା ପରେ ଦରବ୍ ମେନ ରୋଡ଼କୁ ଆସିଲେ ଦେଖିବେ, ସେଠାରେ ଖଣ୍ଡିଏ ଗାଡ଼ି ଠିଆ ହୋଇଥିବ ଏବଂ ସେଥିରେ ଜଣେ ଲୋକ ମଧ୍ୟ ଥିବେ । କିଛି ନ'ପଚାରି ଗାଡ଼ି ଭିତରେ ଯାଇ ବସିବେ । ଗାଡ଼ିଟି ନିରାପଦ ସ୍ଥାନକୁ ନେଇ, ଆପଣଙ୍କ ଫଟୋ ଉଠାଇବ । ପୁଣି ଯେଉଁଠାରୁ ଆଣିଥିଲା, ସେଠି ନେଇ ଛାଡ଼ିଦେବ ।'

ଏହାପରେ ମିଷ୍ଟର 'ଏମ' ଆସି ଉତ୍ତମ ଚାନ୍ଦଙ୍କୁ ଦେଖାକରି କହିଲେ ଯେ— 'ଯାହାକୁ ରୁଷ ସୀମାନ୍ତରେ ଛାଡ଼ି ଆସିବା କଥା, ସେ ଯଦି ଆଜ ନ'ଆସନ୍ତି ବଡ଼ ଅସୁବିଧା ହେବ । କାରଣ ଏହାପରେ ଗେଲ ଲଗାରେ ଟିକେଟ ଖରିଦ କରିବାକୁ ପଡ଼ିବ ।

ଉତ୍ତମ ଚାନ୍ଦ କହିଲେ— 'ଯିବା ଲୋକ ବର୍ତ୍ତମାନ ଅସୁସ୍ଥ । ଏଯାଏଁ ସେ କାବୁଲରେ ପହଞ୍ଚି ନାହାନ୍ତି । ସୁତରାଂ ସେ ପହଞ୍ଚିବାପରେ ଶେଷ ନିଷ୍ପତ୍ତି କରାଯିବ ।'

ଘରକୁ ଫେରି ଉତ୍ତମ ଚାନ୍ଦ ଚିଠି ଖଣ୍ଡିକ ସୁଭାଷ ବାବୁଙ୍କ ହାତରେ ଦେଲେ । ଚିଠି ପାଠକରି ସେ ଆନନ୍ଦିତ ହେଲେ ସତ; କିନ୍ତୁ 'ଏମ' ସହିତ ଯିବେ କି ରାଜଦୂତ ସହିତ ଯିବେ— କିଛିହେଲେ ସ୍ଥିର କରିପାରିଲେ ନାହିଁ । ଇଟାଲୀୟଙ୍କ ସଙ୍ଗେ ଗଲେ ଦଶବାର ଦିନ ଅପେକ୍ଷା କରିବାକୁ ହେବ । ଏଣେ 'ଏମ'ଙ୍କ ସଙ୍ଗେ ଗଲେ ଲଗାରେ ସିଟ୍ ରିଜର୍ଭ ପାଇଁ ୩ ଦିନ ଅପେକ୍ଷା କରିବାକୁ ହେବ । ଶେଷକୁ ଉତ୍ତମ ଚାନ୍ଦ ଓ ରହମତ୍ ଖାଁଙ୍କ ସହିତ ପରାମର୍ଶ କରି ସେ ସ୍ଥିର କଲେ ଯେ— 'ଇଟାଲୀୟ ରାଜଦୂତଙ୍କ ସଙ୍ଗେ ଯିବା ସଙ୍ଗତ ହେବ ।' ଏମଙ୍କ ସହିତ ଯିବା ବର୍ତ୍ତମାନ ବିପଦଜନକ । କାରଣ ରୁଷିଆରେ ପହଞ୍ଚିବା ପୂର୍ବରୁ ରାସ୍ତାରେ ଗିରଫ ହେବା ସମ୍ଭାବନା ରହିଛି । ଯେହେତୁ ରୁଷ ଦୂତ ବା ରୁଷ ସରକାର ତାଙ୍କ ଦେଶ ରାସ୍ତାରେ ଯିବାପାଇଁ ଅନୁମତି ଦେଇନାହାନ୍ତି ।

ଏଥିରେ ରହମତ୍ ଖାଁ ସୁଭାଷ ବାବୁଙ୍କ ସହିତ ଏକମତ ହୋଇ କହିଲେ ଯେ—'ଆପଣ ଠିକ୍ କହିଛନ୍ତି । ଯଦି ରୁଷବାସୀ ଆପଣଙ୍କ ଉପସ୍ଥିତି ବୁଝି ନାହାନ୍ତି, ତାହେଲେ ଆପଣ ସେଠାକୁ କାହିଁକି ଯିବେ ?'

ଶେଷକୁ ସ୍ଥିର ହେଲା 'ଏମ'ଙ୍କ ସଙ୍ଗେ ଯିବା ବଦଳରେ, ରୋମରୁ ପତ୍ର ବାହକ ଆସିବାଯାଏଁ, ସୁଭାଷ ବାବୁ କାବୁଲରେ ରହିବେ ।

ଶ୍ରୀମତୀ କାଉରେଜା ପୁଣି ପରଦିନ ସକାଳ ୧୧ ଟାରେ ଉତ୍ତମଚାନ୍ଦଙ୍କ ଦୋକାନକୁ ଆସି ଆଉ ଖଣ୍ଡିଏ ଚିଠି ଦେଲେ ଏବଂ ଫଟୋଟି ଠିକ୍ ଅଛି ବୋଲି ମଧ୍ୟ ଜଣାଇଲେ ।

## ଯାତ୍ରାର ଆୟୋଜନ

ଏଥର ସୁଭାଷବାବୁଙ୍କ କାବୁଲ୍ ତ୍ୟାଗ ଯାତ୍ରାର ଆୟୋଜନ ଚାଲିଲା । ତାଙ୍କପାଇଁ ଦୁଇ ଯୋଡ଼ା ଗରମ ପୋଷାକ ଆବଶ୍ୟକ ଥିଲା ସେଥିପାଇଁ ଉତ୍ତମ ଚାନ୍ଦ୍ କେତେ ପ୍ରକାର ନମୁନା ଆଗେ ଦେଖାଇଥିଲେ । ସେ ମାତ୍ର ଯୋଡ଼ିଏ ନମୁନା ପସନ୍ଦ କଲେ ।

ତହିଁ ଆରଦିନ ଉତ୍ତମ ଚାନ୍ଦ୍ ସୁଭାଷବାବୁଙ୍କୁ ସଙ୍ଗରେ ଧରି ହାଜି ସାହେବଙ୍କ ଘରକୁ ଗଲେ । ହାଜି ସାହେବଙ୍କ ଦର୍ଜୀ ମାପ ନେଇ ଯଥା ସମୟରେ ପୋଷାକ ତିଆରି କରିଦେଲା । କିନ୍ତୁ ୱେଷ୍ଟ କୋଟ୍‌ଟି ଦେଇ ପାରି ନଥିଲା । ପରେ ହାଜି ସାହେବଙ୍କ ସ୍ତ୍ରୀ (ଜର୍ମାନ ମହିଳା) ବର୍ଲିନ୍‌ସ୍ଥ ଭଗିନୀଙ୍କ ନିକଟକୁ ଡାକରେ ପଠାଇ ଦେଲେ ।

## ଶେଷ ଚିଠି

ତହିଁ ଆର ଦିନ ରହମତ୍ ଖାଁ ସୁଭାଷବାବୁଙ୍କ ଖଣ୍ଡିଏ ଚିଠି ନେଇ ଇଟାଲୀୟ ଦୂତାବାସରେ ଦେଇ ଆସିଲେ । ସେହି ଦିନ ଉପର ବେଳା ଇଟାଲୀୟ ରାଜଦୂତ, ସ୍ୱୟଂ ସସ୍ତ୍ରୀକ ଉତ୍ତମ ଚାନ୍ଦଙ୍କ ଦୋକାନକୁ ଆସି ଖଣ୍ଡିଏ ଚିଠି ଦେଇ କହିଗଲେ ଯେ— ସୁଭାଷ ବାବୁଙ୍କ ପାଇଁ ଏହା ହେଉଛି ତାଙ୍କର ଶେଷ ଚିଠି

ଚିଠିରେ ଲେଖାଥିଲା— "ସୁଭାଷ ବାବୁଙ୍କ ସମସ୍ତ ଜିନିଷ ପତ୍ର ସୁଟ୍‌କେଶରେ ପୂରାଇ ଉତ୍ତମ ଚାନ୍ଦଙ୍କ ଦୋକାନରେ ରଖିଥିବ । ମାର୍ଚ୍ଚ ୧୭ ତାରିଖ ଦିନ କାବୁଲ୍ ତ୍ୟାଗ କରିବାକୁ ହେବ, ଆପଣ ବର୍ଦ୍ଧେ ୧୭ ତାରିଖ ରାତି ୮ଟା ବେଳେ ସେନୋର କାରୋନୀଙ୍କ ବାସ ଭବନରେ ଉପସ୍ଥିତ ହେବେ । ସେଠାରେ ଦୁହିଁଙ୍କର ରାତ୍ରି ଭୋଜନର ବ୍ୟବସ୍ଥା ହୋଇଛି । ଯିବା ସମ୍ପର୍କରେ ଅନ୍ୟାନ୍ୟ ବିଶେଷ ବିବରଣୀ ସେଠାରେ ଜାଣିବେ ।

ଘରକୁ ଫେରି ଉତ୍ତମ ଚାନ୍ଦ ଜାଣିଲେ ଯେ, ସୁଭାଷ ବାବୁ ହାଜି ସାହେବଙ୍କ ଘରକୁ ଯାଇଛନ୍ତି । ଉତ୍ତମ ଚାନ୍ଦ ସେଠାକୁ ଯାଇ କହିଲେ— 'ଆଗେ ମୋତେ କିଛି ଖୁଆନ୍ତୁ, ତା'ପରେ ଏକ ଶୁଭ ସମ୍ବାଦ ଦେବି ।' ସେ କହିଲେ— 'ଦୁଃଖର ବିଷୟ, ଆପଣଙ୍କୁ ଦେଲାଭଳି ମୋଠାରେ କିଛି ନାହିଁ । ତେବେ ଖଣ୍ଡିଏ କେକ୍ ଦେଇପାରେ ।'

ସୁଭାଷ ବାବୁ ଖଣ୍ଡିଏ କେକ୍ ଦେଇ ସମ୍ବାଦଟି ଜଣାଇବାପାଇଁ ଅନୁରୋଧ କଲେ । ଉତ୍ତମ ଚାନ୍ଦ କହିଲେ ଯେ, ଆପଣ ଯେଉଁ ସମ୍ବାଦପାଇ ଏତେଦିନ ଅପେକ୍ଷା କରିଥିଲେ, ତାହା ଆଜି ଶେଷ ହୋଇଛି । ଏହା କହି ଚିଠି ଖଣ୍ଡିକ ତାଙ୍କ ହାତକୁ ବଢ଼ାଇ ଦେଲେ । ପତ୍ର ଖଣ୍ଡିକ ଆମୂଳଚୂଳ ପାଠକରି ସୁଭାଷ ବାବୁ କହିଲେ— 'ଏ ସମ୍ବାଦ ପାଇ ମୁଁ ଅତ୍ୟନ୍ତ ଖୁସି ହେଲି ।'

ତା'ପରେ ଉତ୍ତମ ଚାନ୍ଦ ନିଜ ଘରେ ତାଙ୍କୁ ଆଶ୍ରୟ ଦେଇ, ଯେଉଁ ଉପକାର କରିଛନ୍ତି, ସେଥିପାଇଁ ସେ ଉତ୍ତମ ଚାନ୍ଦଙ୍କୁ ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ । ଏଥିରେ ଉତ୍ତମ ଚାନ୍ଦ ହଠାତ୍ ସୁଭାଷ ବାବୁଙ୍କ ଚରଣ ସ୍ପର୍ଶକରି କହିଲେ— 'ମୋ ହାତ କମ୍ପା, ମୋ ପରିବାର ହାତ ଯଦି ଆପଣଙ୍କର କୌଣସି ଅସୁବିଧା ହୋଇଥାଏ, ତାହେଲେ ମୋତେ କ୍ଷମା ଦେବେ ।'

ଏହା ଶୁଣି, ସୁଭାଷ ବାବୁ ହସି ଉଠି କହିଲେ ''—ହଁ, ସବୁଅଛି, ତେବେ ଆପଣ ବା ଆପଣଙ୍କ ସ୍ତ୍ରୀ ଉପରେ ନୁହେଁ, ଆପଣଙ୍କର ସେହି ଗ୍ରେଟ ଝିଅଟି ଉପରେ । ମୁଁ ଯେତେବେଳେ ଖାଇବସେ ସେ ଗୋଟାକପରେ ଗୋଟିଏ ରୁଟି ପକାଇ ଚାଲିଥାଏ । ଦୁଇଟା ଖାଇବାକୁ ଇଚ୍ଛାଥିଲେ, ସେ ମୋତେ ପାଞ୍ଚଟା ରୁଟି ଖୁଆଇଥାଏ ।'' ସେଦିନ ହାଜୀ ସାହେବଙ୍କ ଘରୁ ବହୁ ବିଳମ୍ବରେ ସୁଭାଷ ବାବୁଙ୍କୁ ନେଇ ଉତ୍ତମ ଚାନ୍ଦ ବସାକୁ ଫେରିଲେ । ତହିଁ ଆର ଦିନ ମାର୍ଚ୍ଚ ୧୭ ତାରିଖ । ତାଙ୍କର ଜିନିଷ ପତ୍ର ଉତ୍ତମ ଚାନ୍ଦ ସୁଟ୍‌କେଶ୍‌ରେ ରଖିଦେଲେ । ସେନେର କାରେମାଙ୍କ ଶେଷ ଚିଠିରେ ତାଙ୍କ ଘରର ଠିକଣା ଥିଲା, ସୁତରାଂ ଘର ଖୋଜି ବାହାର କରିବାରେ କୌଣସି ଅସୁବିଧା ନଥିଲା ।

ଅପରାହ୍ଣ ୨ଟାରେ ସେନେର କାରେମା ଉତ୍ତମ ଚାନ୍ଦଙ୍କ ଦୋକାନକୁ ଆସି ସୁଭାଷ ବାବୁଙ୍କ ସୁଟ୍‌କେଶ୍‌ଟି ମାଗି ନେଇଗଲେ ।

ଉତ୍ତମ ଚାନ୍ଦଙ୍କ ଘରେ ସୁଭାଷ ବାବୁଙ୍କ ରହିବା ଆଜି ହେଉଛି ଶେଷ ଦିନ । ମାର୍ଚ୍ଚ ୧୭ ତାରିଖ ଦିନ ସକାଳେ ଜଳଖିଆ ସାରି, ସେ ଉତ୍ତମ ଚାନ୍ଦଙ୍କ ଝିଅ ପୁଅଙ୍କୁ ସ୍ନେହ ଚୁମ୍ବନ ଦେଇ ବିଦାୟ ଗ୍ରହଣ କଲେ । ସେଦିନ ହାଜୀ ସାହେବଙ୍କ ନିମନ୍ତ୍ରଣ ରକ୍ଷା କରି, ସାରାଦିନ ତାଙ୍କ ଘରେ କଟାଇଲେ । ପରେ ଅପରାହ୍ଣରେ ସେ ରହମତ୍ ଖାଁଙ୍କୁ ସଙ୍ଗରେ ନେଇ ସେନେର କାରେମାଙ୍କ ବାସ ଭବନରେ ପହଞ୍ଚିଥିଲେ ।

ତହିଁ ଆର ଦିନ ସକାଳ ଦଶଟାରେ ରହମତ୍ ଖାଁ, ଉତ୍ତମ ଚାନ୍ଦଙ୍କ ଦୋକାନକୁ ଆସି ଖବର ଦେଲେ ଯେ, ସୁଭାଷ ବାବୁ ଠିକ୍ ୯ଟା ବେଳେ ୟୁରୋପ୍ ଅଭିମୁଖେ କାବୁଲ୍ ତ୍ୟାଗ କରିଛନ୍ତି । ତାଙ୍କର ସଙ୍ଗୀଭାବେ ଦୁଇଜଣ ଜର୍ମାନ ଓ

ଜଣେ ଇଟାଲୀୟ ଅଫିସର୍ । ଇଟାଲୀୟ କର୍ତ୍ତୃପକ୍ଷ ସୁଭାଷ ବାବୁଙ୍କୁ ଯେଉଁ ପାସପୋର୍ଟ ଦେଇଥିଲେ, ସେଥିରେ ତାଙ୍କ ନାମ 'ତାରଟାନେ' ହୋଇଯାଇଥିଲା କିନ୍ତୁ ପ୍ରକୃତରେ ସେ ଅର୍ଲାଣ୍ଡୋ ମାଜ୍ଜୋଟା (Orland mazzotha) ନାମରେ ଯାଉଥିଲେ ।

ତାଙ୍କ ସହିତ ଯେଉଁ ଦୁଇଜଣ ଜର୍ମାନ ଥିଲେ, ସେଥି ମଧ୍ୟରୁ ଜଣଙ୍କର ନାମ ଡକ୍ଟର ଉଏଲର୍ । ସେ ଗ୍ରନ୍ଥ ସ୍ୱନାକ୍ ଲୋକ । ଜର୍ମାନ କର୍ତ୍ତୃପକ୍ଷ ସୁଭାଷ ବାବୁଙ୍କୁ ଇଟାଲୀୟଙ୍କ ହାତରେ ଛାଡ଼ି ନ'ଦେବା ଉଦ୍ଦେଶ୍ୟରେ ଉଏଲରଙ୍କୁ ପଠାଇଥିଲେ ।

## ମସ୍କୋରୁ ବର୍ଲିନ୍

ସୁଭାଷ ବାବୁଙ୍କୁ ବେଶୀ ଦିନ ମସ୍କୋରେ ନ'ଛାଡ଼ି ସିଧାସଳଖ ବର୍ଲିନ୍ ନେଇଯିବା ପାଇଁ ଜର୍ମାନ କର୍ତ୍ତୃପକ୍ଷ ଡ଼କ୍ଟର ଉଏଲରଙ୍କୁ ନିର୍ଦ୍ଦେଶ ଦେଇଥିଲେ । ପ୍ରଥମେ ସେମାନେ କାବୁଲ୍‌ରୁ ସମସ୍ତ ଜିନିଷ ପତ୍ର ଗାଡ଼ିରେ ବୋଝେଇ କରି, ରୁଷ ଆଫ୍‌ଗାନ ସୀମାନ୍ତ ଅଞ୍ଚଳରେ ଖୁଷ୍କ ନାମକ ସ୍ଥାନରେ ରାତ୍ର ଯାପନ କରି, ପରଦିନ ସେଠାରୁ ଟ୍ରେନ୍ ଯୋଗେ ମସ୍କୋ ଯାତ୍ରା କଲେ । ସେଠାରୁ ତାଙ୍କୁ ବର୍ଲିନ୍ ନେଇଯିବାପାଇଁ ଖଣ୍ଡିଏ ବିମାନ ଅପେକ୍ଷା କରି ରହିଥିଲା । ମାର୍ଚ୍ଚ ୨୭ ତାରିଖ ରାତିରେ ମସ୍କୋରୁ ସେ ଜର୍ମାନ ରାଜଧାନୀ ବର୍ଲିନ୍‌କୁ ଯାତ୍ରା କରିଥିଲେ ।

## ଜର୍ମାନୀରେ ସୁଭାଷ ଚନ୍ଦ୍ର

୧୯୪୧ ମାର୍ଚ୍ଚ ୨୮ ତାରିଖ ଦିନ ସୁଭାଷ ବାବୁ ମସ୍କୋ ହୋଇ ବିମାନପଥରେ ଯାଇ ବର୍ଲିନରେ ପହଞ୍ଚି ଥିଲେ । ଏହାପରେ ତାଙ୍କ ଜୀବନର ସମ୍ପୂର୍ଣ୍ଣ ନୂତନ ଅଧ୍ୟାୟ ସୃଷ୍ଟି ହେଲା । ବ୍ରିଟିଶ୍ ସରକାରଙ୍କ ଶତ୍ରୁ ପକ୍ଷରେ ଯୋଗଦେବା, ଏବଂ ସେମାନଙ୍କ ସହାୟତାରେ ଭାରତ ବର୍ଷରୁ ବ୍ରିଟିଶ୍ ସାମ୍ରାଜ୍ୟବାଦର ମୂଳୋତ୍ପାଟନ କରିବା ହେଲା ତାଙ୍କର ମୂଳ ଉଦ୍ଦେଶ୍ୟ । କାରଣ ସେ ବୁଝିଥିଲେ, ବୈଦେଶିକ ଶକ୍ତିର ସାହାଯ୍ୟ ବିନା, ଭାରତ ବର୍ଷ ଇଂରେଜ୍ କବଳରୁ ମୁକ୍ତିଲାଭ କରିବା ସମ୍ଭବ ନୁହେଁ । ଏହି ଉଦ୍ଦେଶ୍ୟରେ ସେ ଦୁର୍ଗମ କନ୍ଦର ଆଫ୍‌ଗାନ୍ ସୀମାନ୍ତ ଅତିକ୍ରମ କରି ୟୁରୋପ ଯାତ୍ରା କରିଥିଲେ । ସୁଭାଷ ବାବୁ ଚେଷ୍ଟା କରିଥିଲେ । କଲିକତାସ୍ଥ ଜାପାନୀ ଦୂତଙ୍କ ସହାୟତାରେ ଅତି ସହଜ ଭାବେ ସେ ଜାପାନ ଯାଇ ପାରିଥାନ୍ତେ । କିନ୍ତୁ ମୂଳରୁ ତାଙ୍କର ଇଚ୍ଛାଥିଲା ସେ ରୁଷ ଯାଇ ପ୍ରଥମେ ସେଠାକାର ଉଚ୍ଚ କର୍ତ୍ତୃପକ୍ଷଙ୍କ ସହିତ ଆଲୋଚନା କରିବେ । ଏଥିପାଇଁ ସେ ଭାରତ ବର୍ଷରୁ ଛଦ୍ମ ବେଶରେ ଆସି ଆଫ୍‌ଗାନୀ ସ୍ଥାନରେ ଆତ୍ମଗୋପନ କରି ରହି ଅଦମ୍ୟ ଚେଷ୍ଟା କରିଥିଲେ । କିନ୍ତୁ ରୁଷ ପକ୍ଷ ଏ ବାବଦରେ ସୁଭାଷ ବାବୁଙ୍କୁ

ସହଯୋଗ କଲେ ନାହିଁ । ତଥାପି ସେ ବର୍ଲିନରେ ରହି ମସ୍କୋଯିବା ଅନବରତ ଚେଷ୍ଟା କରିଥିଲେ । କିନ୍ତୁ ଚତୁର ଜର୍ମାନ୍ ଶାସକବର୍ଗ, ସୁଭାଷ ବାବୁଙ୍କ ପରି ପ୍ରତିପତ୍ତିଶାଳୀ ଜଣେ ଭାରତୀୟ ନେତାଙ୍କୁ ରୁଷ ହାତରେ ସମର୍ପି ଦେବାକୁ ଉଚିତ ମନେ କଲେ ନାହିଁ ।

ଏହା ମଧ୍ୟ ସତ୍ୟ ଯେ, ସୁଭାଷ ଚନ୍ଦ୍ରଙ୍କ ଭାରତ ତ୍ୟାଗ ପରେ, ତାଙ୍କର ନିନ୍ଦୁକ ବିରୋଧୀ ଗୋଷ୍ଠି ନାନା ପ୍ରକାର କୁତ୍ସାରଟନା କରିଥିଲେ । ଏପରିକି ତତ୍କାଳୀନ ଭାରତୀୟ କମ୍ୟୁନିଷ୍ଟ ଦଳ ଏବଂ କଂଗ୍ରେସ ଦକ୍ଷିଣ ପନ୍ଥି ଦଳର ବହୁ ବିଶିଷ୍ଟ ଜନନାୟକଗଣ ବହୁ କ୍ଷେତ୍ରରେ ତାଙ୍କ ବିରୋଧରେ ବିଷ ଉଦ୍‌ଗୀରଣ କରିବା ସଙ୍ଗେ ସଙ୍ଗେ ସେ ଜଣେ ଫାସିଷ୍ଟ ବ୍ୟକ୍ତି ବୋଲି ରଟନା କରିଥିଲେ । କିନ୍ତୁ କର୍ମବୀର ସୁଭାଷ ଚନ୍ଦ୍ରଙ୍କ କାର୍ଯ୍ୟକଳାପ ପୂର୍ଣ୍ଣ ଗଣତାନ୍ତ୍ରିକ ପଦ୍ଧତିରେ ଅନୁସୃତ ହେଉଥିଲା । ସେଥିରେ ଡ଼ିକ୍‌ଟେଟରଶିପର କୌଣସି ସ୍ଥାନ ନଥିଲା । ଏପରିକି ସେ ଅସ୍ଥାୟୀ ଆଜାଦହିନ୍ଦ ସରକାରର ସର୍ବାଧିନାୟକ ରୂପେ ବ୍ରିଟିଶ ସରକାର ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲାବେଳେ ମଧ୍ୟ, ସମ୍ପୂର୍ଣ୍ଣ ଗଣତନ୍ତ୍ର ପଦ୍ଧତି ଅନୁସରଣ କରିଥିଲେ । ଦେଶର କୌଣସି ଜାତୀୟ ନେତାଙ୍କ ତାଙ୍କ ମନରେ କେବେ ହେଲେ ବିଦ୍ୱେଷ ମନୋଭାବ ନଥିଲା । ତେବେ ଏହା ନିଘଟ ସତ୍ୟ ଯେ, ଭାରତର ସ୍ୱାଧିନତା ପାଇଁ ସୁଭାଷ ଚନ୍ଦ୍ରଙ୍କର ଯେଉଁ ତ୍ୟାଗ ଓ ଅବଦାନ ତାହା ଅତୁଳନୀୟ ଓ ଅଦ୍ୱିତୀୟ ଅଟେ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ସୁଭାଷ ବାବୁ ଜର୍ମାନୀରେ ପହଞ୍ଚିବା ଅଳ୍ପ କେତେ ମାସ ପରେ ଅର୍ଥାତ୍ ୧୯୪୧ ଜୁନ୍ ୨୨ ତାରିଖ ଦିନ ରୁଷ ଜର୍ମାନ ମଧ୍ୟରେ ଘମାଘୋଟ ଯୁଦ୍ଧ ଆରମ୍ଭ ହୋଇଗଲା । ଦ୍ୱିତୀୟ ବିଶ୍ୱଯୁଦ୍ଧର ଏହା ଥିଲା, ସବୁଠାରୁ ଭୟଙ୍କର ରଣାଙ୍ଗନ, ଯାହାକି ଏକ ହଜାର ମାଇଲ୍ ବ୍ୟାପି ଅଞ୍ଚଳ ବିସ୍ତୃତ ଥିଲା । ଏହି ଘଟଣାର କେତେ ମାସ ପରେ ଏଣେ ଏସିଆ ଭୂ-ଖଣ୍ଡରେ ମଧ୍ୟ ଦ୍ୱିତୀୟ ମହାଯୁଦ୍ଧର ରଣ ଦୁନ୍ଦୁଭି ବାଜି ଉଠିଲା । ୧୯୪୧ ଡିସେମ୍ବର ୭ ତାରିଖ ଦିନ, ସୁଦୂର ପ୍ରାଚ୍ୟର ପାର୍ଲ୍‌ହାର୍ବର ଉପରେ ଜାପାନର ବ୍ୟୋମ ବାହିନୀ ହଠାତ୍ ଅତର୍କିତ ଭାବେ ପ୍ରଚଣ୍ଡ ବିମାନ ଆକ୍ରମଣ ଆରମ୍ଭ କଲା । ଯାହାର ଫଳରେ ଇଂଲଣ୍ଡ ଆମେରିକା ସହିତ ଜାପାନର ସମ୍ମୁଖ ସଂଗ୍ରାମ ଆରମ୍ଭ ହୋଇଗଲା । ଏହିପରି ଭାବେ ୟୁରୋପ ଓ ଏସିଆ ମହାଦେଶରେ ବିଶ୍ୱଯୁଦ୍ଧର ଗତି ବଦଳିଯିବା ଯୋଗୁଁ, ସେ ଆଉ ରୁଷକୁ ଯାଇପାରିଲେ ନାହିଁ । କିନ୍ତୁ ଆଗରୁ ରୁଷିଆର ସାହାଯ୍ୟରେ ଭାରତର ସ୍ୱାଧିନତା ଲଭି ପାଇଁ ସେ ପରିକଳ୍ପନା କରିଥିଲେ ।

ବର୍ଲିନରେ ପହଞ୍ଚି, କିଛି ଦିନ ପାଇଁ ଜର୍ମାନୀର ରାଜନୀତିକ ପରିସ୍ଥିତି ଅନୁଧ୍ୟାନ କଲାପରେ, ସେ ହିଟଲରଙ୍କ ସହିତ ମିଶିଥିଲେ। ପୂର୍ବରୁ ଉଭୟଙ୍କ ଭିତରେ ପତ୍ରଚିଠି ଥିଲେ ମଧ୍ୟ, ଏଥିରର ଦେଖାସାକ୍ଷାତ୍ ସମ୍ପୂର୍ଣ୍ଣ ଗୁରୁତ୍ୱପୂର୍ଣ୍ଣ, ଏବଂ ଭିନ୍ନ ଢଙ୍ଗର ଥିଲା । ଏଥିର ହିଟ୍ଲର ସୁଭାଷ ଚନ୍ଦ୍ରଙ୍କୁ ସମୋଚିତ ସମ୍ବର୍ଦ୍ଧନା ଜଣାଇଲେ ସତ; କିନ୍ତୁ ବ୍ରିଟିଶ ପରାଧୀନ ଭାରତର ଜଣେ ପଳାତକ ନେତାଙ୍କ ପାଇଁ ତାଙ୍କ ମନରେ ଘୋର ସନ୍ଦେହ ଥିଲା। କାରଣ, କୌଣସି ବ୍ୟକ୍ତିଙ୍କୁ ସହଜରେ ବିଶ୍ୱାସ କରିବା, ହିଟ୍ଲରଙ୍କ ସ୍ୱଭାବ ନୁହଁ। ଏଣୁ ପ୍ରଥମେ ସେ ସୁଭାଷ ଚନ୍ଦ୍ରଙ୍କ ସମ୍ବନ୍ଧେ କାବୁଲସ୍ଥ ରାଜଦୂତଙ୍କ ଜରିଆରେ ଗୁପ୍ତ ଖବର ଜାଣିବାକୁ ଚାହିଁଥିଲେ। ଏବଂ ଯଥା ସମୟରେ ରାଜଦୂତଙ୍କ ଠାରୁ ଏହି ଉତ୍ତର ପାଇଲେ ଯେ,—'ସୁଭାଷ ଚନ୍ଦ୍ର ହେଉଛନ୍ତି, ଭାରତୀୟ ଜାତୀୟ କଂଗ୍ରେସର ପୂର୍ବତନ ସଭାପତି ତଥା ମହାନ ନେତା। ଏବଂ ବ୍ରିଟିଶ ସରକାରଙ୍କର ପରମ ଶତ୍ରୁ। ଅତଏବ ଆମ ପକ୍ଷରୁ ସବୁ ପ୍ରକାର ସାହାଯ୍ୟ ତାଙ୍କୁ ଦିଆଯାଇପାରେ।"

## ୟୁରୋପରେ ଆଜାଦ୍ ହିନ୍ଦ ଫୌଜ

କାବୁଲସ୍ଥ ଜର୍ମାନ ରାଜଦୂତଙ୍କ ଠାରୁ ଠିକ ଉତ୍ତର ପାଇବା ପରେ ଆଡୋଲ୍ଫ୍ ହିଟ୍ଲର ସୁଭାଷ ଚନ୍ଦ୍ରଙ୍କ ସହ ଗୁରୁତ୍ୱପୂର୍ଣ୍ଣ ବାର୍ତ୍ତାଳାପ କଲେ। ଏବଂ ତାଙ୍କର ପରିକଳ୍ପନା ତଥା କାର୍ଯ୍ୟାବଳୀକୁ ଉପବନ୍ଧିତ କରିବା ପାଇଁ, ନିଜର ମନ୍ତ୍ରୀମଣ୍ଡଳରେ ଜଣେ ସ୍ୱତନ୍ତ୍ର ଭାବେ କ୍ୟାବିନେଟ୍ ପଦ୍ୟା ମନ୍ତ୍ରୀଙ୍କୁ ନିଯୁକ୍ତ କଲେ।। ପ୍ରଥମେ ସୁଭାଷବାବୁଙ୍କ ରହିବା ପାଇଁ ଦୂବଦ୍ୟାନ ଟେରସରେ, ବର୍ଲିନ୍ ଉପକଣ୍ଠରେ ପ୍ରାସାଦୋପମ ଭବନ ରାଜକୀୟ ବାସଭବନ ନିର୍ଦ୍ଦିଷ୍ଟ କରାଗଲା। ଡ୍ରେସଡନ୍ ସହରଠାରେ ସ୍ୱତନ୍ତ୍ରଭାବେ ଖାସ୍ କରି ଗୋଟିଏ ଶକ୍ତିଶାଳୀ ଆଜାଦ୍ ହିନ୍ଦ୍ ରେଡ଼ିଓ ଷ୍ଟେସନ ସ୍ଥାପନ କରାଗଲା। ଛାପାଖାନା, ଅଫିସ ଗୃହ, ସେନାଧ୍ୟକ୍ଷମାନଙ୍କ ବାସଭବନ ସାଙ୍ଗେ ଯାନବାହାନ, ସେନାବାହିନୀର ଶିକ୍ଷା ଶିବିର, ହସପିଟାଲ, ପୋଷ୍ଟଅଫିସ ଏବଂ ସେନା ଛାଉଣୀ ମଧ୍ୟ ଖୋଲାଗଲେ। ସୁଭାଷଚନ୍ଦ୍ରଙ୍କ ବ୍ୟବହାର ପାଇଁ ଜର୍ମାନ ଡ୍ରାଇଭର ସହ ବଡ଼ିଗାର୍ଡ଼ ଏବଂ ଉନ୍ନତ ଧରଣର ଶବହ୍ୱାନ ମୋଟର କାର୍ ଯୋଗାଇ ଦିଆ ଯାଇଥିଲା। ସେହି ଗାଡ଼ିର ଅଗ୍ରଭାଗରେ ଲମ୍ଫ ଦେଉଥିବା ସିଂହର ଛବିଥିବା ତ୍ରିରଙ୍ଗା ପତାକା ଉଡ଼ୁଥିଲା। ଆଜାଦ୍ ହିନ୍ଦ ଫୌଜର ମୁଖପତ୍ରଭାବେ 'ଭାଇବନ' ନାମକ ଉର୍ଦ୍ଦୁ ଓ ଇଂରେଜୀର ଦୁଇଗୋଟି ପତ୍ରିକା ବର୍ଲିନରୁ ପ୍ରକାଶ ପାଉଥିଲା। ସମଗ୍ର ଜର୍ମାନ ଜନତା, ହିଟଲର ଓ ତାଙ୍କ ଶାସକ ବର୍ଗଙ୍କୁ ଯେଉଁ ସମ୍ମାନ ଦେଖାଉଥିଲେ, ଠିକ୍ ସୁଭାଷଚନ୍ଦ୍ର ଓ ତାଙ୍କ ଆଜାଦ୍ ହିନ୍ଦ ବାହିନୀଙ୍କୁ ମଧ୍ୟ ସେହି ସମ୍ମାନ ଦିଆ ଯାଉଥିଲା। ଆଜାଦ

ହିନ୍ଦ-ଫୌଜର ସେମର୍ଯ୍ୟାଦା ମୈତ୍ରୀ-ସୂତ୍ରରେ ଆବଦ୍ଧ ସ୍ୱାଧୀନ ଦେଶର ସେନା ବାହିନୀ ଭଳି ହୋଇଥିଲା । ଏପରିକି ସ୍ୱୟଂ ହିଟଲର ଓ ତାଙ୍କର ବରିଷ୍ଠ ସହକର୍ମୀ ଦ୍ୱୟ ଜେନେରାଲ ମେଜ ଓ ଜେନେରାଲ ଗୋୟରିଙ୍ଗ, ସୁଭାଷବାବୁଙ୍କୁ ଜଣେ ସ୍ୱାଧୀନ ରାଷ୍ଟ୍ରର ସର୍ବାଧିନାୟକ ଘୋଷଣା କରିବା ସଙ୍ଗେ ସଙ୍ଗେ ନିଜେ ମଧ୍ୟ ଯଥୋଚିତଭାବେ ରାଜକୀୟ ସମ୍ମାନ ପ୍ରଦର୍ଶନ କରୁଥିଲେ ।

ଥରେ ଡ୍ରେସଡନ୍ ସହର ଠାରେ ଆଜାଦ୍ ହିନ୍ଦ୍ ବାହିନୀ ଓ ଜର୍ମାନ୍ ବାହିନୀର ମିଳିତ ପାସିଙ୍ଗ୍ ଆଉଟ୍ ପ୍ୟାରେଡ୍ ଉତ୍ସବରେ, ସୁଭାଷ ଚନ୍ଦ୍ର ଅଭିବାଦନ କଲାବେଳେ, ପାର୍ଶ୍ୱରେ ହିଟ୍ଲର୍ ଦଣ୍ଡାୟମାନ ହୋଇ ଉଭୟ ସୈନ୍ୟଙ୍କୁ ସମ୍ବୋଧନ କରି କହିଥିଲେ "ହେ ମୋର ଜର୍ମାନସ୍ଥ ଆଜାଦ୍ ହିନ୍ଦ୍ ଫୌଜ ଓ ଜର୍ମାନ ସୈନିକ ବୃନ୍ଦ, ମୁଁ କେବଳ ଆଠକୋଟି ଜନତାର ଶାସକ ମାତ୍ର । କିନ୍ତୁ ସୁଭାଷ ଚନ୍ଦ୍ର ହେଉଛନ୍ତି ୪୦ କୋଟି ଜନତାର ନେତା । ଏଣୁ ଆପଣମାନେ ମୋତେ ଯେତିକି ସମ୍ମାନ ଦେଖାଉଛନ୍ତି, ସେହି ତୁଳନାରେ ମିଷ୍ଟର ବୋଷଙ୍କ ସମ୍ମାନ ପାଞ୍ଚ-ଗୁଣ ହେବା ଆବଶ୍ୟକ । ହିଟଲର୍‌ଙ୍କ ଏହି ମନ୍ତବ୍ୟରେ, ସୁଭାଷବାବୁ ଇସତ୍ ହସି ପରେ ତାଙ୍କ ସହିତ କରମର୍ଦ୍ଦନ କରିଥିଲେ ।

ଯୁଦ୍ଧ ପୂର୍ବରୁ ଯେଉଁ ଭାରତୀୟ ଛାତ୍ରମାନେ ଜର୍ମାନରେ ରହି ଲେଖାପଢ଼ା କରୁଥିଲେ ଏବଂ ବିଭିନ୍ନ କାର୍ଯ୍ୟରେ ନିଯୁକ୍ତ ଥିଲେ, ସେମାନଙ୍କ ମଧ୍ୟରୁ ୩୦ ଜଣଙ୍କୁ ନେଇ ପ୍ରଥମେ ଆଜାଦହିନ୍ଦ୍ ଅଫିସ କାର୍ଯ୍ୟ ଆରମ୍ଭ ହେଲା । ପରେ ବ୍ରିଟିଶ୍ ଭାରତୀୟ ବାହିନୀର ଜଓ୍ୱାନ, ଯେଉଁମାନେ କି ପଶ୍ଚିମ ରଣାଙ୍ଗନରେ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ କରୁଥିଲେ, ପରେ ପରାସ୍ତ ହୋଇ ଧରାପଡ଼ି, ଜର୍ମାନୀର ବିଭିନ୍ନ ଜେଲରେ କଏଦୀଭାବେ ନିର୍ଯ୍ୟାତିତ ଜୀବନ ବିତାଉଥିଲେ ସେହି ସବୁ ଜଓ୍ୱାନମାନଙ୍କୁ ଏକତ୍ରିତ କରି, ସୁଭାଷ ଚନ୍ଦ୍ର ଜାତୀୟତା ବୋଧରେ ଅନୁପ୍ରାଣିତ କରାଇଥିଲେ, ସେମାନଙ୍କ ମନରେ ଅପୂର୍ବ ପରିବର୍ତ୍ତନ ଘଟିଥିଲା । ଦେଶର ମୁକ୍ତିପାଇଁ ପ୍ରାଣବଳୀ ଦେବାକୁ ଉତ୍କଣ୍ଠିତ ଭାବେ ସେମାନେ ଆଜାଦହିନ୍ଦ୍ ଫୌଜରେ ଯୋଗ ଦେଇଥିଲେ ଏବଂ ପରବର୍ତ୍ତୀ କାଳେ ବ୍ରିଟିଶ୍ ବିରୁଦ୍ଧରେ ପୁଣି ଯୁଦ୍ଧ କରିଥିଲେ । ଜର୍ମାନସ୍ଥ ଆଜାଦହିନ୍ଦ୍ ଫୌଜର ସଂଖ୍ୟା ୧୪ ହଜାରରୁ ୨୦ ହଜାର ଥିଲା । ଡ୍ରେସଡନ୍ ଶିବିରରେ ତାଲିମ ପ୍ରାପ୍ତ ଆଜାଦହିନ୍ଦ୍ ଫୌଜର ଜଓ୍ୱାନମାନଙ୍କୁ ୟୁରୋପର ବିଭିନ୍ନ ରଣାଙ୍ଗନକୁ ପଠା-ଯାଉଥିଲା । କିନ୍ତୁ ରୁଷ ରଣାଙ୍ଗନରେ ଯୁଦ୍ଧ କରିବାପାଇଁ ସୁଭାଷ ବାବୁ ଆଜାଦହିନ୍ଦ୍ ବାହିନୀର କୌଣସି ଜଓ୍ୱାନକୁ ପଠାଇ ନଥିଲେ କିମ୍ବା ଅନୁମତି ଦେଇ ନ'ଥିଲେ ।

## ସୁଭାଷ ଚନ୍ଦ୍ରଙ୍କ ଅନ୍ତର୍ଦ୍ଧାନ ପରେ ଭାରତର ରାଜନୈତିକ ପରିସ୍ଥିତି

ସୁଭାଷ ଚନ୍ଦ୍ର ବର୍ଲିନରେ ପହଞ୍ଚିବା ସଙ୍ଗେ ସଙ୍ଗେ ମହାଯୁଦ୍ଧର ଗତି ଓ ପ୍ରକୃତି ମଧ୍ୟ କ୍ରମଶଃ ପରିବର୍ତ୍ତନ ହେବାକୁ ଲାଗିଲା । ଯୁଦ୍ଧ କ୍ଷେତ୍ରରେ ମିତ୍ର ଶକ୍ତିମାନଙ୍କର ଘୋର ବିପର୍ଯ୍ୟୟ ଘଟିଲା । ସୁଦୂର ପ୍ରାଚ୍ୟ ରଣ କ୍ଷେତ୍ରରେ ଜାପାନ, ଅଳ୍ପ ଦିନ ମଧ୍ୟରେ ଫିଲିପାଇନ ଦ୍ୱୀପ ପୁଞ୍ଜଠାରୁ ଆରମ୍ଭ କରି, ବର୍ମା ପାଏ ସମସ୍ତ ଭୂଖଣ୍ଡକୁ ଦଖଲ କରିନେଲା । ସେଣେ ମଧ୍ୟ ପ୍ରାଚ୍ୟରେ, ଭୂମଧ୍ୟ ସାଗର କୂଳବର୍ତ୍ତୀ ସମଗ୍ର ଉତ୍ତର ଆଫ୍ରିକାକୁ ଜର୍ମାନୀ ଦଖଲ କରିନେଲା । ପଶ୍ଚିମ ୟୁରୋପ ଓ ରୁଷ ରଣ କ୍ଷେତ୍ରରେ ମଧ୍ୟ ଜର୍ମାନର ବିପୁଳ ଜୟ ଲାଭ ଘଟିଥାଏ । ଏଣେ ଭାରତର ରାଜନୈତିକ ଅବସ୍ଥା କ'ଣ ହେବ ? ଏକଥା ସ୍ପଷ୍ଟ ଘୋଷଣା କରିଲେ କଂଗ୍ରେସ ବ୍ରିଟିଶ ସରକାରଙ୍କ ସହିତ ସହଯୋଗ ବା ଯୁଦ୍ଧରେ କୌଣସି ସାହାଯ୍ୟ କରିବ ନାହିଁ ବୋଲି ଗାନ୍ଧିଜୀ ଘୋଷଣା କରି, ବ୍ୟକ୍ତିଗତ ସତ୍ୟାଗ୍ରହ କରିବାପାଇଁ ଡାକରା ଦେଲେ । ଏ ସମସ୍ତ ଘଟଣା ସୁଭାଷ ଚନ୍ଦ୍ର ଜର୍ମାନୀରେ ଥାଇ ନିଜର ଗଭୀର ବୋଧ ଶକ୍ତି ଦ୍ୱାରା ଆନ୍ତର୍ଜାତିକ ପରିସ୍ଥିତିର ପୃଷ୍ଠଭୂମିକାରେ, ଭାରତର ଆଭ୍ୟନ୍ତରୀଣ ପରିସ୍ଥିତିକୁ ଦେଖି ପାରୁଥିଲେ । ଏଣୁ ସେ ବର୍ଲିନରୁ ଆଜାଦହିନ୍ଦ ରେଡ଼ିଓ ମାଧ୍ୟମରେ ଦେଶବାସୀଙ୍କୁ ଉଦ୍‌ବୋଧନ ଦେଇ ସ୍ୱାଧୀନତା ସଂଗ୍ରାମ ଆରମ୍ଭ କରିବାପାଇଁ ବଜ୍ର ଗମ୍ଭୀର ସ୍ୱରରେ ଆହ୍ୱାନ ଦେଉଥାନ୍ତି । ୧୯୪୨ ମାର୍ଚ୍ଚ ମାସରେ ବର୍ଲିନଠାରୁ ତାଙ୍କର ପ୍ରଥମ ବେତାର ଭାଷଣ ପୂର୍ବରୁ, ରୋମ ବେତାର ଘୋଷଣା କରିଥିଲା ଯେ— "ବର୍ଲିନରେ ଜର୍ମାନୀର ସର୍ବାଧିନାୟକ ହର୍ ହିଟଲର, ସୁଭାଷ ଚନ୍ଦ୍ରଙ୍କୁ ରାଜୋଚିତ ସମ୍ବର୍ଦ୍ଧନା କରିଛନ୍ତି । ଏବଂ ସେ ସ୍ୱାଧୀନ ଭାରତର ରାଷ୍ଟ୍ରଦୂତ ପଦମର୍ଯ୍ୟାଦା ମଧ୍ୟ ଲାଭ କରିଛନ୍ତି ।"

ଏହା ନଗ୍ନ ସତ୍ୟ ଯେ, ସୁଭାଷ ଚନ୍ଦ୍ରଙ୍କ ଭାରତ ତ୍ୟାଗପରେ, ଏଣେ ଭାରତୀୟ ରାଜନୈତିକ ପରିସ୍ଥିତି ମଧ୍ୟ ସମ୍ପୂର୍ଣ୍ଣ ପରିବର୍ତ୍ତନ ହେବାକୁ ଲାଗିଲା କାରଣ, ବର୍ଲିନସ୍ଥ ଆଜାଦହିନ୍ଦ ରେଡ଼ିଓର ସ୍ୱାଧୀନତା ସଂଗ୍ରାମପାଇଁ ଦେଶବାସୀଙ୍କୁ ତାଙ୍କର ଅହରହ ନିବେଦନରେ, ଇଂରେଜ ସରକାର ବିଚଳିତ ହୋଇପଡ଼ିଲେ । ଆଗକୁ ଭାରତରେ ସଶସ୍ତ୍ର ବିପ୍ଳବର ସମ୍ଭାବନା ଦେଖି ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ଜେଲରେ ଆବଦ୍ଧ ରଖିବା ପରିକଳ୍ପନା କରାଗଲା । ଫଳରେ ୧୯୪୧ ଡିସେମ୍ବର ୧୧ ତାରିଖ ଦିନ ସୁଭାଷ ଚନ୍ଦ୍ରଙ୍କ ବଡ଼ ଭାଇ ୰ ଶରତ ଚନ୍ଦ୍ର ବୋଷଙ୍କୁ ଗିରଫ କରି କଲିକତାରୁ ତ୍ରିଚିନାପଲ୍ଲୀ ଜେଲକୁ ନିଆଗଲା । ତାପରେ ତାଙ୍କ ପରିବାରର ଧିରେନ ବୋଷ, ଡା· ଶିଶିର ବୋଷ ଓ ଅରବିନ୍ଦ ବୋଷଙ୍କୁ ମଧ୍ୟ ଗିରଫ କରି ସୁଦୂର ପଞ୍ଜାବ ପ୍ରଦେଶକୁ ନିଆଗଲା । ଏହାପରେ ଦେଶ ବ୍ୟାପି ଫରୱାର୍ଡ଼ ବ୍ଲକ୍‌ର ସୁଭାଷ ପନ୍ଥିଙ୍କ ଉପରେ ଶନି ଦୃଷ୍ଟି ପଡ଼ିଲା, ସେମାନଙ୍କୁ ସନ୍ଦେହରେ ଗିରଫକରି ଭାରତ ରକ୍ଷା

ଆରମ୍ଭ କଲେ। ଜନ ସାଧାରଣଙ୍କ ବୈପ୍ଳବିକ ପ୍ରଚେଷ୍ଟାକୁ ବ୍ୟର୍ଥ କରି କଂଗ୍ରେସ ନେତାମାନଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ଚତୁର ଇଂରେଜ ସରକାର ସେତେବେଳେ ଗୋଟିଏ ସୁଚିନ୍ତିତ ପରିକଳ୍ପନା କଲେ। ଯାହାର ଫଳେ ୧୯୪୨ ଏପ୍ରିଲ ମାସରେ ଇଂରେଜ ପ୍ରତିନିଧି ସାର୍ ଷ୍ଟାଫୋର୍ଡ କ୍ରିପ୍ସ ଏକ ନୂଆ ଯୋଜନା ନେଇ ଦିଲ୍ଲୀରେ ଆସି ଉପସ୍ଥିତ ହେଲେ। ଇତିହାସରେ ଏହା କ୍ରିପସ ପ୍ରସ୍ତାବ ନାମରେ ପରିଚିତ। ମାର୍ଚ୍ଚ ୧୭ ଦିନ ଆଲୋଚନା-ଆଲୋଚନା ପରେ, ଶେଷକୁ ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇ ଫେସର ଫାଟିଲା। ଏଠାରେ ଉଲ୍ଲେଖ ଯୋଗ୍ୟ ଯେ, 'କ୍ରିପ୍ସ ମିଶନ୍' ପ୍ରସ୍ତାବ ଗ୍ରହଣ ନକରିବାପାଇଁ ସେତେବେଳେ ସୁଭାଷ ଚନ୍ଦ୍ର ବର୍ଲିନରୁ ବେତାର ଯୋଗେ ଭାରତ ଦେଶବାସୀଙ୍କୁ ଅନୁରୋଧ ଜଣାଇଥିଲେ।

## ଅଗଷ୍ଟ ବିପ୍ଳବ

'କ୍ରିପ୍ସ ପ୍ରସ୍ତାବ' ବ୍ୟର୍ଥ ହେବାପରେ ଭାରତ ବ୍ୟାପି ଏକ ନବ ଜାଗରଣର ସୂଚନା ମିଳିଲା। ଆଗକୁ ବିପ୍ଳବର ସମ୍ମୁଖୀନ ହେବାପାଇଁ ଦେଶବାସୀ ପ୍ରସ୍ତୁତ ହୋଇ ରହିଲେ। ତେଣେ ଯୁଦ୍ଧ କ୍ଷେତ୍ରରେ ଇଂରେଜ ପକ୍ଷର ଅନବରତ ପରାଜୟ, ଏଣେ ବର୍ଲିନରୁ ସୁଭାଷ ଚନ୍ଦ୍ରଙ୍କ ଅଗ୍ନି-ବର୍ଷଣ ବୈପ୍ଳବିକ ଉଦ୍‌ବୋଧନ, ଦେଶବାସୀଙ୍କ ମନରେ ଏକ ଅପୂର୍ବ ସ୍ପନ୍ଦନ ଆଣିଦେଲା। ଜନ ସାଧାରଣଙ୍କ ମନୋଭାବ ଲକ୍ଷକରି କଂଗ୍ରେସ ନେତାଗଣ ଭବିଷ୍ୟତ ପନ୍ଥା ସ୍ଥିର କରିବା ନିମନ୍ତେ ୧୯୪୨ ଅଗଷ୍ଟ ୮ ତାରିଖ ଦିନ ବୋମ୍ବାଇଠାରେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ ଅନୁଷ୍ଠିତ ହେଲା। ଏହି ବୈଠକରେ କଂଗ୍ରେସ ପକ୍ଷରୁ ଐତିହାସିକ 'ଭାରତ ଛାଡ' ପ୍ରସ୍ତାବର ଚରମ ପତ୍ର ଇଂରେଜ ସରକାରଙ୍କ ନିକଟରେ ଗାନ୍ଧିଜୀ ଉପସ୍ଥାପିତ କଲେ। ଜନତାକୁ ଶେଷ ବାଣୀ ଶୁଣାଇ ଦେଲେ ଯେ— 'କର ବା ମର।' ଯେଉଁ କଥା ଅତୀତରେ ସୁଭାଷ ଚନ୍ଦ୍ର ବାରମ୍ବାର ଦାବୀକରି, କଂଗ୍ରେସ ତୁଙ୍ଗ ନେତୃବୃନ୍ଦଙ୍କ ବିରାଗଭାଜନ ହୋଇ ଶେଷରେ ଭାରତ ତ୍ୟାଗ କରିବାକୁ ବାଧ୍ୟ ହୋଇଥିଲେ। ସ୍ୱତନ୍ତ୍ର କଥା। ପରବର୍ତ୍ତୀ-କାଳେ ସେହି କଂଗ୍ରେସ ସୁଭାଷ ଚନ୍ଦ୍ରଙ୍କ 'ପୂର୍ଣ୍ଣ ସ୍ୱାଧୀନତା'' ଦାବୀକୁ ହିଁ ଗ୍ରହଣକରି ଆନ୍ଦୋଳନ କରିଥିଲା। ଯାହା କି ୧୯୪୨, ଅଗଷ୍ଟ ବିପ୍ଳବ ନାମରେ ପରିଚିତ। ଏଥିରେ ଇଂରେଜ ସରକାର ଉତ୍ତେଜିତ ହୋଇ ପ୍ରବଳ ଦମନ ଆରମ୍ଭ କରିଥିଲେ। ଅଗଷ୍ଟ ୮ ତାରିଖ ରାତି ନ ପାହୁଣୁ ବାଟରେ, ଘାଟରେ ଟ୍ରେନରେ ଯିଏ ଯେଉଁଠି ଥିଲେ, କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟଙ୍କ ସହିତ ସମଗ୍ର ଭାରତ ବର୍ଷର ତୁଙ୍ଗ ନେତୃବୃନ୍ଦଙ୍କୁ ଗିରଫକରି ଜେଲରେ ଆବଦ୍ଧକରି ରଖିଲେ। ଏଥିରେ ଜନସାଧାରଣ ଉତ୍ତେଜିତ ହୋଇ ଦେଶବ୍ୟାପି ଯେଉଁ ଆନ୍ଦୋଳନ ସୃଷ୍ଟି କଲେ, ସେ ସବୁ ଏକ ଖଣ୍ଡ ଯୁଦ୍ଧରେ ପରିଣତ ହୋଇଥିଲା। କେତେକ ଅଞ୍ଚଳରୁ ଇଂରେଜ ସରକାର

ଅବସର ଆସିବାକୁ ବାଧ୍ୟ ହୋଇଥିଲେ । ବିଶେଷକରି ଯୁକ୍ତ ପ୍ରଦେଶର ବାଲିଆ, ବଙ୍ଗ ପ୍ରଦେଶର ମେଦିନୀପୁର ଜିଲ୍ଲାର ତମଲୁକ, ମହାରାଷ୍ଟ୍ରର ସତାରା ତଥା ଓଡ଼ିଶାର କଟକ ଅଞ୍ଚଳ ପ୍ରଭୃତି ଉଲ୍ଲେଖଯୋଗ୍ୟ । ଏଥିରେ ସରକାରୀ ଦମନ ନୀତି ଅତ୍ୟନ୍ତ ଅମାନୁଷିକ ତଥା ପ୍ରଚଣ୍ଡ ହୋଇଥିଲା । ଇଂରେଜ ଗୋରା ସୈନ୍ୟ କାଂଗ୍ରେସୀ ଗ୍ରାମ, ସହର ବସ୍ତିଗୁଡ଼ିକର ମାଟିରେ ମିଶାଇ ଦେଉଥିଲେ । ତଥାପି ଜନସାଧାରଣଙ୍କ ପକ୍ଷରୁ ବିଧିଭଙ୍ଗ ଆନ୍ଦୋଳନରେ ମୃତ୍ୟୁକୁ ବରଣ କରି ତାହା ଘୋର ପ୍ରତିଶୋଧ ନିଆଯାଉଥିଲା । ୧୯୪୨ ଅଗଷ୍ଟ ମାସରେ ଭାରତରେ ବିପ୍ଳବ ବହ୍ନି ଜଳି ଉଠିଲାବେଳେ ନେତାଜୀ ସୁଭାଷଚନ୍ଦ୍ର ଜର୍ମାନୀରେ ରହି ଆଜାଦହିନ୍ଦ ରେଡ଼ିଓରେ ବାପୁଜୀଙ୍କୁ ସମ୍ବୋଧନ କରି ଘୋଷଣା କରିଥିଲେ ଯେ— "ମହାତ୍ମାଜୀ ! ମୁଁ ଜାଣେ, ବର୍ତ୍ତମାନ ଆପଣମାନେ ଭାରତ ଭିତରେ ବହୁ ଦୁଃଖ କଷ୍ଟ ଓ ନିର୍ଯ୍ୟାତନା ସହ୍ୟକରି କାଳାତିପାତ କରୁଛନ୍ତି । କିନ୍ତୁ ଏ କଥା ନିଶ୍ଚିତ ଯେ, ଅଳ୍ପଦିନ ମଧ୍ୟରେ ଭାରତର ପଶ୍ଚିମପଟୁ ଆଜାଦହିନ୍ଦ ବାହିନୀ ତା'ର ସ୍ୱାଧୀନତା ସଂଗ୍ରାମ ଅଭିଯାନ ଯଥାଶୀଘ୍ର ଆରମ୍ଭ କରିଦେବ ।"

ସୁଭାଷ ଚନ୍ଦ୍ର କେବଳ ଜର୍ମାନୀରେ ଆଜାଦହିନ୍ଦ ଫୌଜ ଗଠନକରି କ୍ଷାନ୍ତ ନଥିଲେ । ସେ ଇଟାଲୀରେ ମଧ୍ୟ ଅନୁରୂପ ଭାରତୀୟ ଯୁଦ୍ଧ ବନ୍ଦୀମାନଙ୍କୁ ସ୍ୱଦେଶ ପ୍ରେମରେ ଅନୁପ୍ରାଣିତ କରି ଆଜାଦହିନ୍ଦ ଫୌଜର ଏକ ଶାଖା ଗଠନ କରିଥିଲେ । ଜର୍ମାନୀରେ ଥିଲାବେଳେ ସେ ଏକାଧିକବାର ରୋମ ପରିଦର୍ଶନ କରିଥିଲେ । ସେଠାକାର ଜନସାଧାରଣ ଓ ସରକାର ତାଙ୍କୁ ଯଥୋଚିତ ଅଭ୍ୟର୍ଥନା ଓ ସମ୍ମାନ ପ୍ରଦର୍ଶନ କରୁଥିଲେ । ଯେତେବେଳେ ଇଟାଲୀର ବିଭିନ୍ନ ସମ୍ବାଦ ପତ୍ରରେ ତାଙ୍କର ବ୍ୟକ୍ତିତ୍ୱ, ଭାବଧାରା ଓ କାର୍ଯ୍ୟାବଳୀର ବିସ୍ତୃତ ବିବରଣୀ ପ୍ରକାଶିତ ହେଉଥାଏ । ସେଠାକାର ଜନସାଧାରଣ ତାଙ୍କ ପ୍ରତି ଗଭୀର ଶ୍ରଦ୍ଧା ଦେଖାଉଥିଲେ । ସେମାନେ ମନେକରୁଥିଲେ ଯେ, ସୁଭାଷ ଚନ୍ଦ୍ର ଜଣେ ଭାରତର ପଦାପେକ୍ଷା ବେଶି ବାସ୍ତବବାଦୀ ରାଜନୀତିବିତ୍ । ତାଙ୍କୁ କେନ୍ଦ୍ରକରି, ରୋମରେ ଏକାଧିକ ପ୍ରତିଷ୍ଠାନ ଗଢ଼ି ଉଠିଥିଲା । ତା ମଧ୍ୟରେ 'ଭାରତ ବନ୍ଧୁ ସମିତି'ର ନାମ ଉଲ୍ଲେଖଯୋଗ୍ୟ ।

ଇଟାଲୀରେ ଜାତୀୟବାହିନୀ ଗଢ଼ା ଯାଇଥିଲେ ମଧ୍ୟ, ତାହା ବେଶି ଦିନ ତିଷ୍ଠି ନ'ଥିଲା । କାରଣ ଜାତୀୟ ବାହିନୀର ତାଲିମ ଶେଷ ହେବାପରେ, ଇଟାଲୀୟ ସାମରିକ କର୍ତ୍ତୃପକ୍ଷ ଆଜାଦହିନ୍ଦ ଫୌଜ ଉପରେ ପ୍ରଭୁତ୍ୱକରି ନିଜ କାମରେ ଲଗାଇବାକୁ ଚାହିଁଥିଲେ । କିନ୍ତୁ ସୁଭାଷ ବାବୁ ଏଥିରେ ରାଜି ହେଲେ ନାହିଁ । ଏଣୁ ସେଠାରେ ଗଢ଼ା ଯାଇଥିବା ଜାତୀୟ ବାହିନୀକୁ ଭାଙ୍ଗି ଦେଇଥିଲେ । ପରବର୍ତ୍ତୀକାଳେ ଜାପାନ ସରକାରଙ୍କ ସହିତ ଏ ସମ୍ପର୍କରେ ମିଳାମିଶା ହୋଇ, ଜଡ଼ୀୟ ଯୁଦ୍ଧ

କ୍ଷେତ୍ରରେ ଯୁଦ୍ଧ ବନ୍ଦୀରୂପେ ଧୃତ ହୋଇଥିବା ବହୁ ଭାରତୀୟ ସୈନ୍ୟଙ୍କୁ ନେଇ ପୁଣି ଏକ ଜାତୀୟ ବାହିନୀ ସେଠାରେ ଗଠନ କରିଥିଲେ । କଥା ଥିଲା, ଯେବେ ଏମାନେ ଇଂରେଜ ଓ ଆମେରିକା ସୈନ୍ୟ ବିରୁଦ୍ଧରେ ଲଢ଼ିବେ । କିନ୍ତୁ ଏହା ମଧ୍ୟ ହେଟିଲର ଇଚ୍ଛା ନଥିଲା । ସେ ହେତୁ, ଆଜାଦହିନ୍ଦ ବାହିନୀ ସ୍ୱାଧୀନ ଭାରତର ନିଜର କର୍ମପନ୍ଥା ସ୍ଥିର କରିବାପାଇଁ, ଇଟାଲୀ କର୍ତ୍ତୃପକ୍ଷ ଅନୁମତି ଦେଇନଥିଲେ ।

## ଜର୍ମାନୀର ବିପର୍ଯ୍ୟୟ ଓ ରାସବିହାରୀ ବୋଷଙ୍କ ନିମନ୍ତ୍ରଣ

୧୯୪୨ ସାଲର ଶେଷ ଆଡକୁ ରଣୋନ୍ମତ୍ତ ଜର୍ମାନ ବାହିନୀ, ରୁଷର ଇତିହାସ ପ୍ରସିଦ୍ଧ ଷ୍ଟାଲିନ୍ ଗ୍ରାଡ୍ ଠାରେ କ୍ରମଶଃ ପଛକୁ ହଟିବା ଆରମ୍ଭ କଲେ । ହିଟଲର୍ ନିଜ ସମସ୍ୟାରେ ଏତେ ବ୍ୟସ୍ତ ହୋଇ ଉଠିଲେ ଯେ, ସେ ଭାରତର ସ୍ୱାଧୀନତା ଯୁଦ୍ଧ ପ୍ରତି କିମ୍ବା ଆଜାଦହିନ୍ଦ ଫୌଜକୁ ଯଥୋଚିତ ସାହାଯ୍ୟ କରିବାପାଇଁ, ତାଙ୍କ ପକ୍ଷେ ସମ୍ଭବ ହେଲନାହିଁ । ଫଳରେ ସୁଭାଷବାବୁଙ୍କ ଉଦ୍ଦେଶ୍ୟ ସଫଳ ହେବାର କୌଣସି ଆଶା ରହିଲନାହିଁ । କିନ୍ତୁ ସ୍ୱଦେଶ ଉଦ୍ଧାର ବ୍ରତ ତାଙ୍କୁ ଯେ କୌଣସି ମତେ ପାଳନ କରିବାକୁ ହେବ । ଏ ସମ୍ବନ୍ଧରେ ବିକଳ୍ପ ନୂତନ କର୍ମପନ୍ଥା ଅନୁସରଣ ପାଇଁ ସେ ଯେତେବେଳେ ଚିନ୍ତା କରୁଥିଲେ, ଠିକ୍ ଏତିକି ବେଳେ ଜାପାନରେ ଥିବା ପ୍ରସିଦ୍ଧ ଭାରତୀୟ ବିପ୍ଳବୀ ନେତା ୮ ରାସବିହାରୀ ବୋଷଙ୍କ ନିକଟରୁ ନିମନ୍ତ୍ରଣ ପାଇଲେ ଯେ "—ଆପଣ ଯଥାଶୀଘ୍ର ଜର୍ମାନୀରୁ ଏଠାକୁ ଆସନ୍ତୁ । ୟୁରୋପ ଅପେକ୍ଷା ପ୍ରାଚ୍ୟଭୂଖଣ୍ଡରେ ରହି, ଭାରତର ସ୍ୱାଧୀନତା ସଂଗ୍ରାମ ଚଳାଇବା ଅତି ସହଜ ହେବ । ଆପଣଙ୍କ ଜର୍ମାନୀସ୍ଥ ଆଜାଦହିନ୍ଦ ବାହିନୀ ଭାରତ ସୀମାନ୍ତ ଯାଏ ପହଞ୍ଚିବା ସହଜ କଥା ନୁହେଁ । ଦ୍ୱିତୀୟତଃ ଦକ୍ଷିଣ ପୂର୍ବ ଏସିଆ ଭୂଖଣ୍ଡରେ ପ୍ରାୟ ୩୦ ଲକ୍ଷ ଭାରତୀୟ ବାସ କରନ୍ତି, ଏହା ସାଙ୍ଗକୁ ୭୦ ହଜାର ସୁଶିକ୍ଷିତ ବ୍ରିଟିଶ ଭାରତୀୟ ବାହିନୀର ଜଓ୍ୱାନ ବର୍ତ୍ତମାନ ଆମ ଅଧୀନରେ ଅଛନ୍ତି । ୟୁରୋପ ଅପେକ୍ଷା ଏଠାରେ ଭାରତୀୟଙ୍କର ଲୋକବଳ ଓ ଧନବଳ ପ୍ରଚୁର ରହିଛି । ଏଣୁ ଆପଣ ସବୁ ପ୍ରକାର ସାହାଯ୍ୟ ଏଠାରେ ପାଇବେ ଓ ସହଜ ଭାବରେ ଏଠାରୁ ଭାରତ ଉପରେ ଚଢ଼ାଉ କରି ହେବ ।" ସୁଭାଷ ଚନ୍ଦ୍ର ଯେଉଁ ବିଷୟ ଚିନ୍ତା କରୁଥିଲେ, ସେ ସମ୍ବନ୍ଧୀୟ ନିମନ୍ତ୍ରଣର ସୁଯୋଗ ଗ୍ରହଣ କରି ଜର୍ମାନୀରୁ ଜାପାନ ଯିବାପାଇଁ ସେ ଉଚିତ ମନେ କଲେ । କିନ୍ତୁ ସେ ସମୟରେ ଜାପାନ ଯିବା ସହଜ ନଥିଲା । କାରଣ ବିଶ୍ୱବ୍ୟାପି ଯୁଦ୍ଧର ଘନ ଘଟାରେ ଜଳ, ସ୍ଥଳ, ଆକାଶପଥ କେଉଁଠି ହେଲେ ନିରାପଦ ନଥିଲା । ସମୁଦ୍ର ଗର୍ଭରେ ସାବ୍‌ମେରିନ୍ ବା ବୁଡ଼ାଜାହାଜରେ ଯିବା ଅତ୍ୟନ୍ତ ବିପଦଜନକ ହେଲେ ମଧ୍ୟ ସୁଭାଷ ଚନ୍ଦ୍ର ଦେଶର ସ୍ୱାଧୀନତା ପାଇଁ ଏତେ ଦୂର ପାଗଳ ହୋଇଥିଲେ ଯେ,

ସମସ୍ତ ଆପଦ-ବିପଦକୁ ତୁଚ୍ଛ ମଣି, ସେ ୟୁରୋପରୁ ସାବ୍‌ମେରିନ୍ ଦ୍ୱାରା ପ୍ରାଚ୍ୟ ଅଭିମୁଖେ ଯାତ୍ରା କରିବାପାଇଁ ସ୍ଥିର କଲେ ।

## ବିପଜ୍ଜନକ ସାବ୍‌ମେରିନ୍ ଯାତ୍ରା

ବର୍ଲିନ ତ୍ୟାଗ ପୂର୍ବରୁ ସୁଭାଷ ଚନ୍ଦ୍ର, ହିଟଲରଙ୍କ ସଙ୍ଗେ କେତେକ ଗୁରୁତ୍ୱପୂର୍ଣ୍ଣ ବିଷୟ ଆଲୋଚନା କରିଥିଲେ । ଭାରତୀୟ ସ୍ୱାଧୀନତା ଯୁଦ୍ଧରେ ଜାପାନର ଭୂମିକା ସମ୍ବନ୍ଧେ ତାଙ୍କ ମନରେ ଘୋର ସନ୍ଦେହ ଥିଲା । କିନ୍ତୁ ହିଟଲର, ତାଙ୍କର ଏହି ସନ୍ଦେହକୁ ଦୂର କରି କହିଥିଲେ ଯେ,--ଭାରତର ସ୍ୱାଧୀନତା ଯୁଦ୍ଧକୁ ଜାପାନ ନିଶ୍ଚୟ ସାହାଯ୍ୟ କରିବ । ଏଥିରେ ଯଦି ବ୍ୟତିକ୍ରମ ହୁଏ ତା ହେଲେ, ଜାପାନ ସହିତ ଜର୍ମାନୀର ଯେଉଁ ମିତ୍ରତାର ସ୍ୱାକ୍ଷର ହୋଇଛି, ତାକୁ ମୁଁ ଚିରି ଫୋପାଡ଼ି ଦେବି । ଆପଣ ମୋ କଥାରେ ବିଶ୍ୱାସ ରଖନ୍ତୁ ।" ଏହା ପରେ ଦୁଇ ବନ୍ଧୁ ପରସ୍ପର ମଧ୍ୟରେ ବିଶ୍ୱାସ ତଥା ଆସ୍ଥାଭାଜନ ହୋଇ ନିବିଡ଼ ଭାବେ କରମର୍ଦ୍ଦନ କଲେ । ପରିଶେଷରେ ଚୂଡ଼ାନ୍ତ ନିଷ୍ପତ୍ତି ହେଲା ଯେ, ଜର୍ମାନ ସବ୍‌ମେରିନ୍ (ବୁଡ଼ା ଜାହାଜ)ରେ ସୁଭାଷ ଚନ୍ଦ୍ର ଭାରତ ମହାସାଗର ପର୍ଯ୍ୟନ୍ତ ଯିବେ । ଏବଂ ସେଠାରୁ ଜାପାନୀ ସାବ୍‌ମେରିନ୍‌କୁ ଟ୍ରାନ୍‌ସଫର ହୋଇ ପୂର୍ବ ଏସିଆକୁ ଯିବେ । ଟ୍ରାନ୍‌ସଫର ପ୍ରକ୍ରିୟା ବିପଜ୍ଜନକ ହେଲେ ମଧ୍ୟ, ଲାଇଫ୍ ଜ୍ୟାକେଟ୍ ପିନ୍ଧି, ରବର ବୋଟ୍ ସାହାଯ୍ୟରେ ଗୋଟିଏ ଜାହାଜରୁ ଅନ୍ୟ ଜାହାଜକୁ ଯିବାକୁ ହୁଏ । ଏଥିରେ ସୁଭାଷ ବାବୁ ରାଜି ହେଲେ । ଏବଂ ଦେହରକ୍ଷୀ ଭାବେ ମେଜର୍ ଆବିଦ୍ ହାସାନ୍, ଯିଏକି ବର୍ଲିନରେ ତାଙ୍କର ପି. ଏ. ଥିଲେ, ତାଙ୍କୁ ସଙ୍ଗରେ ନେବା ସେ ଉଚିତ ମନେ କଲେ । ଏହା ଛଡ଼ା ଜର୍ମାନୀରୁ ସବୁଠାରୁ ସୁଦକ୍ଷ ତଥା ଅଭିଜ୍ଞ ସାବ୍‌ମେରିନ ଚାଳକ, କ୍ୟାପଟେନ-ୱେର୍ନାର୍ ମାସନ ବର୍ଗ, ସାବ୍‌ମେରିନର ମୁଖ୍ୟ ଚାଳକଭାବେ ଯିବା ସ୍ଥିର ହେଲା । ଉଲ୍ଲେଖଯୋଗ୍ୟ ଯେ, ବର୍ଲିନଠାରୁ ଟୋକିଓର ଦୂରତ୍ୱ, ୭ ହଜାର ୫ ଶହ ମାଇଲ ପଥ । ଏହି ଦୀର୍ଘପଥ ଅତିକ୍ରମ କରିଯିବା ସହଜ ନ'ଥିଲା । ଯେହେତୁ ପୃଥିବୀର କୋଣେ କୋଣେ ଧ୍ୱଂସ ଯୁଦ୍ଧ ବ୍ୟାପି ଯାଇଥିଲା । ପ୍ରତି ମୁହୂର୍ତ୍ତରେ ବିପଦ ଓ ଜୀବନ ମୃତ୍ୟୁର ସତର୍କ ଘଣ୍ଟି, ବାଜି ଉଠୁଥାଏ । ଏଭଳି ବିପଦ ସଙ୍କୁଳ ପରିସ୍ଥିତିରେ, ଆସନ୍ନ ମୃତ୍ୟୁକୁ ଭୟ ନ'କରି ସୁଭାଷ ଚନ୍ଦ୍ର ସେହିଦିନ ବୁଡ଼ା ଜାହାଜରେ ଯାତ୍ରା କଲେ । ଦେଶର ସ୍ୱାଧୀନତାପାଇଁ ପାଗଳ, ଅନବରତ ଦୁଃଖ କଷ୍ଟ ଭୋଗୀ, ୩ ମାସରୁ ଊର୍ଦ୍ଧ୍ୱ ସମୟ ଅତଳ ସମୁଦ୍ର ଗର୍ଭରେ ଯାତ୍ରା କରିବା, କେବଳ ତାଙ୍କ ପକ୍ଷେ ଏହା ସମ୍ଭବ ହୋଇଥିଲା । ବାସ୍ତବରେ ଏହା ପୃଥିବୀ ଇତିହାସରେ ବିରଳ ।

ଯାତ୍ରା ସମୟରେ ଆଟ୍‌ଲାଣ୍ଟିକ୍ ସାଗରରେ, ତାଙ୍କର ବୁଡ଼ା ଜାହାଜଟି କୌଣସି କାରଣରୁ ଥରେ ସମୁଦ୍ର ଗର୍ଭରୁ ଉପରକୁ ଉଠି ଆସିଥିଲା । ଏତିକିବେଳେ

ଶତ୍ରୁ ପକ୍ଷର ପଇଁଚରରେ ଏକ ଯୁଦ୍ଧ ଜାହାଜ ଲକ୍ଷକରି ତାକୁ ଧ୍ୱଂସ କରିବାକୁ ଆଗେଇ ଆସିଲାବେଳେ, ସୁଭାଷଚନ୍ଦ୍ରଙ୍କ ବୁଡ଼ାଜାହାଜ ତତ୍କ୍ଷଣାତ୍ ପୁଣି ଅତଳ ଜଳରେ ବୁଡ଼ିଯାଇ, ଆତ୍ମରକ୍ଷା କରିଥିଲା । ଚାଳକ ଯଦି ଅସାବଧାନତା ହୋଇଥାନ୍ତେ, ତାହେଲେ ଜୀବନ ରକ୍ଷା ପାଇବା ଆଉ କୌଣସି ଉପାୟ ନ'ଥିଲା । ଆଟଲାଣ୍ଟିକ ପାରହୋଇ ଯେତେବେଳେ ଭାରତ ମହାସାଗରରେ ପ୍ରବେଶ କଲେ, ସେତେବେଳେ ବୁଡ଼ାଜାହାଜ ପ୍ରତି ଆଉ କୌଣସି ବିପଦ ନଥିଲା ସତ; କିନ୍ତୁ ଅପେକ୍ଷମାନ ଜାପାନୀ ବୁଡ଼ାଜାହାଜକୁ ସମୁଦ୍ର ଭିତରେ ଠାବ କରିବା ହେଲା, ଏହା ଏକ କଠିନ ସମସ୍ୟା । ଯାହାହେଉ ପ୍ରାୟ ୧୭ ଘଣ୍ଟାକାଳ ଖୋଜା ଖୋଜି ପରେ, ଅନତି ଦୂରରୁ ଗୋଟିଏ ବୁଡ଼ା ଜାହାଜ ଦେଖାଯାଇଥିଲା । କିନ୍ତୁ ତାହା ଶତ୍ରୁ ପକ୍ଷ କିମ୍ବା ମିତ୍ର ପକ୍ଷ, ଜାଣିବାର କୌଣସି ଉପାୟ ନଥିଲା । ତେବେ ପ୍ରତ୍ୟୁତ୍ପନ୍ନମତି ବୁଡ଼ାଜାହାଜ ଚାଳକ,— କ୍ୟାପଟେନ୍ ୱେର୍ନାର ମାସନ୍ ବର୍ଗ, ରେଡ଼ିଓ ସିଗ୍ନାଲ ବାର୍ତ୍ତାରେ ଜାଣିପାରିଲେ ଯେ, ତାହା ପ୍ରକୃତରେ ଜାପାନୀ ବୁଡ଼ାଜାହାଜ । ଏଣୁ ଉଭୟ ବୁଡ଼ାଜାହାଜ ପରସ୍ପର ମଧ୍ୟେ ନିକଟବର୍ତ୍ତୀ ହୋଇ, ରବରବୋଟ ସାହାଯ୍ୟରେ ସୁଭାଷ ବାବୁଙ୍କ ଟ୍ରାନ୍ସଫର କାର୍ଯ୍ୟ ନିର୍ବିଘ୍ନରେ ଶେଷ କଲେ । ସେତିକବେଳେ ସେ ଉପରକୁ ଉଠି ଆସି, ଜାହାଜସ୍ଥ ଅନ୍ୟ ସାଥୀମାନଙ୍କ ପ୍ରତି ହାତ ଠାରି କହିଥିଲେ—"ଏଇ ଦେଖନ୍ତୁ, ଏଇ ଦିଗରେ, ସମୁଦ୍ର ଶେଷରେ ଆମର ପ୍ରିୟ ପବିତ୍ର ମାତୃଭୂମି ଭାରତ ବର୍ଷ ଅବସ୍ଥିତ । ଏହା କହି ସେ ଯୋଡ଼ ହସ୍ତରେ ସେହି ଦିଗକୁ ପ୍ରଣାମ ଜଣାଉଥିଲେ ।" କହିବା ବାହୁଲ୍ୟ, ସେତେବେଳେ ତାଙ୍କର ଆଖିରୁ ଦୁଇଧାର ଲୁହ ଝରି ଆସିଥିଲା ।

ସୁଭାଷବାବୁ ଜର୍ମାନୀ ବୁଡ଼ା ଜାହାଜରୁ ଜାପାନୀ ବୁଡ଼ା ଜାହାଜକୁ ଟ୍ରାନ୍ସଫର ହେବା ପୂର୍ବରୁ ୧୯୪୩ ଏପ୍ରିଲ ୨୮ ତାରିଖ ଦିନ ୧୧ଟା ୫୯ ମିନିଟ ଠାରେ ରେଡ଼ିଓ ଟେଲିଗ୍ରାମ୍ କରି, ଜର୍ମାନୀର ନେତୃବୃନ୍ଦ ତଥା ଜନସାଧାରଣଙ୍କ ଉଦ୍ଦେଶ୍ୟରେ, ନିଜର ଶୁଭେଚ୍ଛା ଜ୍ଞାପନ ଜଣାଇଥିଲେ । ସେହି ତାରିଖ ଦିନ ୧୨ଟା ୧୫ ମିନିଟରେ ଜର୍ମାନୀ କର୍ତ୍ତୃପକ୍ଷ ଉକ୍ତ ବାର୍ତ୍ତା ପାଇ ଖୁବ୍ ଆନନ୍ଦିତ ହୋଇଥିଲେ । ଏହିଭଳି ଭାବେ ସେ ଘୋର ବିପଦ ସଙ୍କୁଳ ପଥ ଅତିକ୍ରମ କରି ୧୯୪୩ ମଇ ମାସର ଶେଷ ଭାଗକୁ ପୂର୍ବ ଏସିଆସ୍ଥ ସୁମାତ୍ରା ଦ୍ୱୀପର 'ସାବଙ୍ଗ' ବନ୍ଦର ଠାରେ ପହଞ୍ଚିଥିଲେ । ପୂର୍ବ ନିର୍ଦ୍ଦିଷ୍ଟ ପ୍ରକାରେ ସେଠାରେ ଥିବା କେତେ ଜଣ ଜାପାନୀ ସାମରିକ ଉଚ୍ଚ ଅଫିସର, ତାଙ୍କୁ ପାଛୋଟି ନେଇଥିଲେ । ସୁମିତ୍ରାରେ ଦେ କିଛି ଦିନ ବିଶ୍ରାମ କରି, ୧୯୪୩ ଜୁନ୍ ମାସର ପ୍ରଥମ ସପ୍ତାହରେ ବିମାନ ଯୋଗେ ସେ ଟୋକିଓରେ ପହଞ୍ଚିଥିଲେ । ମାସକମାନ୍ ଟୋକିଓରେ ରହି, ତତ୍କାଳୀନ ଜାପାନର ପ୍ରଧାନ ମନ୍ତ୍ରୀ ହିଡ଼ାକୀ ତୋଜୋ ଓ ରାଜା ହିରୋହିତୋ ସଙ୍ଗେ ଦେଖା କରିଥିଲେ ଏବଂ ହିଟଲରଙ୍କ ଲିଖିତ ଚିଠିଏ

ଶଟି ମଧ୍ୟ ତାଙ୍କୁ ଦେଇଥିଲେ । ଏହାପରେ 'ଭାରତୀୟ ସ୍ୱାଧୀନତା ସଂଘ'ର ସଭାପତି ରାସ ବିହାରୀ ବୋଷ ଓ ଟୋକିଓସ୍ଥ ପ୍ରବାସୀ ଭାରତୀୟଙ୍କ ସଙ୍ଗେ ମିଶି କଥାବାର୍ତ୍ତା ହୋଇଥିଲା । ଏହି ଠାରୁ ସୁଭାଷ ଚନ୍ଦ୍ରଙ୍କ ଜୀବନର ସର୍ବାପେକ୍ଷା ଗୌରବ ଅଧ୍ୟାୟ ଆରମ୍ଭ ହେଲା । ସେ ଜର୍ମାନୀ ତ୍ୟାଗ କରି ପୂର୍ବ ଏସିଆକୁ ଆସିଥିଲେ ମଧ୍ୟ, ସେଠାରେ ଯେଉଁ ଆଜାଦ୍ ହିନ୍ଦ୍ ଫୌଜ ଗଢ଼ା ହୋଇଥିଲା, ଜର୍ମାନୀ ଯୁଦ୍ଧ ଶେଷ ହେବା ପର୍ଯ୍ୟନ୍ତ, ସେମାନେ ଦୃଢ଼ ରହି, ଦେଶର ସ୍ୱାଧୀନତା ପାଇଁ ଲଢ଼ାଇ କରି ପରିଶେଷକୁ ବ୍ରିଟିଶ ହାତରେ ୧୮ ହଜାର ସୈନିକ ବନ୍ଦୀ ହୋଇଥିଲେ ।

(ସୁଭାଷ ଚନ୍ଦ୍ର ପୂର୍ବ ଏସିଆରେ ପହଞ୍ଚିବା ପୂର୍ବରୁ ପ୍ରାଚ୍ୟ ଭୂଖଣ୍ଡର ପରିସ୍ଥିତି)

ଭାରତ ପରି ସେହି ସମୟରେ ପ୍ରାଚ୍ୟ ଭୂଖଣ୍ଡରେ ମଧ୍ୟ ବ୍ରିଟିଶ ଉପନିବେଶ-ବାଦର ଶାସନ ଚାଲିଥିଲା । ଭାରତରେ ଯେପରି ବ୍ରିଟିଶ ସାମ୍ରାଜ୍ୟବାଦୀମାନେ, ନିଜର ଅପକୌଶଳ ଭେଦନୀତି ପ୍ରୟୋଗ କରି ପଶୁବଳ ସାହାଯ୍ୟରେ ଅନ୍ୟାୟ, ଅତ୍ୟାଚାର, ଶୋଷଣ ଓ ଶାସନ ଚଳାଉଥିଲେ, ଠିକ୍ ସେହିପରି ପୂର୍ବ ଏସିଆରେ ବର୍ମା ଠାରୁ ମାଳୟ ପର୍ଯ୍ୟନ୍ତ ଅଧିକାଂଶ ରାଜ୍ୟରେ ବ୍ରିଟିଶ ଓ ତାହାର ମିତ୍ର ଶକ୍ତିର ଶାସନ ଓ ଶୋଷଣର ସୀମା ନଥିଲା । ବ୍ରିଟିଶ ଶାସନାଧୀନ ପ୍ରାଚ୍ୟ ଭୂଖଣ୍ଡରେ ସେତେବେଳେ ୩୦ ଲକ୍ଷ ଭାରତୀୟ ବସବାସ କରି ରହୁଥିଲେ । ଏମାନଙ୍କ ମଧ୍ୟରୁ ଅଧିକାଂଶ କୃଷୀ ଓ ଶ୍ରମିକ ଶ୍ରେଣୀର ଲୋକ ଥିଲେ । ଏମାନେ ନିଜର ଜୀବିକା ନିର୍ବାହ ଉଦ୍ଦେଶ୍ୟରେ ବିଭିନ୍ନ କଳ-କାରଖାନା, କର୍ପୋରେସନ୍, ସୁନା ଓ ଶିଷା ଖଣି, ରବର ବଗିଚା, ପେଟ୍ରୋଲ୍ ଖଣି, ରେଳୱେ ଓ ଧାନ ମିଲ୍ ପ୍ରଭୃତିରେ କାମ କରୁଥିଲେ । ସେଥିମଧ୍ୟରୁ କେତେକ ବାଣିଜ୍ୟ ସୂତ୍ରରେ କାରବାର କରୁଥାନ୍ତି, ଆଉ କେତେକ ଶିକ୍ଷିତ ବ୍ୟକ୍ତି ସରକାରୀ ମହଲରେ ନିଯୁକ୍ତ ଥାନ୍ତି । କେତେକ ଶିଳ୍ପପତି ମଧ୍ୟ ଥିଲେ । ପ୍ରାୟ ଲକ୍ଷାଧିକ କୃଷୀ ଶ୍ରେଣୀର ଓଡ଼ିଆ ଲୋକ ରହି, ସେଠାକାର ଦୁର୍ଗମ, ବଣ, ଜଙ୍ଗଲ, ପାହାଡ଼ କାଟି ସମତଳରେ ପରିଣତ କରି ସୁନାର ଫସଲ ଫଳାଉଥିଲେ । ଭାରତୀୟମାନେ ଜୀବିକା ନିର୍ବାହ ପାଇଁ ଯାଉଥିଲେ ମଧ୍ୟ, କାଳକ୍ରମେ ସେଠାରେ ବସବାସ କରି ରହିବା ଫଳରେ ସମଗ୍ର ପ୍ରାଚ୍ୟ ଭୂଖଣ୍ଡର ବିଭିନ୍ନ ସହରରେ ନିଜର ଜାତୀୟତା ବୋଧ ଶିକ୍ଷା, ସଂସ୍କୃତିକ, ଅନୁଷ୍ଠାନମାନ ଗଢ଼ି ତୋଳିଥିଲେ । ସମ୍ବାଦ ପତ୍ର ଓ ବିଭିନ୍ନ ଧର୍ମ ମନ୍ଦିର ପ୍ରଭୃତି ସ୍ଥାପନ କରି, ଜାତୀୟ ପର୍ବ-ପର୍ବାଣୀ ପାଳନ ମାଧ୍ୟମରେ ଭାରତୀୟତା ବୋଧ ଐତିହ୍ୟକୁ ବଜାୟ ରଖି ଚଳୁଥିଲେ କିନ୍ତୁ ବ୍ରିଟିଶ ଶାସନାଧୀନ ସମୟରେ କେବଳ ଭାରତୀୟମାନେ ଯେ, ପ୍ରାଚ୍ୟ ଭୂଖଣ୍ଡକୁ ଯାଇଥିଲେ, ଏକଥା କହିଲେ ଭୁଲ ହେବ । କାରଣ, ଇଂରେଜ ଆଗମନର ବହୁ ବର୍ଷ ପୂର୍ବେ ଭାରତ ବର୍ଷରୁ କଳିଙ୍ଗର ସାଧବ ପୁଅ ଓ ନରପତି-ମାନେ ଏହି ସବୁ ଅଞ୍ଚଳରେ ନିଜର ପ୍ରଭୁତ୍ୱ ବିସ୍ତାର କରିଥିବା କଥା, ପାଲି ଭାଷାରେ

ଲାଗିରହି ହୋଇ ବ୍ରହ୍ମ ଦେଶର ଉତ୍ତରାଂଶରେ ରହିଅଛି । କିନ୍ତୁ ବ୍ରିଟିଶ କାଳ-ଚକ୍ରରେ ପ୍ରାଚ୍ୟ ଭୂଖଣ୍ଡର ଅଧିବାସୀ ଓ ଭାରତୀୟଙ୍କ ଭିତରେ ଯେମିତି ମିଳାମିଶା ନ ରହି, ବଢ଼ିଉଠିବେ ସ୍ୱଳ୍ପ ହେବ, ସେହିସବୁ ଭେଦ-ନୀତି ପ୍ରୟୋଗକାରୀ ଇଂରେଜମାନେ ଶାସନ କରୁଥିଲେ । ଏହାର ଫଳ ସ୍ୱରୂପ, ଦ୍ୱିତୀୟ ବିଶ୍ୱଯୁଦ୍ଧ ପ୍ରାରମ୍ଭରେ ପ୍ରାଚ୍ୟ ଭୂଖଣ୍ଡରେ ଏକ ସିଭିଲ୍‌ଡିସ୍‌ଅର୍ଡର୍ ବା ଗଣବିପ୍ଳବ ଆରମ୍ଭ ହୋଇଥିଲା । ଯେଉଁଥିରେ କି ହଜାର ହଜାର ଭାରତୀୟଙ୍କର ଧନ ଜୀବନ ହାନି ଘଟିଲା । ବିଶେଷକରି ନିରୀହ ଓଡ଼ିଆ ବ୍ୟବସାୟୀମାନେ ସର୍ବସ୍ୱାନ୍ତ ହୋଇ ମଫସଲରୁ ଆସି ସହରମାନଙ୍କରେ ଆଶ୍ରୟ ନେଇଥିଲେ । ପରବର୍ତ୍ତୀକାଳେ ସେହି ସବୁ ଅଞ୍ଚଳ ଜାପାନ ସମ୍ପୂର୍ଣ୍ଣଭାବେ ଦଖଲ ନେଲାପରେ, ଭାରତୀୟ ମାନଙ୍କ ମନରେ ଭୟ ଆସିଥିଲା ଓ ସେମାନେ ଆଗ୍ରସ୍ତ ହୋଇଥିଲେ ।

•

• ଏଠାରେ ଉଲ୍ଲେଖଯୋଗ୍ୟ, କେତେକ ସ୍ମରଣୀୟ ଘଟଣା । ଭାରତର ସ୍ୱାଧୀନତା ସଂଗ୍ରାମ ଦ୍ୱିତୀୟାର୍ଦ୍ଧର ପ୍ରଥମ ଭାଗରେ, କେତେ ଜଣ ବିପ୍ଳବୀ ବୀର ନିଜ ଜୀବନରେ ଭାରତରୁ ପଳାଇଯାଇ ଏସିଆର ବିଭିନ୍ନ ସ୍ଥାନରେ ରହି ଭାରତର ସ୍ୱାଧୀନତା ସମ୍ବନ୍ଧ ପ୍ରବଳ କାର୍ଯ୍ୟ ଚଳାଉଥାନ୍ତି । ସେଥି ମଧ୍ୟରୁ କଲିକତାର ବରିଷ୍ଠ ଆଇନଜ୍ଞ ତଥା ବିପ୍ଳବୀ ଶ୍ରୀ ରାସ ବିହାରୀ ବୋଷ ଅନ୍ୟତମ । ଏ ମହାଶୟ ୧୯୧୫ ମସିହାରେ କଲିକତାରୁ ଗୋଟିଏ ଜାପାନୀ ବାଣିଜ୍ୟ ପୋତ ସାହାଯ୍ୟରେ 'ଟୋକିଓ' ଯାଇ ଜଣେ ଜାପାନୀ ମହିଳାଙ୍କୁ ବିବାହ କରି, ସ୍ଥାୟୀଭାବେ ସେଠାରେ ବସବାସ କରୁଥିଲେ । ଏବଂ ଜାପାନରେ ଥିବା ଇଂରେଜ ବିରୋଧୀ ବିପ୍ଳବୀ ଗୋଷ୍ଠି ସହ ମିଶି, ଭାରତର ସ୍ୱାଧୀନତା ପାଇଁ, ସେ ବହୁ ତାତ୍ପର୍ଯ୍ୟପୂର୍ଣ୍ଣ ଓ ଗୋପନ ମୂଳକ ପ୍ରବଳ କାର୍ଯ୍ୟ କରୁଥିଲେ । ଏହାର କିଛି ବର୍ଷ ପରେ, ପୁଣି ଅନେକ ଭାରତୀୟ ବିପ୍ଳବୀ, କାଏ କେଉଁ ପଥଦେଇ ଜଣ ଜଣ କରି, ଦକ୍ଷିଣ ପୂର୍ବ ଏସିଆର ବିଭିନ୍ନ ସ୍ଥାନରେ ଯାଇ ପହଞ୍ଚିଲେ । ସେମାନଙ୍କ ମଧ୍ୟରେ ରାଜା ମହେନ୍ଦ୍ର ପ୍ରତାପ, ଆନନ୍ଦ ମୋହନ ସହାୟ, ସ୍ୱାମୀ ସତ୍ୟାନନ୍ଦ ପୁରୀ, ଜ୍ଞାନୀ ପ୍ରୀତମ ସିଂ, [illegible] ସିଂ, ଓ· ଡ଼. ଏମ୍. ଖାନ୍ ପ୍ରମୁଖଙ୍କ ନାମ ଉଲ୍ଲେଖ ଯୋଗ୍ୟ । ପରବର୍ତ୍ତୀ କାଳେ ଏହି ସବୁ ବିପ୍ଳବୀଗଣ ସମଗ୍ର ଦକ୍ଷିଣ ପୂର୍ବ ଏସିଆ ଭୂଖଣ୍ଡରେ ରହି, ପରସ୍ପର ମଧ୍ୟେ ଯୋଗସୂତ୍ର ରଖି, ଭାରତର ସ୍ୱାଧୀନତା ପାଇଁ, ପ୍ରବାସୀ ଭାରତୀୟଙ୍କ ମନରେ ଜାତୀୟ ଚେତନା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଇଂରେଜ ଶାସନ ବିରୁଦ୍ଧରେ କଠୋର ସମାଲୋଚନା ପୂର୍ବକ ପ୍ରବଳ କାର୍ଯ୍ୟ ଚଳାଉଥିଲେ । ତେଣୁ ସ୍ୱାଭାବିକ ଭାବେ ସେହିସବୁ ଅଞ୍ଚଳରେ ଭାରତୀୟ-ମାନଙ୍କ ମଧ୍ୟରେ ବ୍ରିଟିଶ ବିରୋଧୀ ମନୋଭାବ ଅତ୍ୟନ୍ତ ପ୍ରବଳ ଥିଲା ।

ପୂର୍ବରୁ କୁହାଯାଇଛି, ୧୯୪୧ ଡିସେମ୍ବର ମାସ ୭ ତାରିଖ ଦିନ ବ୍ରିଟିଶ ବିରୁଦ୍ଧରେ ଜାପାନ ଯୁଦ୍ଧ ଘୋଷଣା କରିଥିଲା । ଏବଂ ସେହିଦିନଠୁଁ ଜାପାନ ବ୍ୟୋମ

ବାହିନୀର ପ୍ରଥମ ଆଘାତରେ, ମାଳୟ ଉପକୂଳରେ ଥିବା ଇଂରେଜ ସୈନ୍ୟ ବାହିନୀର 'ରପଲସ୍' ନାମକ ଏକ ବଡ଼ ଯୁଦ୍ଧପୋତ ବୁଡ଼ିଗଲା । ତା'ର ଅଳ୍ପ କିଛି ଦିନପରେ, ଜାପାନର ଜଣେ ବୀର ଲେଫ୍ଟେଣ୍ଡ ଖାଁ ବାଳକ 'ଶୋନାନ୍' ଦ୍ୱାରା ମୃତ୍ୟୁଙ୍କ ଏକ୍ୟାଣ୍ଡ 'ପ୍ରିନ୍ସ ଅଫ ୱେଲସ' ନାମକ ବିରାଟକାୟ ଯୁଦ୍ଧ ପୋତ ଯେଉଁଦିନ ମାଳୟ ଉପକୂଳରେ ବୁଡ଼ିଗଲା, ସେଦିନ ସମଗ୍ର ବିଶ୍ୱରେ ଇଂରେଜଜାତି ଯିଏ ଯେଉଁଠିଥିଲେ, ଲୁହ ନ'କାଢ଼ି ରହି ନ ଥିଲେ । ସେହି ଦିନଠୁ ଇଂରେଜମାନେ ଜାଣିପାରିଲେ ଯେ, ଜାପାନର କଠୋର ଆଘାତ ସହ୍ୟକରି ତିଷ୍ଠି ରହିବା ସମ୍ଭବ ନୁହେଁ । ତେଣୁ ସେମାନେ ପ୍ରାଚ୍ୟ ଭୂଖଣ୍ଡ ଛାଡ଼ି ଚାଲିଯିବା ପାଇଁ, ଅନ୍ୟମାନଙ୍କ ଅଜାଣତରେ ଭିତର ସମସ୍ତ ବ୍ୟବସ୍ଥା କରି, ଜାପାନ ସେନାଙ୍କ ଆଗମନ ପୂର୍ବରୁ, ଯେତେକ ଶ୍ୱେତାଙ୍ଗ ସମ୍ପ୍ରଦାୟଙ୍କ ଲୋକଥିଲେ, ସେମାନେ ନିଜର ପରିବାର ବର୍ଗ ଓ ସଞ୍ଚିତ ଧନ ଦୌଲତ ନେଇ, ଇଂଲଣ୍ଡ ତଥା ଭାରତକୁ ଚାଲିଯାଇଥିଲେ । ଠିକ୍ ଏହାର ଦୁଇମାସ ପରେ ସମଗ୍ର ମାଳୟ, ଜାପାନ ସୈନ୍ୟଙ୍କ ଅଧିକାରଭୁକ୍ତ ହୋଇଥିଲା । ବାକି ସେଠାରେ ପଡ଼ି ରହିଥିଲେ, କେବଳ ଭାରତୀୟ ନାଗରିକ ଗଣ ଓ ମାଳୟ ରକ୍ଷା କରିବା ପାଇଁ ଆଗରୁ ନିୟୁକ୍ତଥିବା ବ୍ରିଟିଶ ଭାରତୀୟ ବାହିନୀର ସୈନିକ ବୃନ୍ଦ ତଥା ମାଳୟ ଅଧିବାସୀ । ଏଠାରେ ଇଂରେଜ ସେନାପତି-ମାନଙ୍କର ଚରମ ବିଶ୍ୱାସଘାତକତା କେବେ ଭୁଲିବାର ନୁହେଁ । କାରଣ ଯୁଦ୍ଧର ଭୟାବହତା ଓ ନିଜର ପରାଜୟ ଜାଣି, ସେମାନେ ଇଂରେଜ ସୈନ୍ୟଙ୍କ ସୁରକ୍ଷା ପାଇଁ ସେଠାରୁ ହଟାଇ ଆଣିଲେ, ଅଥଚ ଭାରତୀୟ ବାହିନୀକୁ ଯୁଦ୍ଧର ପ୍ରକୃତ ପରିସ୍ଥିତି ନ ଜଣାଇ ଓଲଟି ସେମାନଙ୍କ ମନରେ ବିଶ୍ୱାସ ଜନ୍ମାଇଥିଲେ ଯେ— "ସିଙ୍ଗାପୁର ନୌଘାଟି ରହିବା ଯାଏଁ, କୌଣସି ବୈଦେଶିକ ଶକ୍ତି ପକ୍ଷେ ମାଳୟ ଅଧିକାର କରିବା ସମ୍ଭବ ନୁହେଁ ।" ବାସ୍ତବରେ ଇଂରେଜମାନେ ଭାରତୀୟ ବାହିନୀକୁ, ଜାପାନ ହାତରେ ବନ୍ଦୀ ହେବା ପାଇଁ ଛାଡ଼ିଦେଇ ଆସିଥିଲେ ।

ସେତେବେଳେ ପୂର୍ବ ଏସିଆରେ ଥିବା ଭାରତୀୟ ବିପ୍ଳବୀ ନେତୃବୃନ୍ଦ, ଅନୁଭବ କଲେ ଯେ, ପ୍ରବାସୀ ଭାରତୀୟଙ୍କ ପକ୍ଷେ ଏକ ସୁବର୍ଣ୍ଣ ସୁଯୋଗ । ଏଣୁ କାଳ ବିଳମ୍ବ ନ'କରି ସେମାନେ ଅଗ୍ନିଯୁଗର ବିପ୍ଳବୀ ଯୋଦ୍ଧା, ରାସବିହାରୀ ବୋଷଙ୍କ ନେତୃତ୍ୱରେ ଏକତ୍ରିତ ହୋଇ ଟୋକିଓ ଠାରେ ଗୋଟିଏ ସମ୍ମିଳନୀର ଆୟୋଜନ କଲେ । ଏଥିରେ ହଂକଂ, ସୟାମ ଓ ଜାପାନର ପ୍ରବାସୀ ଭାରତୀୟ ପ୍ରତିନିଧି ବୃନ୍ଦ ଯୋଗ ଦେଇଥିଲେ । ଶ୍ୟାମ ପ୍ରତିନିଧିମାନେ ଆସୁଥିବାବେଳେ ବିମାନ ଦୁର୍ଘଟଣାରେ ପଡ଼ି ପ୍ରାଣ ହରାଇଥିଲେ । ଏପରି ଦୁଃଖଦାୟକ ସମ୍ବାଦ ସତ୍ତ୍ୱେ, ଜାପାନର ରାଜଧାନୀ ଟୋକିଓରେ ଉକ୍ତ ସମ୍ମିଳନୀରେ ପ୍ରସ୍ତାବ ଗୃହୀତ ହେଲା ଯେ, ପୂର୍ବ ଏସିଆରେ ଭାରତୀୟମାନଙ୍କ ପକ୍ଷରେ ଆନ୍ଦୋଳନ ତୀବ୍ରତର କରିବାର ପ୍ରକୃଷ୍ଟ

ସମସ୍ତ ଜନଗତ । ଏ ସ୍ୱାଧୀନତାର ରୂପ ହେବ ପୂର୍ଣ୍ଣ ସ୍ୱାଧୀନତା ଏବଂ କୌଣସି ବୈଦେଶିକ ଶାସନ ନିୟନ୍ତ୍ରଣରୁ ଅବ୍ୟାହତ । 'ଆଜାଦହିନ୍ଦ ସଙ୍ଘ' ଓ 'ଆଜାଦ ହିନ୍ଦ ଫୌଜ' ଗଠନ କରିବା ସିଦ୍ଧାନ୍ତ ଏଥିରେ ଗ୍ରହଣ କରାଗଲା ଏ ସମ୍ପର୍କରେ ସମସ୍ତ କ୍ଷମତା ଆଜାଦହିନ୍ଦ୍ ସଙ୍ଘ ପ୍ରୟୋଗ କରିବ । ଆଜାଦହିନ୍ଦ୍ ଫୌଜର ଏକ କର୍ମ ପରିଷଦ ରହିବ, ଏହି ପରିଷଦ ସାମରିକ ପ୍ରୟୋଜନୀୟତା ପାଇଁ ଆବଶ୍ୟକସ୍ଥଳେ ଜାପାନ ଠାରୁ ନୌ ଓ ବିମାନ ବଳ ପ୍ରଭୃତି ଗ୍ରହଣ କରିପାରିବ । ଏହି ସମ୍ମିଳନୀ ଆଉ ଏକ ଉଲ୍ଲେଖ ଯୋଗ୍ୟ ପ୍ରସ୍ତାବ ଗ୍ରହଣ କଲେ ଯେ, ଭାରତର ଭବିଷ୍ୟତ ଶାସନ ତନ୍ତ୍ର ରଚନା କରିବା ଅଧିକାର ଭାରତ ଭୂମିରେ ଭାରତୀୟ ନେତୃବୃନ୍ଦଙ୍କ ଉପରେ ନ୍ୟସ୍ତ ରହିବ । ଏଠାରେ ପୁନଶ୍ଚ ସ୍ଥିରିକୃତ ହେଲା ଯେ, ବ୍ୟାଙ୍କକ୍‌ଠାରେ ଅଧିକ ବ୍ୟାପକ ଭାବରେ ଆଉ ଏକ ପ୍ରତିନିଧିମୂଳକ ସମ୍ମିଳନୀ ଆହୁତ ହେବ ଏବଂ ସେହି ସ୍ଥାନରୁ ହିଁ ବିଧିବଦ୍ଧ ଭାବରେ ସ୍ୱାଧୀନତା ଆନ୍ଦୋଳନ ଘୋଷିତ ହେବ ।

ଏହି ପ୍ରସ୍ତାବାନୁସାରେ ୧୯୪୨ ଜୁନ ୧୫ ତାରିଖ ଠାରୁ ୨୩ ତାରିଖ ପର୍ଯ୍ୟନ୍ତ ବ୍ୟାଙ୍କକ୍‌ଠାରେ ପୁଣି ଏକ ପ୍ରତିନିଧି ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଜାପାନ, ମାଞ୍ଚୁରିଆ, ହଂକଂ, ବର୍ମା, ବୋର୍ଣ୍ଣିଓ, ଜାଭା, ମାଲୟ ଓ ଶ୍ୟାମରୁ ପ୍ରାୟ ଶତାଧିକ ପ୍ରତିନିଧି ସେଠାରେ ସମବେତ ହୋଇଥିଲେ । ଯୁଦ୍ଧବନ୍ଦୀ ହୋଇ ରହିଥିବା ବ୍ରିଟିଶ ଭାରତୀୟ ବାହିନୀର ପ୍ରତିନିଧିମାନେ ମଧ୍ୟ ଏଥିରେ ଯୋଗ ଦେଇଥିଲେ । ସେହି ସମ୍ମିଳନୀରେ ମୂଳନୀତି ଧାର୍ଯ୍ୟ ହେଲା ଯଥା :—୧) ଭାରତ ବର୍ଷର ସ୍ୱାଧୀନତା ନିମନ୍ତେ, ପୂର୍ବ ଏସିଆର ଭାରତୀୟଙ୍କୁ ନେଇ 'ଆଜାଦହିନ୍ଦ୍ ସଙ୍ଘ' ଗଠିତ ହେବ । ୨) ଆଜାଦ୍‌ହିନ୍ଦ୍ ସଙ୍ଘର ଆଦର୍ଶ, କାର୍ଯ୍ୟକ୍ରମ ସବୁ ପ୍ରକାର ପରିକଳ୍ପନା ଭାରତ ଜାତୀୟ ମହାସଭାର ଆଦର୍ଶ ଓ ସଙ୍କଳ୍ପର ଅନୁସୃତ ହେବ । ଜାତୀୟ ମହାସଭାର ଆନ୍ଦୋଳନ ସହିତ ଯୋଗସୂତ୍ର ସ୍ଥାପନ କରିବାକୁ ହେବ । ୩) ପୂର୍ବ ଏସିଆସ୍ଥ ଭାରତୀୟମାନଙ୍କ ମଧ୍ୟରୁ ଏବଂ ଭାରତୀୟ ଜନସାଧାରଣଙ୍କ ମଧ୍ୟରୁ ସୈନ୍ୟ ସଂଗ୍ରହ କରି ଆଜାଦ୍‌ହିନ୍ଦ୍ ଫୌଜ ଗଠନ କରିବାକୁ ହେବ । ୪) ଭାରତ ପ୍ରତି ଏବଂ ନବଗଠିତ 'ଆଜାଦ୍‌ହିନ୍ଦ୍ ସଂଘ' ପ୍ରତି ଜାପାନମାନଙ୍କର ନୀତି ସ୍ପଷ୍ଟ ହେବ । ଘୋଷଣା କରିବା ପାଇଁ ଦାବୀ କରାଗଲା । ରାସ ବିହାରୀ ବୋଷଙ୍କ ଅଧ୍ୟକ୍ଷତାରେ ଆଜାଦ୍‌ହିନ୍ଦ୍ ସଂଘ (Indian Independence League) ଗଠିତ ହେଲା । ସଂଘର କର୍ମ କେନ୍ଦ୍ର ସିଙ୍ଗାପୁର ହେଲା । ପୂର୍ବ ଏସିଆର ପ୍ରତ୍ୟେକ ଦେଶରେ ସୈନ୍ୟ ବାହିନୀ ପାଇ ତାଲିମ ଶିବିର ଓ ସଂଘର ଶାଖାମାନ ପ୍ରତିଷ୍ଠା କରାଗଲା ।

ଆଜାଦହିନ୍ଦ୍ ସଙ୍ଘର ନିର୍ଦ୍ଦେଶକ୍ରମେ କ୍ୟାପଟେନ ମୋହନ ସିଂ (ଆଜାଦହିନ୍ଦ୍ ଫୌଜର ଜେନେରାଲ) ଙ୍କ ଅଧିନାୟକତ୍ୱରେ ଆଜାଦହିନ୍ଦ୍ ଫୌଜର ଅଗ୍ରଯାତ୍ରା

ହେଲ । ଜାପାନ ବନ୍ଦୀ ଶିବିରରେ ଆବଦ୍ଧଥିବା ବ୍ରିଟିଶ ଭାରତୀୟ ବାହିନୀ, ଆଜାଦହିନ୍ଦ ଫୌଜରେ ପରିଣତ ହୋଇ ସଗଠିତ ଓ ସୁଶୃଙ୍ଖଳିତଭାବେ କାର୍ଯ୍ୟ ଆରମ୍ଭ କଲେ । ସେମାନଙ୍କ ମନରେ ଭାରତୀୟ ଜାତୀୟତାବୋଧ ଏତେଦୂର ପ୍ରବଳ ହେଲା ଯେ, ଯେକୌଣସି ମୁହୂର୍ତ୍ତରେ ଦେଶର ସ୍ୱାଧୀନତା ପାଇଁ ଜୀବନ ଦେବାକୁ ପ୍ରସ୍ତୁତ ହୋଇ ରହିଲେ । ଆଜାଦହିନ୍ଦ୍ ଫୌଜର ଏକତା, ଓ ଶୃଙ୍ଖଳା ଦେଖି ଜାପାନ କର୍ତ୍ତୃପକ୍ଷ ସେମାନଙ୍କ ଉପରେ ପ୍ରଭୁତ୍ୱ ବିସ୍ତାର କରି ନିଜ ନିୟନ୍ତ୍ରଣାଧୀନରେ ରଖିବାକୁ ଚେଷ୍ଟା କଲେ । କିନ୍ତୁ ଯେଉଁ ଭାରତୀୟମାନେ, ଶହ ଶହ ବର୍ଷ ଧରି ପରାଧୀନତାର ଜ୍ୱାଳା ମର୍ମେ ମର୍ମେ ଅନୁଭବ କରିଛନ୍ତି ପୁଣି ଏକ ନୂଆ ସାମ୍ରାଜ୍ୟବାଦୀ ଶକ୍ତି ହାତରେ କ୍ରୀଡ଼ନକ ହୋଇ ରହିବାପାଇଁ ଆଉ ଇଚ୍ଛୁ ନଥିଲେ । ଏଥି ନେଇ ଜାପାନ ସମରନେତୃମାନଙ୍କ ସହ ମୋହନ ସିଂହଙ୍କର ଖୁବ୍ ମତାନ୍ତର ଓ ବିରୋଧ ଘଟିଲା । ଜାପାନୀମାନଙ୍କର ଅସ୍ପଷ୍ଟ ନୀତି ଯୋଗୁଁ, ମୋହନ ସିଂହ ଇସ୍ତଫା ଦେଲେ । ଏଣୁ କରି ଜାପାନ କର୍ତ୍ତୃପକ୍ଷ କଣ୍ଟୁଇନ ପାଇ ମୋହନ ସିଂହଙ୍କୁ ପୁଣି ବନ୍ଦୀକରି ରଖିଲେ । ଫଳରେ ଆଜାଦହିନ୍ଦ ଫୌଜ ସଂଗଠନ ଭାଙ୍ଗିଗଲା । କିନ୍ତୁ ଭାରତୀୟ ସ୍ୱାଧୀନତା ସଂଘର କାର୍ଯ୍ୟ ଠିକ୍ ଭାବେ ଚାଲିଥିଲା । ଏ ଘଟଣାରେ ଦୁଃଖ ପ୍ରକାଶ କରି ସଂଘର ସଭାପତି, ରାସବିହାରୀ ବୋଷ ଜାପାନ କର୍ତ୍ତୃପକ୍ଷଙ୍କ ନିକଟରେ ପ୍ରତିବାଦ ଜଣାଇ ଥିଲେ ।

ଏଠାରେ କେତେକ ଉଲ୍ଲେଖଯୋଗ୍ୟ ଘଟଣା ଅବତାରଣା କରାଗଲା ଯଥା:— ୧୯୪୨ ଫେବ୍ରୁୟାରୀ ୧୫ ତାରିଖ ଦିନ ସିଙ୍ଗାପୁର ବନ୍ଦର ପତନ ହେଲା । ପରଦିନ ବନ୍ଦୀ ଇଂରେଜ ବାହିନୀ ଠାରୁ ଭାରତୀୟ ବାହିନୀକୁ ଅଲଗା କରି, ଫେବ୍ରୁୟାରି ୧୭ ତାରିଖ ଦିନ ସିଙ୍ଗପୁରସ୍ଥ 'ଫେରାରପାର୍କ' ରେ ସମସ୍ତଙ୍କୁ ସମବେତ କରାଗଲା । ସେତେବେଳେ ସିଙ୍ଗାପୁରସ୍ଥ ବନ୍ଦୀ ଭାରତୀୟ ସୈନ୍ୟଙ୍କ ସଂଖ୍ୟା ୪୦ ହଜାର ଥିଲା । ଏତିକବେଳେ ଜାପାନୀ ସୈନ୍ୟାଧ୍ୟକ୍ଷମାନଙ୍କ ଗହଣରେ, ତତ୍କାଳୀନ ମାଲୟସ୍ଥ ବ୍ରିଟିଶ ସେନାପତି କର୍ଣ୍ଣେଲ-ହାଣ୍ଟ ଉପସ୍ଥିତ ରହି, ଭାରତୀୟ ସୈନ୍ୟମାନଙ୍କୁ ସମ୍ବୋଧନକରି କହିଲେ— 'ସିଙ୍ଗାପୁରସ୍ଥ ଇଂରେଜ ଓ ଭାରତୀୟ ବାହିନୀ, ଆମେ ସମସ୍ତେ ବର୍ତ୍ତମାନ ଜାପାନ ନିକଟରେ ବନ୍ଦୀ । ମୁଁ ବ୍ରିଟିଶ ରାଜାଙ୍କ ପକ୍ଷରୁ ଆପଣମାନଙ୍କୁ ଜାପାନ ସରକାରଙ୍କ ପ୍ରତିନିଧି ମେଜର ଫୁଜୀଓରାଙ୍କ ହାତରେ ଅର୍ପଣ କରୁଛି । ଆପଣମାନେ ଯେପରି ଆମ ଆଦେଶ ପାଳନ କରୁଥିଲେ, ସେହିଭଳି ଆଜିଠାରୁ ସେମାନଙ୍କ ଆଦେଶ ପାଳିବେ ବୋଲି ମୁଁ ଆଶା କରେ ।"

ଏହାପରେ ମେଜର ଫୁଜୀଓରା, ଭାରତୀୟ ଯୁଦ୍ଧ ବନ୍ଦୀମାନଙ୍କୁ ସମ୍ବୋଧନ କରି କହିଲେ— "ହେ, ମୋର ଭାରତୀୟ ସୈନିକ ବନ୍ଧୁଗଣ ! ଆଜିଠାରୁ ଆପଣମାନଙ୍କୁ ବନ୍ଦୀ ନଜରରେ ନ'ଦେଖି, ବନ୍ଧୁଭାବେ ଦେଖିବାପାଇଁ ଆମ ସରକାର ସ୍ଥିର

କରିଥନ୍ତୁ । ଏଣିକି ଆପଣମାନେ ପୂର୍ଣ୍ଣ ସ୍ୱାଧୀନ ଦେଶର ସୈନିକ ପରି, କ୍ୟାପ୍ଟେନ ମୋହନ ସିଂହଙ୍କ ନିର୍ଦ୍ଦେଶକ୍ରମେ ସ୍ୱଦେଶର ସ୍ୱାଧୀନତା ସଂଗ୍ରାମପାଇଁ ଆୟୋଜନ କରନ୍ତୁ ।" ଏଥିରେ ଭାରତୀୟ ସୈନ୍ୟବାହିନୀ ବିଶେଷଭାବେ ଅନୁପ୍ରାଣିତ ହୋଇ ଉଠିଲେ ଏବଂ ସେଦେଶରେ ତାଙ୍କୁ ଅସହାୟ ଅବସ୍ଥାରେ ଛାଡ଼ି ଚାଲିଯାଇଥିବା ଯୋଗୁଁ, ଇଂରେଜ ପ୍ରତି ସେମାନଙ୍କର ବିଦ୍ୱେଷଭାବ ଦ୍ୱିଗୁଣ ବୃଦ୍ଧି ପାଇଲା । ଏଣୁ ସେମାନେ ପ୍ରତିଜ୍ଞାବଦ୍ଧ ହେଲେ ଯେ, 'ଭାରତୀୟ ସ୍ୱାଧୀନତା ସଂଘ' ପରିଚାଳନାଧୀନ ମୋହନ ସିଂ ନେତୃତ୍ୱରେ ଭାରତର ମୁକ୍ତି ସାଧନ ନିମନ୍ତେ ବ୍ରିଟିଶ ବିରୁଦ୍ଧରେ ଯୁଦ୍ଧ କରିବେ ଏବଂ ପୂର୍ବ ଏସିଆର ପ୍ରବାସୀ ଭାରତୀୟଙ୍କ ଧନ-ଜୀବନ ଓ ସମ୍ମାନ ମଧ୍ୟ ରକ୍ଷା କରିବେ ।

## ଟୋକିଓ ଯୋଜନା ଓ ବେତାର ଭାଷଣ

ଟୋକିଓ ରହଣି କାଳ ମଧ୍ୟରେ, ସୁଭାଷ ଚନ୍ଦ୍ର ନିଜର ସୁଚିନ୍ତିତ ଯୋଜନା ପ୍ରସ୍ତୁତ କରି, ଦ୍ୱିତୀୟଥର ପାଇଁ ପୁଣି ଜାପାନ କର୍ତ୍ତୃପକ୍ଷଙ୍କୁ ମିଳିଲେ । ଭାରତର ସ୍ୱାଧୀନତା ସଂଗ୍ରାମକୁ ଶକ୍ତିଶାଳୀ ତଥା ତ୍ୱରାନ୍ୱିତ କରିବା ଉଦ୍ଦେଶ୍ୟ ନେଇ ସେ ସୁଦୂର ଜର୍ମାନୀରୁ ଜାପାନ ଆସିଥିବା ଦର୍ଶାଇ, ତାଙ୍କର ଯୋଜନାକୁ ଜାପାନ ସରକାରଙ୍କ ନିକଟରେ ଉପସ୍ଥାପିତ କଲେ । ଏଥିରେ ଜାପାନ ସରକାର ତାଙ୍କର ପ୍ରସ୍ତାବକୁ ଗମ୍ଭୀର ଭାବେ ଅନୁଧ୍ୟାନକରି, ବେଶ୍ ହୃଦୟଙ୍ଗମ କରିପାରିଥିଲେ । ଏବଂ ଯଥା ସମୟରେ ତାଙ୍କର ବୃହତ୍ତର ମୁକ୍ତି ବଳ ଆବଶ୍ୟକୀୟ ସାହାଯ୍ୟ ସୁବିଧା ଯୋଗାଇ ଦେବାପାଇଁ ମଧ୍ୟ ପ୍ରତିଶ୍ରୁତି ଦେଲେ । ନିଜର କର୍ମପନ୍ଥା ସ୍ଥିର କରିସାରି, ଏହାପରେ ସେ ଟୋକିଓରୁ, ଦକ୍ଷିଣପୂର୍ବ ଏସିଆର ସମସ୍ତ ଭାରତୀୟଙ୍କୁ ଲକ୍ଷ୍ୟକରି, ଏକ ଜ୍ୱାଳାମୁଖୀ ଉଦ୍ଦୀପନାମୟ ବେତାର ଭାଷଣ ଦେଇଥିଲେ । ସେଥିରେ କହିଥିଲେ— "ପକ୍ଷୀମାନଙ୍କ ମଧ୍ୟରେ କାଉ, ଜୀବଜନ୍ତୁମାନଙ୍କ ମଧ୍ୟରେ ଶୃଗାଳ ଓ ମନୁଷ୍ୟ ଗୋଷ୍ଠୀ ମଧ୍ୟରେ ଇଂରେଜ ସାମ୍ରାଜ୍ୟବାଦୀଗଣ ସବୁଠୁ ଅଧିକ ଧୂର୍ତ୍ତ । ଏହି ବ୍ରିଟିଶ ଜାତି ଯେତେବେଳେ ମତେ ପ୍ରତାରିତ କରିପାରି ନାହିଁ, ତାହେଲେ ଆପଣମାନେ ବିଶ୍ୱାସ ରଖନ୍ତୁ ଯେ, ପୃଥିବୀରେ ଏପରି କୌଣସି ଶକ୍ତି ନାହିଁ ଯାହାକି, ସୁଭାଷ ଚନ୍ଦ୍ରଙ୍କୁ ପ୍ରତାରିତ କରିପାରିବ । ଏ ବିଶ୍ୱାସ ମୋର ଥିଲେ ମଧ୍ୟ ଆପଣମାନଙ୍କ ମନର ସନ୍ଦେହ ସମ୍ପର୍କରେ ମୁଁ ସମ୍ପୂର୍ଣ୍ଣ ସଚେତନ । ହେ, ପୂର୍ବ ଏସିଆସ୍ଥ ମୋର ଭାରତୀୟ ବନ୍ଧୁଗଣ ! ମୁଁ ଆଜି ଆପଣମାନଙ୍କୁ ସ୍ୱଦେଶର ସ୍ୱାଧୀନତା ଅର୍ଜନ ନିମନ୍ତେ ଯୋଗଦାନ ଦେବାପାଇଁ ଅନୁରୋଧ ଜଣାଉଛି । ଭାରତ ବର୍ଷ ଗୋଟିଏ ମାତ୍ର ଦେଶ— ଭାରତ-ବାସୀ ଗୋଟିଏ ମାତ୍ର ଜାତି । ଜାତୀୟ ପତାକା ଏକମାତ୍ର ତା ହେଉଛି ତିରଙ୍ଗା ପତାକା । ଆମର ଏକମାତ୍ର ଶତ୍ରୁ ସେ ହେଉଛି ବାର୍ତ୍ତାନିଆ (ବ୍ରିଟିଶ) । ଆସନ୍ତୁ ଏହି ପତାକା ତଳେ ସମବେତ ହୋଇ ଆମେ ଦିଲ୍ଲୀ ଅଭିମୁଖେ ଯାତ୍ରା କରିବା ।

ଆମର ଜାତୀୟ ପତାକା ଦିଲ୍ଲୀ ଲାଲ୍‌କିଲ୍ଲାରେ ଉଡ଼ିବ । ମୁଁ ଆଶା ଓ ଭରସା ରଖେ ଯେ, ଆପଣମାନେ ହିଁ କେବଳ ଭାରତ ବର୍ଷର ଅତୀତ ଲୁପ୍ତଗୌରବ ଫେରାଇ ଆଣିବା ସଙ୍ଗେ ନିଜ ଶୌର୍ଯ୍ୟ ବୀର୍ଯ୍ୟର ପରିଚୟ ଦେଇ ଜାତିର ପରମ୍ପରାକୁ ଅକ୍ଷୁଣ୍ଣ ରଖିପାରିବେ । ଆପଣମାନଙ୍କ ମଧ୍ୟରେ ଯେଉଁମାନେ ସଚେତନ ତଥା ନେତୃସ୍ଥାନୀୟ ବ୍ୟକ୍ତି ଅଛନ୍ତି, ସେମାନେ ନିଜ ଅଞ୍ଚଳର ପ୍ରତିନିଧିଭାବେ ଜୁଲାଇମାସ ୨ ତାରିଖ ଦିନ ସିଙ୍ଗାପୁରଠାରେ ସମବେତ ହେବେ ବୋଲି ମୁଁ ଆଶା ରଖୁଛି ।"

ସୁଭାଷ ଚନ୍ଦ୍ରଙ୍କ ଉଦାତ୍ତ କଣ୍ଠ— ନିସୃତ ଜାତୀୟତାର ଏହି ଅଗ୍ନିମନ୍ତ୍ର, ପୂର୍ବ ଏସିଆର ଭାରତୀୟ ଜନସାଧାରଣଙ୍କ ମଧ୍ୟରେ ଯେ ଘୋର ଆଲୋଡ଼ନ ସୃଷ୍ଟି କରିଥିଲା— ଏକଥା କହିବା ବାହୁଲ୍ୟ ମାତ୍ର ।

## ଟୋକିଓରୁ ସିଙ୍ଗାପୁର ଅଭିମୁଖେ

୧୯୪୩ ଜୁଲାଇ ୨ ତାରିଖ ଦିନ ସୁଭାଷ ଚନ୍ଦ୍ର ଟୋକିଓରୁ ଆସି ସିଙ୍ଗାପୁରରେ ପହଞ୍ଚିଲେ । ଏହା ପୂର୍ବରୁ ଜାପାନୀ କର୍ତ୍ତୃପକ୍ଷ ସିଙ୍ଗାପୁର ନାମ ପରିବର୍ତ୍ତନ କରି, ତାକୁ 'ଶୋନାନ୍' ନାମରେ ଅଭିହିତ କରିଥିଲେ । ଉଲ୍ଲେଖ ଯୋଗ୍ୟ ଯେ ଶୋନାନ୍ ନାମକ ଜାପାନର ବୀର ବାଳକ ୧୯୪୧ ଡିସେମ୍ବର ମାସରେ ବ୍ରିଟିଶର ବିଖ୍ୟାତ ବିମାନ ବହର 'ପ୍ରିନ୍ସ ଅଫ୍ ୱେଲସ୍'କୁ ସିଙ୍ଗାପୁରଠାରେ ବୁଡ଼ାଇ ନିଜକୁ ଆତ୍ମାହୁତି କରିଥିଲା । ତାହାର ସ୍ମୃତି ଉଦ୍ଦେଶ୍ୟରେ ସିଙ୍ଗାପୁରର ନାମ ଶୋନାନ୍ ରଖାଯାଇଥିଲା ।

ଏହି ଶୋନାନ୍ ସହରରେ ୧୯୪୩ ଜୁଲାଇ ୪ ତାରିଖ ଦିନ ଆଜାଦହିନ୍ଦ୍ ସଂଘର ପ୍ରଥମ ବୈଠକ ଆହ୍ୱାନ କରାଯାଇଥିଲା । ଏଥିରେ ସମଗ୍ର ଦକ୍ଷିଣ ପୂର୍ବ ଏସିଆର ପ୍ରବାସୀ ଭାରତୀୟ ପ୍ରତିନିଧିଗଣ ବହୁ ସଂଖ୍ୟାରେ ଯୋଗ ଦେଇଥିଲେ । ସଂଘର ସ୍ଥାୟୀ ସଭାପତି ଶ୍ରୀ ରାସବିହାରୀ ବୋଷଙ୍କ ନେତୃତ୍ୱରେ ସହରସ୍ଥ 'କ୍ୟାଥେ-ଭବନ'ଠାରେ ସଭା ଅନୁଷ୍ଠିତ ହୋଇଥିଲା । ସୁଭାଷ ଚନ୍ଦ୍ର ମଞ୍ଚ ଉପରକୁ ଉଠିବା କ୍ଷଣି ସଙ୍ଗେ ପ୍ରଥମେ ରାସବିହାରୀ ବୋଷ ଉଠି ତାଙ୍କ ଗଳାରେ ଫୁଲମାଳ ଦେଇ ସମ୍ବୋଧନକରି କହିଲେ— "ଆମର ପ୍ରିୟ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ।" ଏହାପରେ ସମବେତ ଜନତା କଣ୍ଠରୁ ଭୁହାଇ ଭୁହାଇ— ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଜୟ ! ଧ୍ୱନିରେ କ୍ୟାଥେଭବନ ଥରହର କମ୍ପି ଉଠିଥିଲା । ରାସବିହାରୀ ବୋଷ ଉପସ୍ଥିତ ଜନତାକୁ ସମ୍ବୋଧନ କରି କହିଲେ— "ହେ ମୋର ପ୍ରବାସୀ ଭାରତୀୟ ବନ୍ଧୁଗଣ ! ଆଜି ଆମର ପରମ ସୌଭାଗ୍ୟ ଯେ, ଭାରତ ମାତାର ବୀରପୁତ୍ର ତଥା ସ୍ୱାଧୀନତା ସଂଗ୍ରାମର ମହାନ ବିପ୍ଳବୀ ଯୋଦ୍ଧା ନେତାଜୀ ସୁଭାଷ ଚନ୍ଦ୍ର

ବୋଷ ସୁଦୂର ଜର୍ମାନୀରୁ ଆସି ଆମ ଗହଣରେ ଉପସ୍ଥିତ ହୋଇପାରିଛନ୍ତି । ଅତଏବ ପ୍ରବାସୀ ଭାରତୀୟଙ୍କ ଦ୍ୱାରା ଗଠିତ ଆଜାଦହିନ୍ଦ ସଂଘର ସମସ୍ତ ଦାୟିତ୍ୱ ଭାର ଆଜି ମୁଁ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ହାତରେ ସମର୍ପଣ କରୁଅଛି । ସଭାସଦ ମଧ୍ୟ କରତାଳି ଓ 'ନେତାଜୀ-ଜିନ୍ଦାବାଦ' ଧ୍ୱନି । ଏଣିକି ଦକ୍ଷିଣ ପୂର୍ବ ଏସିଆସ୍ଥ ସମସ୍ତ ପ୍ରବାସୀ ଭାରତୀୟମାନଙ୍କର ଆଶା ଭରସାର ପ୍ରତୀକ ଓ କର୍ଣ୍ଣଧାର ରୂପେ ସଂଘର ଦାୟିତ୍ୱ ବହନକରି କାର୍ଯ୍ୟ କରିବାପାଇଁ ନେତାଜୀଙ୍କୁ ମୁଁ ବିଶେଷ ଅନୁରୋଧ ଜଣାଉଅଛି । (ପୁଣି ସଭା କକ୍ଷରୁ ନେତାଜୀ ଜିନ୍ଦାବାଦ ଧ୍ୱନି) କହିବା ବାହୁଲ୍ୟ ଯେ, ସିଙ୍ଗାପୁରର ଇତିହାସରେ ସେଦିନ ଭଳି ଅପୂର୍ବ ଉତ୍ସାହ ଓ ଉନ୍ମାଦନା ଆଉ କେବେ ଦେଖାଯାଇ ନଥିଲା । ସହରର ଗଳି, କନ୍ଦି ସବୁଠି, ତିରଙ୍ଗା ପତାକା ଓ ଯାଗା ଯାଗାରେ ବିରାଟ ତୋରଣମାନ ସହରକୁ ସୁନ୍ଦର ମନୋହର ସାଜ-ସଜ୍ଜା ହୋଇଥିଲା । ସେଦିନ ନେତାଜୀଙ୍କ ଭାଷଣ ଶୁଣିବାପାଇଁ ପୂର୍ବ ଏସିଆର ବିଭିନ୍ନ ଅଂଶରୁ ଅଗଣିତ ଭାରତୀୟ ନରନାରୀ ସପ୍ତାହକ ପୂର୍ବରୁ ସିଙ୍ଗାପୁର ଆସି ଅପେକ୍ଷା କରିଥିଲେ । ଏପରିକି, ସହରର କୌଣସି ହୋଟେଲ, ରେସ୍ତୋରାଁ, କଲେଜ ଓ ଧର୍ମଶାଳା ମଧ୍ୟ ଖାଲି ନଥିଲା । ଯେଣିକି ଚାହିଁବ ଲୋକାରଣ୍ୟ । ଭାରତର ଏହି ରହସ୍ୟମୟ ଜନ ନେତା ସୁଭାଷ ଚନ୍ଦ୍ରଙ୍କୁ ଦେଖିବା ନିମନ୍ତେ ବିଭିନ୍ନ ଜାତି ଓ ଧର୍ମର ଲକ୍ଷଲକ୍ଷ ଲୋକ 'କ୍ୟାଥେ ଭବନ' ପାଖରେ ସମବେତ ହୋଇଥାନ୍ତି । ଶୁଣିଲେ ସତରେ ଆଶ୍ଚର୍ଯ୍ୟ ହେବ ଯେ, ସେଦିନ କ୍ୟାଥେଭବନ ସଭା କକ୍ଷରେ, ଗୋଟିଏ ଆସନ କିଣିବାପାଇଁ କେତେଜଣ ଧନୀ ଭଦ୍ରବ୍ୟକ୍ତି ଏକ ଏକ ଲକ୍ଷ ଟଙ୍କା ଯାଏଁ ଆଜାଦହିନ୍ଦ ସଂଘ ପାଣ୍ଠିକୁ ଦାନ କରିଥିଲେ । ସଭା ଆରମ୍ଭରେ ଉଦ୍‌ବୋଧନ ଦେବାପାଇଁ ନେତାଜୀ ଯେତେବେଳେ ମଞ୍ଚ ଉପରେ ଠିଆ ହେଲେ, ସେତେବେଳେ ଜନତା ପକ୍ଷରୁ ଦୀର୍ଘ ସମୟ ଧରି 'ନେତାଜୀ-ଜିନ୍ଦାବାଦ' ଧ୍ୱନିରେ କ୍ୟାଥେଭବନ ପରିସର ମୁଖରିତ ହୋଇଉଠିଲା । ଉପସ୍ଥିତ ଭାରତୀୟ ପ୍ରତିନିଧିମାନଙ୍କୁ ଉଦବୋଧନ ଦେଇ ନେତାଜୀ କହିଲେ— "ଆଜି ଆପଣମାନେ ଯେଉଁଭଳି ଭାବେ ମୋତେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରିଛନ୍ତି ସେଥିରେ ମୁଁ ଅଭିଭୂତ ହୋଇପଡ଼ିଛି । କିନ୍ତୁ ନିକଟ ଭବିଷ୍ୟତରେ ଯଦି ଆପଣମାନଙ୍କ ନିକଟରେ ପୁଣି ମୋ ଡାକ ପହଞ୍ଚେ, ସେତେ-ବେଳେ ଏହିଭଳି ସହଯୋଗ ଦେବେ ବୋଲି ମୁଁ ଆଶାକରେ ।" ଏଥିରେ ସଭାସ୍ଥଳ ହୁଲସ୍ଥୂଳ, ସମସ୍ତେ ଉଠି ନିଜ ନିଜର ଡାହାଣ ହାତ ଉଠାଇ ଏକ ସ୍ୱରରେ କହିଲେ— 'ନିଶ୍ଚୟ ଆମେ ସବୁ ସହଯୋଗ କରିବୁ ।' ଏହାପରେ ନେତାଜୀ କହିଲେ— 'ଆପଣମାନେ ଜାଣନ୍ତି ମୁଁ ଏଠାକୁ ଆସିବା ପୂର୍ବରୁ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଅଗ୍ନିଯୁଗର ବିପ୍ଳବୀ ବୀର ଶ୍ରୀଯୁକ୍ତ ରାସବିହାରୀ ବୋଷଙ୍କ ନେତୃତ୍ୱରେ ଯେଉଁ ଆଜାଦହିନ୍ଦ ସଂଘ ଗଢ଼ାଯାଇଥିଲା, ସେହି ସଂଘର ସର୍ବମୟ କର୍ତ୍ତୃତ୍ୱଭାର ଆଜି ମୁଁ ନିଜେ ଗ୍ରହଣ କରୁଛି । ଭାରତର ଜାତୀୟ କଂଗ୍ରେସ ପକ୍ଷରୁ ଯେଉଁ ସ୍ୱାଧୀନତା

ଆନ୍ଦୋଳନ ଚାଲିଛି, ତାକୁ ଆହୁରି ଶକ୍ତିଶାଳୀ ତଥା ବ୍ୟାପକ କରିବା ନିମନ୍ତେ ଭାରତ ବାହାରେ ଆମେ ଆଜାଦହିନ୍ଦ ଦଳ ପକ୍ଷରୁ ସ୍ୱାଧୀନତା ଆନ୍ଦୋଳନ ଚଳାଇବା । ଏଥିରେ ହିନ୍ଦୁ, ମୁସଲମାନ, ଶିଖ୍, ଖ୍ରୀଷ୍ଟିଆନ ଓ ବୌଦ୍ଧ-ଜୈନ, ଜାତି ଧର୍ମ ନିର୍ବିଶେଷରେ, ଭାରତୀୟ ସନ୍ତାନ୍ ମାନେ ସ୍ୱାଧୀନତା ଯୁଦ୍ଧରେ ଯୋଗ-ଦେବାପାଇଁ ମୁଁ ଆହ୍ୱାନ କରୁଅଛି । ହଁ, ଅତୀତରେ କ୍ୟାପଟେନ୍ ମୋହନ ସିଂହଙ୍କ ନେତୃତ୍ୱରେ ଯେଉଁ ଆଜାଦହିନ୍ଦ ଫୌଜ ଗଠନ ହୋଇଥିଲା, ତାହାର ଯଥାଶୀଘ୍ର ପୁନର୍ଗଠନ ହେବା ସଙ୍ଗେ ସଙ୍ଗେ ସାମୟିକଭାବେ ଆମକୁ ଏକ ଅସ୍ଥାୟୀ ଆଜାଦହିନ୍ଦ ସରକାର ପ୍ରତିଷ୍ଠା କରିବାକୁ ହେବ । ସରକାର ଗଠିତ ହେବାପରେ, ପୂର୍ବ ଏସିଆର ଭାରତୀୟମାନଙ୍କ ସ୍ୱାଧୀନତା ଆନ୍ଦୋଳନ ସହିତ ଜାପାନର କୌଣସି ସମ୍ପର୍କ ରହିବ ନାହିଁ । କେବଳ ଆଜାଦହିନ୍ଦ ସରକାର ଓ ଜାପାନ ସରକାର ମଧ୍ୟରେ ମୈତ୍ରୀ-ମୂଳକ କୂଟନୈତିକ ସମ୍ପର୍କ ରହିବ ।

ଏହାଛଡ଼ା ଭାରତ ଉପରେ ଯଦି ଆକ୍ରମଣ କରିବାକୁ ହେବ ତାହେଲେ ଆଜାଦହିନ୍ଦ ଫୌଜର ସୈନିକ ବ୍ୟତୀତ ସେଥିରେ ଅନ୍ୟ କାହାରିକୁ ହସ୍ତକ୍ଷେପ ପାଇଁ ଅନୁମତି ଦିଆଯିବ ନାହିଁ । ମନେ ରଖନ୍ତୁ, ଇତିହାସ ଓ ପରମ୍ପରା ଦୃଷ୍ଟିରୁ ଆପଣମାନେ ସବୁ ବୀର ଭାରତୀୟମାନଙ୍କ ସନ୍ତାନ । ନିଜକୁ କ୍ରୀତଦାସ ଭଳି ମନେ କରନ୍ତୁ ନାହିଁ । ମୁଁ ଚାହେଁ, ଏଣିକି ଆପଣମାନେ ସ୍ୱାଧୀନ ଦେଶର ନାଗରିକ ଭଳି ସମ୍ମାନ ଶିରରେ ଆଚରଣ କରିବେ । ଭାରତର ସର୍ବଶ୍ରେଷ୍ଠ ନେତା ମହାତ୍ମାଙ୍କ ପ୍ରତି ପୂର୍ଣ୍ଣ ସମ୍ମାନ ଦେଖାଇ ମୁଁ କହୁଛି ଯେ, ଆଜି ଆମ୍ଭମାନଙ୍କୁ ଶକ୍ତିଦ୍ୱାରା ଶକ୍ତିର ଜବାବ ଦେବାକୁ ହେବ, ଏବଂ ରକ୍ତ ଦେଇ ସ୍ୱାଧୀନତା ହାସଲ କରିବାକୁ ହେବ । ଧିକ୍ କାପୁରୁଷଭଳି ଜୀବନ ଯାପନ କରିବା ଅପେକ୍ଷା ମୃତ୍ୟୁହିଁ ଶତଗୁଣ ଶ୍ରେୟସ୍କର । ବନ୍ଧୁଗଣ ଆଜି ମୁଁ ଦୃଢ଼ଭାବ ସହିତ କହୁଛି ଭାରତର ୪୦ କୋଟି ଲୋକଙ୍କ ପାଇଁ ଆମେ ପୂର୍ବ ଏସିଆରେ ଥିବା ୩୦ ଲକ୍ଷ ଭାରତୀୟ ଯଦି ଜୀବନ ବଳିଦେବା, ତାହେଲେ ତ୍ୟାଗର ପରିମାଣ ସେତେବେଳକୁ ବେଶି ହେବନାହିଁ । ଯେହେତୁ ପରାଧୀନତା କବଳରୁ ଆମେ ଆମର ମାତୃଭୂମିକୁ ମୁକ୍ତ କରିପାରିବା । ମୋର ପୂର୍ଣ୍ଣ ବିଶ୍ୱାସ ! ଆପଣମାନଙ୍କ ସାହାଯ୍ୟ ସହାନୁଭୂତି ତଥା ଆତ୍ମତ୍ୟାଗ ବଳରେହିଁ ଆମର ପ୍ରିୟ ଜନ୍ମଭୂମି ଭାରତବର୍ଷ ଶୀଘ୍ର ମୁକ୍ତିଲାଭ କରିବ । ବନ୍ଧୁଗଣ ! ଆପଣମାନେ ମନେ ରଖନ୍ତୁ 'ଆଜିଠାରୁ ପୂର୍ବ ଏସିଆର ପ୍ରବାସୀ ଭାରତୀୟମାନଙ୍କ ସଶସ୍ତ୍ର ସ୍ୱାଧୀନତା ସଂଗ୍ରାମ ବ୍ରିଟିଶ ବିରୁଦ୍ଧରେ ପ୍ରତ୍ୟକ୍ଷ ଭାବେ ଆରମ୍ଭ ହେଲା । ତାପରେ ନେତାଜୀଙ୍କ କଣ୍ଠରେ ଧ୍ୱନିତ ହୋଇଉଠିଲା— 'ଦିଲ୍ଲୀ ଚଲୋ' 'ଭକ୍ତ ବୃନ୍ଦ ରକ୍ତ ଦିଅ' ଆଜାଦହିନ୍ଦ୍-ଜିନ୍ଦାବାଦ୍-ଜୟହିନ୍ଦ୍-

## ଆଜାଦହିନ୍ଦ ଫୌଜ ଗଠନ

୧୯୪୩ ଜୁଲାଇ ୫ ତାରିଖ, ଦିନଟି ଭାରତବାସୀଙ୍କ ପକ୍ଷେ ଚିରସ୍ମରଣୀୟ ହୋଇ ରହିବ । ମାଳୟ ପ୍ରବାସୀ ଭାରତୀୟଙ୍କ ମନରେ ଅପୂର୍ବ ଆନନ୍ଦ ଉତ୍ସାହ ଖେଳିଗଲା, ସେମାନେ ଧନ ଜନ ଜୀବନ ସବୁ କିଛି ନେତାଜୀଙ୍କ ହାତରେ ସମର୍ପଣ କରିବାକୁ ଆଗେଇ ଆସିଲେ । ସେଦିନ ସିଙ୍ଗାପୁରସ୍ଥ ଫେରରପାର୍କ ଠାରେ ଆଜାଦ୍ ହିନ୍ଦ ଫୌଜର ସୈନିକମାନେ ଏକତ୍ରିତ ହୋଇ ସ୍ୱାଧୀନ ଦେଶର ସୈନିକ ଭଳି ବେଣ୍ଡ୍ର ବାଜାର ତାଳେ ୨ ମାର୍ଚ୍ଚ ପାଷ୍ଟ କରି ସେରମୋନିୟାଲ୍ ପରେଡ୍ (କୁଚ କାୱାଜ୍) ପ୍ରଦର୍ଶନ କରିଥିଲେ । ଏହି ପରେଡ୍ ଉତ୍ସବରେ ସର୍ବାଧିନାୟକ ଭାବେ ନେତାଜୀ ଉପସ୍ଥିତ ରହି ଅଭିବାଦନ ଗ୍ରହଣ କରିଥିଲେ । ଏହା ପରେ ସମବେତ ଜନତା ଓ ଆଜାଦ୍ ହିନ୍ଦ୍ ଫୌଜକୁ ସମ୍ବୋଧନ କରି କହିଲେ—"ବନ୍ଧୁଗଣ ! ଆଜିଠାରୁ ଜାତୀୟ ସଂଘ ପରିବର୍ତ୍ତେ "ଆଜାଦ୍ ହିନ୍ଦ୍ ଗଭର୍ଣ୍ଣମେଣ୍ଟ" ଓ ଜାତୀୟ ଫୌଜ ପରିବର୍ତ୍ତେ "ଆଜାଦ ହିନ୍ଦ ଫୌଜ" ନାମ ରଖାଗଲା । ଆଜି ଭାରତୀୟ ନେତୃତ୍ୱରେ ଯେଉଁ ମୁକ୍ତି ଫୌଜ ଗଢ଼ିଉଠିଛି, ଏହା ଭାରତକୁ ସ୍ୱାଧୀନତା କରିବା ପାଇଁ ଯୁଦ୍ଧ କରିବ । —ହେ ମୋର ! ଭାରତୀୟ ସ୍ୱାଧୀନତା ଯୁଦ୍ଧର ବୀର ସୈନିକଗଣ, ଆଜି ଆମର ଜୀବନର ସବୁଠାରୁ ଗୌରବର ଦିନ, ଯେହେତୁ ଜଗତ ସମକ୍ଷରେ ଭାରତର ମୁକ୍ତିବାହିନୀ ଗଠନ କରିବା ପାଇଁ ଭଗବାନ ଆମକୁ ସୁଯୋଗ ଓ ଶକ୍ତି ଦେଇଛନ୍ତି । ବନ୍ଧୁଗଣ ! ଆପଣମାନେ ଜାଣନ୍ତି, ଯେଉଁ ସିଙ୍ଗାପୁର ଦିନେ ବ୍ରିଟିଶ ସାମ୍ରାଜ୍ୟର ଏକ ଅଜେୟ ରଣଦୁର୍ଗ ଥିଲା, ଆଜି ସେହି ସିଙ୍ଗାପୁର ଭୂମି ଉପରେ ଆଜାଦହିନ୍ଦ ଫୌଜ ରଣ ସଜ୍ଜାରେ ସଜ୍ଜିତ ଓ ଉନ୍ନତ ହୋଇ ଭାରତର ମୁକ୍ତିପାଇଁ ମାର୍ଚ୍ଚିଂ କରୁଛନ୍ତି । ଏଠାରେ ମୁଁ ଆପଣମାନଙ୍କ କର୍ତ୍ତବ୍ୟ ସମ୍ବନ୍ଧେ ସୂଚନା କରାଇ ଦେବାକୁ ଚାହେଁ ଯେ, କର୍ତ୍ତବ୍ୟ ହେଉଛି ବିବିଧ । ଅସ୍ତ୍ରବଳ ଦ୍ୱାରା ଏବଂ ନିଜର ଶୋଣିତ ଉତ୍ସର୍ଗ ଦ୍ୱାରା ଭାରତର ସ୍ୱାଧୀନତା ଅର୍ଜ୍ଜନ କରିବାକୁ ହେବ । ଭାରତ ଯେତେବେଳେ ସ୍ୱାଧୀନ ହେବ, ସେତେବେଳେ ସ୍ୱାଧୀନ ଭାରତ ପାଇଁ ଆପଣମାନଙ୍କୁହିଁ ଏକ ସ୍ଥାୟୀ ସେନାବାହିନୀ ଗଢ଼ିବାକୁ ହେବ । ଭାରତର ସ୍ୱାଧୀନତାକୁ ଅକ୍ଷୁର୍ଣ୍ଣ ରଖିବା ଭାର ମଧ୍ୟ ଆପଣମାନଙ୍କ ଉପରେ ନ୍ୟସ୍ତ ରହିବ । ଆପଣମାନଙ୍କୁ ଏଭଳିଭାବେ ସଗଠିତ ହେବାକୁ ହେବ ଯାହାଫଳରେ ଭାରତ ଆଉ କେବେ ସ୍ୱାଧୀନତା ହରାଇବ ନାହିଁ । ସୈନିକ ହିସାବରେ ଆପଣମାନେ ତିନୋଟି ଆଦର୍ଶ ପୋଷଣକରି ତଦନୁଯାୟୀ ନିଜ ନିଜର ଜୀବନ ପରିଚାଳିତ କରିବାକୁ ହେବ । ଏହି ତିନୋଟି ଆଦର୍ଶ ହେଉଛି ବିଶ୍ୱସ୍ତତା, କର୍ତ୍ତବ୍ୟ ପାଳନ ଏବଂ ଆତ୍ମ ତ୍ୟାଗ । ଯେଉଁ ସୈନିକଗଣ ଜାତି ପ୍ରତି ବିଶ୍ୱସ୍ତ ରହନ୍ତି, ସେମାନେ କୌଣସି ପରିସ୍ଥିତିରେ ମଧ୍ୟ ଜାତି ପ୍ରତି କର୍ତ୍ତବ୍ୟ ପାଳନରେ ଅବହେଳା କରନ୍ତି ନାହିଁ । ପୁଣି ଯେଉଁମାନେ

ଆତ୍ମତ୍ୟାଗ ପାଇଁ ସଦା ପ୍ରସ୍ତୁତ, ସେମାନେ ସର୍ବଦା ଅଜେୟ ହୁଅନ୍ତି ।" ସ୍ୱାଧୀନତା ସଂଗ୍ରାମର ସୈନିକ ବର୍ଗଙ୍କୁ ସେ ସ୍ପଷ୍ଟ ଜଣାଇଦେଲେ— "ଆପଣମାନେ ମୋତେ ରକ୍ତ ଦିଅନ୍ତୁ, ମୁଁ ସ୍ୱାଧୀନତା ଆଣିଦେବି ।" (ତୁମ୍‌ମୁଝେ ଖୁନ୍ ଦୋ, ମୈ ଆଜାଦୀ ଦୁଙ୍ଗା )

ଏହାପରେ ଘଟଣାଚକ୍ର ଅତି ଦ୍ରୁତ ବେଗରେ ଆବର୍ତ୍ତିତ ହୋଇ ଚାଲିଲା । ଅଳ୍ପଦିନ ଭିତରେ ନେତାଜୀଙ୍କର ଅପୂର୍ବ ସଂଗଠନ ପ୍ରତିଭା ଓ ସାମରିକ ଜ୍ଞାନ ଦେଖି ଜାପାନ ସମେତ ପୂର୍ବ ଏସିଆର ସମସ୍ତ ଦେଶ ମୁଗ୍ଧ ଓ ବିସ୍ମିତ ହେବାକୁ ଲାଗିଲେ । ତାପରେ ସେ ପୂର୍ବ ଏସିଆର ବିଭିନ୍ନ ଅଂଶକୁ ଡୋଫାନୀ ଗସ୍ତକରି ପ୍ରତି ସହରରେ ପ୍ରବାସୀ-ଭାରତୀୟମାନଙ୍କ ସଭାରେ ଉଦ୍‌ବୋଧନ ଦେଇ କହିଲେ—"ହେ ମୋର ପ୍ରବାସୀ ଭାରତୀୟ ଭାଇମାନେ, ଆଜ ଆପଣମାନେ ସମସ୍ତେ ଏକଜୁଟ ହୁଅ । ଭାରତର ସ୍ୱାଧୀନତା ପାଇଁ ଭାରତ ଭିତରେ ସର୍ବଦଳ ଧର୍ମ ଆନ୍ଦୋଳନ ଚାଲିଛି । କିନ୍ତୁ ଇଂରେଜମାନେ ସେଥିରେ ଭ୍ରୂକ୍ଷେପ କରୁନାହାନ୍ତି । ଯେହେତୁ ସେମାନଙ୍କ ନିକଟରେ ଅଛି ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ର ଓ ସୁଶିକ୍ଷିତ ସୈନ୍ୟ ବାହିନୀ, ଏହି ଶକ୍ତି ବଳରେ ସେମାନେ ୪୦ କୋଟି ଭାରତବାସୀଙ୍କୁ ପରାଧୀନ କରି ରଖିଛନ୍ତି । କିନ୍ତୁ ଭାରତର ସ୍ୱାଧୀନତା ଅର୍ଜନ ପାଇଁ ମୁଁ ଚାହେଁ ଗୋଟିଏ ଦୁର୍ଦ୍ଧର୍ଷ ସେନାବାହିନୀ, ଯେଉଁମାନେ କି ଇଂରେଜ ସେନାବାହିନୀଙ୍କ ସହ (ଟକ୍କର) ଦେଇ ଭାରତବର୍ଷରୁ ସେମାନଙ୍କୁ ମୂଳପୋଛ କରିଦେଇ ପାରିବେ । ବନ୍ଧୁଗଣ ! ଆପଣ-ମାନେ ସକଳ ପ୍ରକାର ସହଯୋଗ ତଥା ତ୍ୟାଗ କରିବେ ବୋଲି ଆଶା ରଖି, ମୁଁ ଭାରତବର୍ଷ ଛାଡ଼ିଛି । ହାତଯୋଡ଼ି ମାଗିବା ଅପେକ୍ଷା ଛଡ଼ାଇ ନେଇ ସମ୍ପୂର୍ଣ୍ଣ ଭାରତର ସ୍ୱାଧୀନତା ଅର୍ଜିବା ମୋର ଲକ୍ଷ୍ୟ । ଏଥିପାଇଁ ଆବଶ୍ୟକ ୩ ଲକ୍ଷ ସୈନ୍ୟ ଓ ୩୦ କୋଟି ଟଙ୍କା । ଦକ୍ଷିଣପୂର୍ବ ଏସିଆରେ ୩୦ ଲକ୍ଷ ଭାରତୀୟ ବାସ କରନ୍ତି । ଜଣପିଛା ଯଦି ଏକଗଜ କପଡ଼ା ଓ ୩୦ ଟଙ୍କା କରି ଦେବେ, ତାହେଲେ ଆମର ପ୍ରତି ଜଓ୍ୱାନ ପାଇଁ ୧୦ ଗଜ କପଡ଼ା ଆଉ ୩ ଶହ କରି ଟଙ୍କା ହେବ । ମୋର ପୂର୍ଣ୍ଣ ବିଶ୍ୱାସ, ଏହା ଆପଣମାନଙ୍କ ଦ୍ୱାରା ଶୀଘ୍ର ପୂରଣ ହେବ । ଆପଣମାନେ ପ୍ରସ୍ତୁତ ହୁଅନ୍ତୁ । ଆଜ ଭାରତର ୪୦ କୋଟି ନରନାରୀ ଆପଣମାନଙ୍କ ଅପେକ୍ଷାରେ । ବନ୍ଧୁଗଣ ! ଭାରତମାତା ବଳିଦାନ ଚାହୁଁଛି । ଭାରତର ସ୍ୱାଧୀନତା ଦେବୀ ମୂଳରେ ରକ୍ତ ଦେବାକୁ ହେବ । ଏଣୁ ମୁଁ ଚାହେଁ ରକ୍ତ ! ରକ୍ତର ବଦଳେ ମୁଁ ଦେବି, କେବଳ ତିନୋଟି ଉପହାର । ତାହାହେଲା—କ୍ଷୁଧା, ତୃଷ୍ଣା ଓ ମୃତ୍ୟୁ । କିନ୍ତୁ ମୁଁ କଥା ଦେଉଛି, ଭାରତର ସ୍ୱାଧୀନତା ଆଣିଦେବି ଏବଂ ସର୍ବଦା ଆପଣମାନଙ୍କ ସଙ୍ଗରେ ଥିବି ।" ନେତାଜୀଙ୍କର ଜ୍ୱାଳାମୁଖୀ ଭାଷଣ ଶୁଣି ପ୍ରବାସୀ ଭାରତୀୟମାନଙ୍କ ମନରେ ଅପୂର୍ବ ଉତ୍ସାହ ଓ ଶିହରଣ ଖେଳିଗଲା । ସେମାନେ

ଅକୁଣ୍ଠିତ ଚିତ୍ତରେ ଧନ, ଜନ, ଜୀବନ ସବୁଥିରୁ ଆପଣା ଛାଏଁ ଛାଏଁ ସାହାଯ୍ୟ କରିବା ପାଇଁ ଆଗେଇ ଆସିଲେ ଓ ନେତାଜୀଙ୍କ ନିକଟରେ ସର୍ବସ୍ୱ ଦାନ କରିଦେଲେ ।

୧୯୪୩ ଜୁଲାଇ ୯ ତାରିଖ 'ରାସ ବିହାରୀ ବୋଷଙ୍କ ଦ୍ୱାରା ସିଙ୍ଗାପୁରଠାରେ ଆଉ ଏକ ବିରାଟ ସମ୍ମିଳନୀ ଆରମ୍ଭ ହେଲା । ନେତାଜୀ ଉକ୍ତ ସଭାରେ ଉଦ୍‌ବୋଧନ ଦେଇ କହିଲେ—"ହେ ବନ୍ଧୁଗଣ ! ଦକ୍ଷିଣ ପୂର୍ବ ଏସିଆର ୩୦ ଲକ୍ଷ ଭାରତୀୟଙ୍କ ଆସନ୍ନ ଚରମ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଉ"—'ଦିଲ୍ଲୀ ଚାଲ' । ଏହି ଚରମ ଯୁଦ୍ଧ ପାଇଁ ଅନ୍ତତଃ ସମସ୍ତରେ ୩ ଲକ୍ଷ ମରଣ ଭୟଶୂନ୍ୟ ସୈନ୍ୟ ଆଉ ୩୦ କୋଟି ଟଙ୍କା ପାଇବି ବୋଲି ମୁଁ ଆଶା କରେ । ଏହାଛଡ଼ା ମୁଁ ଚାହେଁ ବହୁଳ ସାହସୀ ମହିଳା । ଭାରତର ସ୍ୱାଧୀନତା ସଂଗ୍ରାମ ଇତିହାସରେ ନାରୀମାନଙ୍କ ଦାନ କିଛି କମ ନୁହେଁ । ୧୮୫୭ ସିପାହୀ ବିଦ୍ରୋହର ଅଧିନାୟିକା ବୁନ୍ଦେଲଖଣ୍ଡ ଝାନ୍ସୀର ରାଣୀ ଲକ୍ଷ୍ମୀବାଈଙ୍କ ଅପୂର୍ବ ବୀରତ୍ୱ ଇତିହାସ ପାଇଁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ସେହି ମହୀୟସୀ ବୀରାଙ୍ଗନାଙ୍କ ନାମ ସ୍ମୃତି ଉଦ୍ଦେଶ୍ୟରେ ଆମକୁ ଗୋଟିଏ ମହିଳା ବାହିନୀ ଗଠନ କରିବାକୁ ହେବ । ପ୍ରଥମ ସ୍ୱାଧୀନତା ସଂଗ୍ରାମ ବେଳେ ଝାନ୍ସୀର ରାଣୀ ଯେଉଁ ବୀରତ୍ୱ ସହକାରେ ତରବାରୀ ଚଳାଇଥିଲେ ଏହି ନାରୀ ବାହିନୀକୁ ସେହିପରି ବୀରତ୍ୱର ପରିଚୟ ଦେବାକୁ ହେବ । କହିବା ବାହୁଲ୍ୟ ଯେ, ନେତାଜୀଙ୍କ ଏହି ଆହ୍ୱାନରେ କେବଳ ସିଙ୍ଗାପୁରଠାରେ ଅସଂଖ୍ୟ ଶିକ୍ଷିତା ଝିଅ ଝାନ୍ସୀ ରେଜିମେଣ୍ଟରେ ନାମ ଦେବାକୁ ବଦ୍ଧପରିକର ହେଲେ । ସଙ୍ଗେ ସଙ୍ଗେ ଏହି ବାହିନୀର ଅଧିନାୟିକାଭାର ଗ୍ରହଣ କରିବା ପାଇଁ ନେତାଜୀ ଡା. ଲକ୍ଷ୍ମୀସ୍ୱାମୀନାଥନ୍ (କ୍ୟାପଟେନ) ଙ୍କୁ ବାଛିଲେ । ସର୍ବପ୍ରଥମେ ସିଙ୍ଗାପୁରଠାରେ ନାରୀମାନଙ୍କୁ ସାମରିକ ଶିକ୍ଷାଦେବା ନିମନ୍ତେ, ଶିକ୍ଷା ଶିବିର ଖୋଲା ହେଲା । ସେଥିରେ ଦଳେ ଦଳେ ଭାରତୀୟ ନାରୀ ଆସି ଭର୍ତ୍ତିହୋଇ ଆଜାଦହିନ୍ଦ ଫୌଜରେ ଯୋଗଦେଲେ । ଏମାନଙ୍କୁ ବିଭିନ୍ନ ପ୍ରକାର ଅସ୍ତ୍ର ଶସ୍ତ୍ର ସହ ଆଧୁନିକ ଯୁଦ୍ଧ କୌଶଳରେ ଧୂରନ୍ଧର ଶିକ୍ଷା ଦିଆଯାଉଥିଲା । ଏପରିକି ସମ୍ମୁଖ ରଣାଙ୍ଗନକୁ ଆଗେଇ ଯିବାପାଇଁ ପୁରୁଷମାନଙ୍କ ଅପେକ୍ଷା ଏମାନେ କୌଣସି ଗୁଣରେ କମ ନଥିଲେ । ପରବର୍ତ୍ତୀକାଳେ ପୂର୍ବ ଏସିଆର ବିଭିନ୍ନ ଅଂଶରେ ଝାନ୍ସୀ ବାହିନୀର ଶାଖାମାନ ଖୋଲା ଯାଇଥିଲା । କର୍ଣ୍ଣେଲ ଲକ୍ଷ୍ମୀ ସ୍ୱାମୀନାଥନ୍ ଏହି ରେଜିମେଣ୍ଟର କର୍ତ୍ତୃତ୍ୱ ଗ୍ରହଣକରି ଅପୂର୍ବ ଦେଶ-ପ୍ରେମ ଓ ବୀରତ୍ୱର ପରାକାଷ୍ଠା ଦେଖାଇଛନ୍ତି । ପୁରୁଷମାନଙ୍କପରି ସମ୍ମୁଖ ରଣା-ଙ୍ଗନରେ ଯୋଗ ଦେବାପାଇଁ ସେମାନେ ସର୍ବାଧିନାୟକ ନେତାଜୀଙ୍କ ନିକଟରେ ଆବେଦନ କରିଥିଲେ । କିନ୍ତୁ ନେତାଜୀ ସେମାନଙ୍କୁ ଆଶ୍ୱାସନା ଦେଇ କହିଲେ ଯେ— "ଯୁଦ୍ଧ କରିବା ଅପେକ୍ଷା ତୁମମାନଙ୍କର ସବୁଠୁଁ ବଡ଼ କର୍ତ୍ତବ୍ୟ ହେବ,

ଯୁଦ୍ଧ କ୍ଷେତ୍ରରେ ଆହତ ସୈନିକ ତଥା ରୋଗାକ୍ରାନ୍ତ ସୈନିକ ଭାଇମାନଙ୍କ ସେବା ସୁଶ୍ରୁଷା । ନେତାଜୀଙ୍କ ନିର୍ଦ୍ଦେଶରେ ଏହି ନାରୀ ବାହିନୀ ବହୁତ ରଣାଙ୍ଗନ ତଥା ହସ୍ପିଟାଲମାନଙ୍କରେ ସୈନିକମାନଙ୍କର ସେବା କାର୍ଯ୍ୟ ସମ୍ପାଦନା କରିବାରେ ଅପୂର୍ବ ଆତ୍ମତ୍ୟାଗ ଓ କର୍ତ୍ତବ୍ୟ ପରାୟଣତା ଦେଖାଇଛନ୍ତି । ଏପରିକି କେତେ ଥର ଶତ୍ରୁ ସୈନ୍ୟଙ୍କ ମୁହାଁମୁହିଁ ହୋଇ ସେମାନେ ନିଜର ଆତ୍ମରକ୍ଷା କରିବାରେ ମଧ୍ୟ ଅତି ଦୁଃସାହସିକତାର ପରିଚୟ ଦେଇଛନ୍ତି ।

ଝାନ୍ସୀ ରାଣୀ ବାହିନୀ ଭଳି ଗୋଟିଏ ବାଳସେନା ବାହିନୀ ମଧ୍ୟ ଗଢ଼ା ଯାଇଥିଲା ଯେଉଁଥିରେ କି ହଜାର ହଜାର ବାଳକ ବାଳିକା ଏଥିରେ ଯୋଗ ଦେଇଥିଲେ । ସେମାନଙ୍କୁ ବହୁତ ପ୍ରକାର ରଣ କୌଶଳ ତଥା ଅନ୍ତର୍ଘାତ କାର୍ଯ୍ୟ ପାଇଁ ଶିକ୍ଷା ଦିଆ ଯାଉଥିଲା । ବିଶେଷ କରି ଏହି ବାହିନୀଟି ଗୋଟିଏ ଆତ୍ମଘାତୀ ଦଳ ରୂପେ ଖ୍ୟାତ ଥିଲା । ଏମାନେ ସବୁ ପିଠିରେ ମାଇନ୍ ଏବଂ ବୋମା ବାନ୍ଧି ଶତ୍ରୁ ପକ୍ଷ ଟ୍ୟାଙ୍କ ଆସୁଥିବା ରାସ୍ତାକଡ଼ରେ, ଡାଳ ପତ୍ରରେ ଆବୃତ ହୋଇ, ଲୁଚି ଛପି ରହୁଥାନ୍ତି । ଟ୍ୟାଙ୍କ ଆସି ନିକଟତମ ହେଲେ ହଠାତ୍ ତାଙ୍କ ସାମନାକୁ ଯାଇ ଶୋଇପଡନ୍ତି । ଟ୍ୟାଙ୍କ ସେମାନଙ୍କୁ ଦଳି ଚକଟି ଚାଲିଯାଏ, କିନ୍ତୁ ମାଇନ୍ ବିସ୍ଫୋରଣ ଆଘାତରେ ଶତ୍ରୁ ଟ୍ୟାଙ୍କଟି ସଙ୍ଗେ ସଙ୍ଗେ ଧ୍ୱଂସ ହୋଇଯାଏ । ଫଳରେ ଆଜାଦହିନ୍ଦ ଫୌଜର ବାଳସେନା ଦଳର ଜଣେ ଜଣେ ସାନ ଅଭିମନ୍ୟୁ ମଧ୍ୟ ସେହିଭଳି ଧ୍ୱଂସ ହୋଇ ଯାଆନ୍ତି । ଭାରତର ସ୍ୱାଧୀନତା ଲଭ ପାଇଁ ଭାରତ ବାହାରେ ବହୁ କିଶୋର କିଶୋରୀ ଏହିଭଳି ଆତ୍ମତ୍ୟାଗ କରିଛନ୍ତି ।

ଏହାପରେ ନେତାଜୀ 'ଆଜାଦହିନ୍ଦ ଦଳ' ନାମରେ ଗୋଟିଏ ବେସାମରିକ ପ୍ରତିଷ୍ଠାନ ଗଢ଼ିଥିଲେ । ଶତ୍ରୁ କବଳରୁ ମୁକ୍ତ ଅଞ୍ଚଳ ମାନଙ୍କରେ ବେସାମରିକ ବ୍ୟବସ୍ଥା ପ୍ରବର୍ତ୍ତନ କରିବାଭାରର ଏହି ଦଳ ଉପରେ ନ୍ୟସ୍ତ ଥିଲା । ଆଜାଦହିନ୍ଦ ଫୌଜ, ଝାନ୍ସୀ ରାଣୀ ବାହିନୀ, ଆଜାଦହିନ୍ଦ ଦଳ ତଥା ସେନାନାୟକ ମାନଙ୍କର ଉପଯୁକ୍ତ ଶିକ୍ଷା ନିମନ୍ତେ ଦକ୍ଷିଣ ପୂର୍ବ ଏସିଆର ମାଲୟା, ଶ୍ୟାମ, ବ୍ରହ୍ମଦେଶ, ଜାପାନ, ଇଣ୍ଡୋଚିନ୍, ଫିଲିପାଇନ୍, ସାଂଘାଇ, ସିଙ୍ଗାପୁର, ଜାଭା, ସୁମାତ୍ରା ଓ ଇଣ୍ଡୋନେସିଆ ପ୍ରଭୃତି ବହୁସ୍ଥାନରେ ଶିକ୍ଷାଶିବିରମାନ ସ୍ଥାପିତ ହେଲା । ଏହିସବୁ ଶିବିର ମଧ୍ୟରେ ସିଙ୍ଗାପୁର, ଜୋହର, ସେରେମ୍ବାର, ଇପୋ, ପେନାଙ୍ଗ୍, କଦ୍ଧା, କୁଆଲାଲମ୍ପୁର, ବ୍ୟାଙ୍କକ୍ ଓ ରେଙ୍ଗୁନସ୍ଥ ଶିବିରମାନ ପ୍ରଧାନ ଥିଲା । କେବଳ ବର୍ମାରେ ଏହାର ଶହେଟି ଶାଖା ଗଢ଼ା ଯାଇଥିଲା । ଏହିସବୁ କେନ୍ଦ୍ର ସମ୍ପୂର୍ଣ୍ଣ ଭାରତୀୟମାନଙ୍କ କର୍ତ୍ତୃତ୍ୱରେ ଭାରତୀୟ ମାନେହିଁ ଶିକ୍ଷା ପ୍ରଦାନ କରୁଥିଲେ । ପ୍ରତି ଶିକ୍ଷା ଶିବିରରୁ ପ୍ରତି ୭ ମାସରେ ସାଢ଼େ ତିନି ହଜାର ସୈନ୍ୟ ପ୍ରସ୍ତୁତ କରିବାପାଇଁ ବ୍ୟବସ୍ଥା ଥିଲା ।

ଏଥିରେ ବୌଦ୍ଧ, ହିନ୍ଦୁ, ଶିଖ, ଜୈନ, ଖ୍ରୀଷ୍ଟିଆନ, ପାର୍ଶୀ ଓ ମୁସଲମାନ ଜାତି ଧର୍ମ ନିର୍ବିଶେଷରେ ସବୁ ସମ୍ପ୍ରଦାୟର ଯୁବକ ଯୁବତୀ ଦଳେ ଦଳେ ଆସି ଆଜାଦହିନ୍ଦ ଫୌଜରେ ଯୋଗ ଦେଉଥିଲେ । ଏମାନଙ୍କ ମଧ୍ୟରେ ଧର୍ମ ବା ଜାତିଗତ ଭେଦାଭେଦର ଚିହ୍ନ ନଥିଲା । ସିଙ୍ଗାପୁରଠାରୁ ଅଫଗର ପର୍ଯ୍ୟନ୍ତ ପଟ୍ଟଣର ମଧ୍ୟେ ଅଭିବାଦନ କେବଳ 'ଜୟହିନ୍ଦ୍' ଧ୍ୱନି ଥିଲା । ସମଗ୍ର ପୂର୍ବ ଏସିଆର ପ୍ରବାସୀ ଭାରତୀୟମାନେ ଯେତେବେଳେ ପରସ୍ପରକୁ ଭେଟୁଥିଲେ, ସେତେବେଳେ ଏହି ଗୋଟିଏ ମନ୍ତ୍ର ମାତ୍ର ଜୟହିନ୍ଦ୍ ଉଚ୍ଚାରଣ କରୁଥିଲେ । ନମସ୍ତେ, ନମସ୍କାର, ସତ୍ ସତଶ୍ର ଅକାଲ, ଗୁଡ୍ ମର୍ଣ୍ଣିଙ୍ଗ ବା ଅସ୍‌ଲାମ ଅଲାଇକୁମ୍ ଇତ୍ୟାଦି ସାମ୍ପ୍ରଦାୟିକ ମନୋଭାବ ପୂର୍ଣ୍ଣ ଅଭିବାଦନ ପ୍ରାୟ ଭୁଲିଯାଇଥିଲେ । ଆଜାଦହିନ୍ଦ୍ ଫୌଜର ରେଜିମେଣ୍ଟ ବା ଦଳ ଭାରତର ଜାତୀୟ ନେତାମାନଙ୍କ ନାମରେ ବିଭକ୍ତ କରା-ଯାଇଥିଲା ଯଥା— ଗାନ୍ଧୀ ବ୍ରିଗେଡ୍, ନେହେରୁ ବ୍ରିଗେଡ୍, ଆଜାଦ ବ୍ରିଗେଡ୍, ସୁଭାଷ ବ୍ରିଗେଡ, ବାହାଦୁର ଗ୍ରୁପ ଓ ଝାନସୀରାଣୀ ରେଜିମେଣ୍ଟ । ଏହାଛଡ଼ା ବାଳସେନା ବାହିନୀ ମଧ୍ୟ ଥିଲା । ଯୁଦ୍ଧ ନିନାଦ ବା (ଜଙ୍ଗୀନାରା)ର ମନ୍ତ୍ର ଧ୍ୱନି ଥିଲା ଯଥା— 'ଇନକିଲାବ୍-ଜିନ୍ଦାବାଦ','ନେତାଜୀ ଜିନ୍ଦାବାଦ', 'ଆଜାଦହିନ୍ଦ ଜିନ୍ଦାବାଦ୍' 'ଚଲୋ ଦିଲ୍ଲୀ', 'ଭାରତ ମାତା କି ଜୟ', 'ରକ୍ତ ! ରକ୍ତ ! ଅଧିକ ରକ୍ତ' (ଖୁନ୍ ଖୁନ ଔର ଖୁନ) ଏଠାରେ ଧର୍ମ ଥିଲା ବ୍ୟକ୍ତିଗତ । ଯିଏ ଯେଉଁ ଧର୍ମକୁ ମାନିଲା ବା ପୂଜା କଲା, ସେଥିପାଇଁ କାହାର କୌଣସି ଆପତ୍ତି ନଥିଲା । କେବଳ ଆପତ୍ତିଜନକ ଖାଦ୍ୟ ଥିଲା, ବିଶେଷକରି ଗୋରୁ ଓ ଘୁଷୁରି । ଏହି ଦୁଇଟି ଜନ୍ତୁର ମାଂସ ଭୁଲରେ ମଧ୍ୟ, ଆଜାଦହିନ୍ଦ ଫୌଜର କୌଣସି କ୍ୟାମ୍ପରେ ପ୍ରବେଶ କରିବା ଶକ୍ତ ନିଷେଧାଦେଶ ଥିଲା । ନେତାଜୀଙ୍କର ସମନ୍ୱୟବାଦ ନୀତି ପୂର୍ଣ୍ଣତଃ ଦଳ ମଧ୍ୟରେ କାର୍ଯ୍ୟକାରୀ ହେଉଥିଲା । ସମସ୍ତଙ୍କର ଏକ ମନ, ଏକ ପ୍ରାଣ, ଓ ଏକ ଉଦ୍ଦେଶ୍ୟ ଭାରତକୁ ସ୍ୱାଧୀନତା କରି ଦିଲ୍ଲୀ ଲାଲକିଲ୍ଲା ଉପରେ ତ୍ରିରଙ୍ଗା ପତାକା ଉଡ଼ାଇବା ।

ଆଜାଦହିନ୍ଦ ଫୌଜର ଏହି ସବୁ ଶିକ୍ଷା ଶିବିର ତଥା ପ୍ରଶାସନିକ ବିଭାଗ ପରିଚାଳନାପାଇଁ ଯେଉଁ ବିପୁଳ ପରିମାଣ ଅର୍ଥ ବ୍ୟୟ ହେଉଥିଲା, ସେ ସବୁ ପ୍ରବାସୀ ଭାରତୀୟମାନେ ଲକ୍ଷ ଲକ୍ଷ କୋଟି କୋଟି ଟଙ୍କା ମୁକ୍ତ ହସ୍ତରେ ନେତାଜୀଙ୍କୁ ଦାନ କରୁଥିଲେ । ଅଧିକାଂଶ ସଭା ସମିତିମାନଙ୍କରେ, ନେତାଜୀଙ୍କ ଗଳାର ଫୁଲମାଳ ନେବାପାଇଁ ଲୋକେ ଏତେ ଉତ୍ସୁକ ହେଉଥିଲେ ଯେ, ତାହା ନିଲାମ କରିବାର ଦର, କୋଡ଼ିଏ ତଥା ପଚିଶି ଲକ୍ଷ ପର୍ଯ୍ୟନ୍ତ ହେଉଥିଲା । ନେତାଜୀ ଯେତିକି ପରିମାଣ ଅର୍ଥ ପାଇବାକୁ ଆଶା ରଖିଥିଲେ, ତାହାର ତିନି ଗୁଣ ଅଧିକ ଟଙ୍କା ପ୍ରବାସୀ ଭାରତୀୟମାନଙ୍କଠାରୁ ପାଇଥିଲେ । ଫଳରେ ଆଜାଦହିନ୍ଦ ବ୍ୟାଙ୍କ ପ୍ରତିଷ୍ଠା

ହେଲ ଏବଂ ତାହାର ଶାଖାମାନ ପୂର୍ବ ଏସିଆର ବଡ଼ବଡ଼ ସହରରେ ଖୋଲଗଲ । ଏହି ଟଙ୍କାରେ ଜାପାନ ସମେତ ଅନ୍ୟାନ୍ୟ ବନ୍ଧୁ ରାଷ୍ଟ୍ରଙ୍କ ନିକଟରୁ ଆଜାଦହିନ୍ଦ ଫୌଜଙ୍କ ପାଇଁ ଅସ୍ତ୍ର ଶସ୍ତ୍ର ତଥା ଯୁଦ୍ଧୋପକରଣ ସାଜ ସରଞ୍ଜାମ ସବୁ କିଣାଗଲ । ଏବଂ ସୈନିକ ତଥା ଅନ୍ୟମାନଙ୍କ ବ୍ୟକ୍ତିଗତ ପକେଟ ଖର୍ଚ୍ଚ ପାଇଁ, ସେମାନଙ୍କ ଅନୁସାରେ ମାସିକ କିଛି କିଛି ଟଙ୍କା ଦିଆଗଲ । ଚିଠିପତ୍ର ପାଇଁ ନିଜସ୍ୱ ଡାକଘରମାନ ଖୋଲଗଲ ଓ ବଡ଼ବଡ଼ ମୂଲ୍ୟର ଡାକ ଟିକଟ ଛପାଇ, ନିଜର ସ୍ୱତନ୍ତ୍ର ଡାକ ବିଭାଗ ମଧ୍ୟ ଖୋଲାଗଲ । ମୁକ୍ତ ଅଞ୍ଚଳମାନଙ୍କରେ ପ୍ରଚଳନ କରିବାପାଇଁ ନିଜସ୍ୱ ମୁଦ୍ରା ମଧ୍ୟ ଛପା ଯାଉଥିଲ । ଆଜାଦହିନ୍ଦ ଫୌଜର ଟଙ୍କା ପଇସା ଓ ଖାଦ୍ୟ ଜିନିଷ ପ୍ରଚୁର ପରିମାଣରେ ଜମା ହୋଇଥିଲ ଯାହା କି ୫ ବର୍ଷ ପର୍ଯ୍ୟନ୍ତ ଯୁଦ୍ଧ କଲେ ମଧ୍ୟ ଶେଷ ହୁଅନ୍ତା ନାହିଁ । ଦକ୍ଷିଣ ପୂର୍ବ ଏସିଆରେ ନେତାଜୀଙ୍କ ପ୍ରଭାବ ଏପରି ବଢ଼ି ବୁଲିଲ ଯେ, ଲୋକେ ଘର ବାଡ଼ି, ଜମିଜମା, କଳକାରଖାନା, ସୁନା ରୁପା ଇତ୍ୟାଦି ସ୍ୱେଚ୍ଛାରେ ଦାନ କରି, ସପରିବାରେ ଆଜାଦହିନ୍ଦ ଫୌଜରେ ଯୋଗ ଦେଲେ । ଏପରିକି ଥରେ ରେଙ୍ଗୁନରେ ନେତାଜୀଙ୍କର ଅଠଚାଳିଶତମ ଜୟନ୍ତୀ ଉତ୍ସବରେ ଭକ୍ତମାନେ ନେତାଜୀଙ୍କୁ ସୁନାରେ ଓଜନ କରି, ସେହି ସମସ୍ତ ଓଜନ ସୁନା ଆଜାଦହିନ୍ଦ ସରକାରଙ୍କୁ ଦେଇଥିଲେ ।

ମାତ୍ର ୩-୪ ମାସ ମଧ୍ୟରେ କଠୋର ଓ ଅକ୍ଲାନ୍ତ ପରିଶ୍ରମ ଫଳରେ ଆଜାଦ-ହିନ୍ଦ ଫୌଜର ବଡ଼ବଡ଼ ବିଭାଗ ଓ ଶାଖା ଯୁଦ୍ଧବିଦ୍ୟା ତାଲିମପ୍ରାପ୍ତ ହୋଇ ଯଥେଷ୍ଟ ଶକ୍ତି ସଞ୍ଚୟ କରିବାରେ ସମର୍ଥ ହେଲେ । ଦଳକୁ ପରିଚାଳନା କରିବାପାଇଁ ଟଙ୍କା ସୁନା, ଅସ୍ତ୍ର ଶସ୍ତ୍ର, ଯାନବାହାନ ତଥା ଖାଦ୍ୟ ସାମଗ୍ରୀ ପ୍ରଚୁର ପରିମାଣରେ ମହଜୁଦ ହେଲ । ଏହାପରେ ନେତାଜୀ କାଳ ବିଳମ୍ବ ନକରି ପୂର୍ବ ପରିକଳ୍ପିତ ଉପାୟରେ ବାଧ୍ୟଭାବରେ ଗୋଟିଏ ଅସ୍ଥାୟୀ ସରକାର ପ୍ରତିଷ୍ଠା କରିବାପାଇଁ ସ୍ଥିର କଲେ ।

## ଅସ୍ଥାୟୀ ଆଜାଦହିନ୍ଦ ସରକାର ପ୍ରତିଷ୍ଠା

'ଶୋନାନ' ୧୯୪୩ ମସିହା ଅକ୍ଟୋବର ୨୧ ତାରିଖ ଦିନଟି ଭାରତ ଇତିହାସରେ ଚିରସ୍ମରଣୀୟ ହୋଇ ରହିବ । ସେଦିନ ସିଙ୍ଗାପୁର ମ୍ୟୁନିସିପାଲ ମଇଦାନଠାରେ ଲକ୍ଷାଧିକ ଲୋକଙ୍କର ସମାଗମ ହୋଇଥିଲ । ସମଗ୍ର ଦକ୍ଷିଣ ପୂର୍ବ ଏସିଆର ବଡ଼ବଡ଼ ଅଂଶରୁ ନାନା ଧର୍ମ ଓ ନାନା ଜାତିର ହଜାରାଧିକ ଭାରତୀୟ ନେତୃବୃନ୍ଦ ଯୋଗ ଦେଇଥିଲେ । ଏହାଛଡ଼ା ଜର୍ମାନୀ, ଜାପାନ, ଇଟାଲି, ଇଣ୍ଡୋ-ନେସିଆ, ମାଞ୍ଚୁରିଆ, ଫିଲିପାଇନ, କୋରିଆ, ଇଣ୍ଡୋଚିନ, ଶ୍ୟାମ, ହଂକଂ, ମାଳୟ ଓ ବ୍ରହ୍ମଦେଶ ପ୍ରଭୃତି ରାଷ୍ଟ୍ରର କୂଟନୈତିକ ଓ ଉଚ୍ଚ ପଦସ୍ଥ ରାଜକର୍ମଚାରୀ ବୃନ୍ଦ

ମଧ୍ୟ ଉପସ୍ଥିତ ଥିଲେ । ସବୁଠୁ ସୁସଜ୍ଜିତ ମଞ୍ଚର ଉଚ୍ଚ ଉର୍ଦ୍ଧ୍ୱ ଦେଶରେ ଭାରତର ତ୍ରିରଞ୍ଜିତ ଜାତୀୟ ପତାକା ପବନରେ ହୋଇ ଉଡୁଥିଲା । ଦର୍ଶକ ଗ୍ୟାଲେରୀ ତଥା ସଭା ମଣ୍ଡପର ପ୍ରତ୍ୟେକ ସ୍ଥାନରେ ଦେଶ ଭକ୍ତ ଭାରତୀୟ ବୀରମାନଙ୍କର ପ୍ରତିଛବି ଟଙ୍ଗାଯାଇ ଶୋଭାବର୍ଦ୍ଧନ କରୁଥିଲା । ଛବି ଗୁଡ଼ିକ ମଧ୍ୟରେ ଥିଲେ ଯଥା— ମହାରାଣୀ ଲକ୍ଷ୍ମୀବାଈ, ଛତ୍ରପତି ଶିବାଜୀ, ମହାରାଣା ପ୍ରତାପ, ଟିପୁ ସୁଲତାନ, ତାନ୍ତିଆ ଟୋପେ, ଦୁର୍ଗାବାଈ, ବୃନ୍ଦ ବନ, ବାହାଦୁର୍ ଶାହ, ବାଲ ଗଙ୍ଗାଧର ତିଳକ, ଯତୀନ୍ଦ୍ର ନାଥ ଠାକୁର, ଲାଲ ଲଜପତ୍ ରାୟ, ମଦନ ମୋହନ ମାଳବ୍ୟ, ମହାତ୍ମା ଗାନ୍ଧୀଜୀ, ଦେଶବନ୍ଧୁ ଚିତ୍ତରଞ୍ଜନ, ଶହୀଦ୍ ଖୁଦୀରାମ, ବାଘା ଯତୀନ, ଭଗତ ସିଂହ ଓ ଉଦ୍ଧାମ ସିଂହ ପ୍ରମୁଖ । ପ୍ରଥମେ ଆଜାଦହିନ୍ଦ ଫୌଜ, ଝାନସୀ ରାଣୀ ବାହିନୀ ଓ ଅନ୍ୟ ବାହିନୀ ଦଳର ୫୦ ହଜାରରୁ ଉର୍ଦ୍ଧ୍ୱ ସୁଶିକ୍ଷିତ ସୈନ୍ୟବାହିନୀ ବନ୍ଦୁକ ଓ ତଲୱାର ଉତ୍ତୋଳନ କରି ନେତାଜୀଙ୍କୁ ଅଭିବାଦନ (ଗାର୍ଡ ଅଫ ଅନର୍) ଜଣାଇବା ପରେ ସେମାନେ ତାଳେ ତାଳେ ବାଜା ସହ ଚିତ୍ତାକର୍ଷକ କୁଚ-କୱାଜ୍ (ମାର୍ଚ୍ଚପାଷ୍ଟ) କରିଥିଲେ । ନେତାଜୀ ସିପାହୀ ସାଲ୍ୟୁଟ ରୂପେ ବା ସଦ୍ୟୋଚିତ ସେନାପତି ଭାବେ ମଞ୍ଚ ଉପରେ ଦଣ୍ଡାୟମାନହୋଇ ଅଭିବାଦନ ଗ୍ରହଣ କରିଥିଲେ । କହିବା ବାହୁଲ୍ୟ, ମାର୍ଚ୍ଚପାଷ୍ଟ ପାଖେ ଏକଘଣ୍ଟା ଧରି ଚାଲିଥିଲା । କିନ୍ତୁ ନେତାଜୀ ମଧ୍ୟ ହାତ ନ'ପକାଇ ସେତିକ ସମୟ ପର୍ଯ୍ୟନ୍ତ ସାବଧାନଭାବେ ଦଣ୍ଡାୟମାନ ରହିଥିଲେ । ମଞ୍ଚରେ ଉପସ୍ଥିତ ଥିବା ସମସ୍ତ ନେତାଜୀଙ୍କୁ ଅନୁସରଣ କରିଥିଲେ ।

ଏହାର କିଛି ସମୟ ପରେ, ସେହି ୧୯୪୩ ସୁବର୍ଣ୍ଣ ଅବସରର ଶୁଭମୁହୂର୍ତ୍ତ ପୂର୍ବାହ୍ନ ଦଶଟା ୩୫ ମିନିଟ ସମୟରେ ଉପସ୍ଥିତ ଜନତା, ଜାତୀୟବାହିନୀ ତଥା ବୈଦେଶିକ ନେତୃବୃନ୍ଦଙ୍କୁ ସମ୍ବୋଧନ କରି ନେତାଜୀ କହିଲେ "—ବନ୍ଧୁଗଣ ! ଭାରତର ସ୍ୱାଧୀନତା ଯୁଦ୍ଧ ପାଇଁ ଆଜି ଏକ "ଅସ୍ଥାୟୀ ସ୍ୱାଧୀନ ଭାରତ ସରକାର" ପ୍ରତିଷ୍ଠାର ସିଦ୍ଧାନ୍ତ ମୁଁ ଆପଣମାନଙ୍କ ସମ୍ମୁଖରେ ସଗୌରବେ ଘୋଷଣା କରୁଅଛି ।" ଏତିକବେଳେ ଉଚ୍ଛ୍ୱସିତ ଜନତା କଣ୍ଠରୁ—ନେତାଜୀ ଜିନ୍ଦାବାଦ ! ଆଜାଦହିନ୍ଦ ଜିନ୍ଦାବାଦ । ତାଳି ଧ୍ୱନୀ ନାଦରେ ଆକାଶ ବତାସ ପ୍ରକମ୍ପିତ ହୋଇ ଉଠିଲା ।

## ମନ୍ତ୍ରୀମଣ୍ଡଳ ଗଠନ

ଅସ୍ଥାୟୀ ଆଜାଦହିନ୍ଦ ସରକାର ମନ୍ତ୍ରୀମଣ୍ଡଳ ନିମ୍ନ ରୂପେ ଗଢ଼ା ଯାଇଥିଲା ଯଥା—

୧ । ସୁଭାଷ ଚନ୍ଦ୍ର ବୋଷ (ରାଷ୍ଟ୍ରନାୟକ, ପ୍ରଧାନ ମନ୍ତ୍ରୀ, ଯୁଦ୍ଧ ଓ ବୈଦେଶିକ ବିଭାଗ ମନ୍ତ୍ରୀ)

୨ । କର୍ଣ୍ଣେଲ ଲକ୍ଷ୍ମୀ ସ୍ୱାମୀନାଥନ୍ — ନାରୀ ସଂଗଠନ ।
୩ । ଏସ୍. ଏ. ଆୟାର୍ (ପ୍ରଚାର ବିଭାଗ ମନ୍ତ୍ରୀ)
୪ । ମେଜର୍ ଜେନେରାଲ — ଏ. ସି. ଚାଟାର୍ଜୀ (ଅର୍ଥ ବିଭାଗ ମନ୍ତ୍ରୀ)

ସୈନ୍ୟବାହିନୀର ପ୍ରତିନିଧି

୫ । ମେଜର୍ ଜେନେରାଲ — ଜେ. କେ. ଭୋଁସ୍ଲେ
୬ । ମେଜର୍ ଜେନେରାଲ — ଶାହ ନୱାଜ ଖାଁ
୭ । ଲେଫ୍ଟନାଣ୍ଟ କର୍ଣ୍ଣେଲ — ଅଜିଜ ଅହମ୍ମଦ
୮ । ,, ,, — ଏନ. ଏସ ଭଗତ୍
୯ । ,, ,, — ଗୁଲଜାର ସିଂ
୧୦ । ,, ,, — ଏମ. ଜେଡ୍. କିୟାନୀ
୧୧ । ,, ,, — ଏ. ଡି. ଲୋକନାଥନ୍
୧୨ । ,, ,, — ଏ. ଡି. ରାଓ
୧୩ । ,, ,, — ଅହସାନ କାଦିର୍
୧୪ । ,, ,, — ଭୁଜଙ୍ଗମୋହନ ଭଟ୍ଟାଚାର୍ଯ୍ୟ — ଶ୍ରମ ମନ୍ତ୍ରୀ
୧୫ । ଏ. ଏମ. ସହାୟ, (ମନ୍ତ୍ରୀପଦ ମର୍ଯ୍ୟାଦା ସମ୍ପନ୍ନ ସେକ୍ରେଟାରୀ)
୧୬ । ରାସବିହାରୀ ବୋଷ, (ପ୍ରଧାନ ପରାମର୍ଶଦାତା)

ପରାମର୍ଶଦାତା ଗଣ

୧୭ । କରିମ୍ ଗଣି
୧୮ । ଦେବନାଥ ଦାସ
୧୯ । ଡି. ଏମ. ଖାଁ
୨୦ । ଡି. ୟେଲପା
୨୧ । ଆଇ. ଥିଭି
୨୨ । ସର୍ଦ୍ଦାର ଇଶର ସିଂ
୨୩ । ଏ. ଏନ୍. ସରକାର, (ଆଇନ ପରାମର୍ଶ ଦାତା)

## ପ୍ରଧାନ ମନ୍ତ୍ରୀ ଓ ମନ୍ତ୍ରୀ ମଣ୍ଡଳରେ ଶପଥ ଗ୍ରହଣ

ମନ୍ତ୍ରୀ ମଣ୍ଡଳର ସଭ୍ୟମାନଙ୍କ ନାମ ଘୋଷଣା କରିବା ପରେ, ନେତାଜୀ ପ୍ରଥମେ ଶପଥ ଗ୍ରହଣ କଲେ "— ଭଗବାନଙ୍କ ନାମରେ ମୁଁ ଏହି ପବିତ୍ର ଶପଥ ଗ୍ରହଣ କରୁଛି ଯେ, ହିନ୍ଦୁସ୍ଥାନ ଏବଂ ମୋର ୩୮ କୋଟି ଦେଶବାସୀଙ୍କୁ ମୁକ୍ତ କରିବା ନିମନ୍ତେ ମୁଁ ସୁଭାଷ ଚନ୍ଦ୍ର ବୋଷ ମୋ ଜୀବନରେ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଏହି ପବିତ୍ର

ସ୍ୱାଧୀନତା ଯୁଦ୍ଧ ଚଳାଇ ଯିବ ।" ଶପଥ ପାଠ କରୁ କରୁ ନେତାଜୀଙ୍କ କଣ୍ଠରୁଦ୍ଧ ହୋଇ ଆସିଲା ଏବଂ ତାଙ୍କ ଆଖିରୁ ଝର ଝର ହୋଇ ଲୁହ ଗଡ଼ି ପଡ଼ିଲା । ଉପସ୍ଥିତ ବିରାଟ ଜନତା ଏ ମହନୀୟ ଦୃଶ୍ୟ ଦେଖି ଅଭିଭୂତ ହୋଇ ପଡିଲେ ଏବଂ ସମସ୍ତଙ୍କ ଆଖି ଛଳ ଛଳ ହୋଇ ଉଠିଲା । ହଠାତ୍ ନେତାଜୀଙ୍କ ବଜ୍ର ଗମ୍ଭୀର କଣ୍ଠଧ୍ୱନି ପୁଣି ଶୁଣାଗଲା "—ମୁଁ ଆବାଲ୍ୟରୁ ଦେଶସେବା କରି ଆସିଛି, ଏବେ ମଧ୍ୟ ମୋ ଦେଶର ୩୮ କୋଟି ଭ୍ରାତା ଭଗ୍ନୀଙ୍କ ସୁଖ-ସୁବିଧା ପ୍ରତି ଦୃଷ୍ଟି ଦେବା ହେବ ମୋ ଜୀବନର ପ୍ରଧାନ କର୍ତ୍ତବ୍ୟ । ହିନ୍ଦୁସ୍ଥାନ ସ୍ୱାଧୀନତା ଲାଭ ପରେ ମଧ୍ୟ ତାକୁ ଅକ୍ଷୁର୍ଣ୍ଣ ରଖିବା ପାଇଁ ମୁଁ ମୋର ଶେଷ ରକ୍ତବିନ୍ଦୁ ଦାନ କରିବା ନିମିତ୍ତ ପ୍ରତିଜ୍ଞା ବଦ୍ଧ ରହିବି ।

ଏହାପରେ ଅର୍ଜୀ ହୁକୁମତ୍-ଇ-ଆଜାଦ ହିନ୍ଦ" ବା ସ୍ୱାଧୀନ ଭାରତ ସରକାର 'ସମସ୍ତ ମନ୍ତ୍ରୀ ତଥା ସେନାପତି ବୃନ୍ଦ ଜଣେ ଜଣେ ଯାଇ ନେତାଜୀଙ୍କ ନିକଟରେ ଶପଥ ଗ୍ରହଣ କଲେ । ଅସ୍ଥାୟୀ ଆଜାଦହିନ୍ଦ ସରକାର' ଗଠନ ହେବ ସିଙ୍ଗାପୁରରେ ଯେଉଁ ବିପୁଳ ସମାବେଶ ହୋଇଥିଲା, ତାହା ଅବର୍ଣ୍ଣନୀୟ । ସେଦିନ ବିରାଟ ଜନତାକୁ ଉଦ୍‌ବୋଧନ ଦେଇ ନେତାଜୀ କହିଥିଲେ "—ବନ୍ଧୁ ଗଣ । ମୁଁ ଜଣେ ନିଃସ୍ୱ ଫକୀର ! କ୍ଷୁଧା, ତୃଷା ଅସୁବିଧା ଏବଂ ଭୀଷଣ ଯୁଦ୍ଧ ମୁହଁକୁ ଠେଲିଦେବା ଛଡ଼ା ଆପଣମାନଙ୍କୁ ମୋର ଦେବୁ ଆଉ କିଛି ନାହିଁ । ଆମର ଜାତୀୟ ପତାକା ଅଦୂର ଭବିଷ୍ୟତରେ ଦିଲ୍ଲୀର ଲାଲକିଲ୍ଲା ଉପରେ ଉଡ଼ିବ । ସେହି ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପୂର୍ବରୁ ଆପଣମାନଙ୍କୁ ସର୍ବସ୍ୱ ତ୍ୟାଗ କରିବାକୁ ପଡ଼ିବ । ସୁତରାଂ ପଥ ଯେ ଜଟିଳ ଏବଂ ବିପଦସଂକୁଳ ଏଥିରେ କୌଣସି ସନ୍ଦେହ ନାହିଁ । ମୋ ସହିତ ଯୋଗଦେବା ନିମନ୍ତେ ମୁଁ କାହାକୁ ବାଧ୍ୟ କରୁନାହିଁ । କିନ୍ତୁ ସ୍ୱଦେଶ ପ୍ରେମୀକ ଭାରତୀୟ ମାତ୍ର ନିଜ ନିଜର କର୍ତ୍ତବ୍ୟ ହୃଦୟଙ୍ଗମ କରି ପାରୁଥିବେ । ଯେଉଁମାନଙ୍କର ସାହାସ ନାହିଁ ଏବଂ ଯେଉଁମାନେ ଚରମ କଷ୍ଟ ସହ୍ୟ କରି ପାରିବେ ନାହିଁ, ସେମାନେ ଆଜାଦ ହିନ୍ଦ ଫୌଜ ଛାଡ଼ି ଚାଲିଯାଇ ପାରନ୍ତି । ମୁଁ ସେମାନଙ୍କୁ ସମ୍ପୂର୍ଣ୍ଣ ଭରସା ଦେଉଛି ଯେ, ସେମାନଙ୍କ ବିରୁଦ୍ଧରେ କୌଣସି ସମାଲୋଚନା ହେବନାହିଁ କାରଣ, ମୁଁ ଚାହେଁ ଏଭଳି ଦଳେ ପରୀକ୍ଷିତ ନରନାରୀ ଯେଉଁମାନଙ୍କ ଦ୍ୱାରହିଁ କେବଳ ଇତିହାସ ସୃଷ୍ଟି ହୋଇପାରିବ । ନେତାଜୀଙ୍କର ଏହି ଭାଷଣ ସେଦିନ ଉପସ୍ଥିତ ଜନତା ମଧ୍ୟରେ ଏଭଳି ପ୍ରଭାବ ବିସ୍ତାର କରିଥିଲେ ଯେ, ଜାପାନ ହାତରେ ବନ୍ଦୀଥିବା ବହୁ ବ୍ରିଟିଶ ଭାରତୀୟ ସୈନିକ, ଯେଉଁମାନେ ଆଗରୁ ଆଜାଦ ହିନ୍ଦ ଫୌଜରେ ଯୋଗଦେବାକୁ ଅମଙ୍ଗ ହେଉଥିଲେ, ସେମାନେ ବନ୍ଦୀତା ମଞ୍ଚ ନିକଟକୁ ଦୌଡିଆସି ଆଜାଦ ହିନ୍ଦ ଫୌଜରେ ନାମ ଲେଖାଇବାପାଇଁ ନେତାଜୀଙ୍କୁ ନିବେଦନ କରିଥିଲେ । ନେତାଜୀଙ୍କର ଜ୍ୱାଳାମୟୀ ଭାଷଣ ସେମାନଙ୍କ ଆଖି ଆଗରେ ଦେଶପ୍ରେମ ତଥା ଆତ୍ମତ୍ୟାଗ ପାଇଁ ଏକ ନୂଆପଥ ଖୋଲି ଦେଇଥିଲେ ।

## ଅସ୍ଥାୟୀ ଆଜାଦ ହିନ୍ଦ ସରକାର ଘୋଷଣା ପତ୍ର

ଏହି ଅସ୍ଥାୟୀ ଆଜାଦ ହିନ୍ଦ ସରକାର ସ୍ୱାଧୀନତାର ଶେଷ ସଂଗ୍ରାମ ପରିଚାଳନା କରିବ । ଭାରତ ଭୂମିରୁ ବ୍ରିଟିଶ ଏବଂ ତାର ମିତ୍ର ଶକ୍ତିମାନଙ୍କୁ ବିତାଡିତ କଲାପରେ ସ୍ୱାଧୀନ ଭାରତ ଅଧିବାସୀଙ୍କର ମତାନୁସାରେ ସେମାନଙ୍କର ବିଶ୍ୱାସ ଭାଜନ ଗୋଟିଏ ସ୍ଥାୟୀ ଜାତୀୟ ସରକାର ଗଠନ କରିବାକୁ ସୁଯୋଗ ଦେବ । ଯେତେଦିନ ପର୍ଯ୍ୟନ୍ତ ସ୍ଥାୟୀ ଜାତୀୟ ସରକାର ଭାରତରେ ଗଠିତ ନ ହୋଇଛି ସେ ପର୍ଯ୍ୟନ୍ତ ଏହି ସରକାରହିଁ ଭାରତୀୟମାନଙ୍କର ବିଶ୍ୱାସ ଭାଜନ ହୋଇ ଦେଶ ଶାସନ କରିବ ।

ଭଗବାନଙ୍କ ନାମରେ ଅତୀତ କାଳରେ ଯେଉଁମାନେ ଭାରତୀୟମାନଙ୍କୁ ସୁସଂବଦ୍ଧ କରି ଯାଇଛନ୍ତି । ସେମାନଙ୍କ ନାମରେ ଏବଂ ଯେଉଁ ସବୁ ପରଲୋକଗତ ବୀରପୁରୁଷଗଣ ଆମ୍ଭ ମାନଙ୍କ ଆଗରେ ବୀରତ୍ୱ ଓ ଆତ୍ମତ୍ୟାଗର ଆଦର୍ଶ ଦେଖାଇ ଦେଇ ଯାଇଛନ୍ତି ସେମାନଙ୍କ ନାମରେ ଆମ୍ଭେମାନେ ଭାରତୀୟ ଜନସାଧାରଣଙ୍କୁ ଆମ୍ଭମାନଙ୍କର ପତାକାତଳେ ସମବେତ ହେବାପାଇଁ ଏବଂ ଭାରତର ସ୍ୱାଧୀନତା ନିମନ୍ତେ ଅସ୍ତ୍ର ଧାରଣ କରିବାପାଇଁ ଆହ୍ୱାନ କରୁଅଛୁ । ଯେତେଦିନ ପର୍ଯ୍ୟନ୍ତ ଶତ୍ରୁ ଭାରତ ଭୂମିରୁ ଅପସାରିତ ନହୋଇଛନ୍ତି, ଯେତେଦିନ ପର୍ଯ୍ୟନ୍ତ ଭାରତବାସୀ ସ୍ୱାଧୀନତା ଫେରିପାଇ ନାହାନ୍ତି ସେତେଦିନ ପର୍ଯ୍ୟନ୍ତ ଏହି ସରକାର ସାହସ ଅଧ୍ୟବସାୟ ଏବଂ ଚରମ ବିଜୟ ଉପରେ ଆସ୍ଥାରଖି ସଂଗ୍ରାମ ଚଳାଇଯିବ ।

ଏହି ସରକାର ପ୍ରତ୍ୟେକ ଭାରତ ବାସୀର ଆନୁଗତ୍ୟ ଦାବୀକରେ ଏବଂ ଆନୁଗତ୍ୟ ଲାଭ କରିବାର ଯୋଗ୍ୟ ମଧ୍ୟ । ଏହି ସରକାର ଧର୍ମଗତ ସ୍ୱାଧୀନତା ଏବଂ ସମଗ୍ର ଅଧିବାସୀବର୍ଗଙ୍କ ପାଇଁ ସମାନ ଅଧିକାର ଓ ସମାନ ସୁଯୋଗ ସୁବିଧା କରିବାକୁ ପ୍ରତିଶ୍ରୁତି ଦେଉଅଛୁ । ଏହି ସରକାର ଘୋଷଣା କରୁଛି ଯେ, ଦେଶର ସମସ୍ତ ସନ୍ତାନମାନଙ୍କୁ ସମାନ ଭାବରେ ପୋଷଣ କରି ବିଦେଶ ସରକାର ସୃଷ୍ଟ ସମସ୍ତ ପ୍ରକାର ବିଭେଦକୁ ଅତିକ୍ରମ କରି ଏହା ସମଗ୍ର ଦେଶ ଏବଂ ସମସ୍ତ ଅଂଶର ସୁଖ ସମୃଦ୍ଧି ବିଧାନ ଦିଗରେ ଅଗ୍ରସର ହେବାକୁ ଦୃଢ଼ପଣକରେ । ଦେଶର କୃଷି, ଶିଳ୍ପ, ତଥା ଶିକ୍ଷାକୁ ଅଗ୍ରାଧିକାର ଦେବା ସଙ୍ଗେ ସଙ୍ଗେ ଦେଶର ଅଗ୍ରଗତିକୁ ତ୍ୱରାନ୍ୱିତ କରିବା ପାଇଁ ବିଭିନ୍ନ ଯୋଜନା ମାଧ୍ୟମରେ ଲୋକ ଶକ୍ତିକୁ ନିୟୋଜିତ କରି, କଠୋର ଅଧ୍ୟବସାୟ ଓ ପରିଶ୍ରମଦ୍ୱାରା ଭାରତ ବର୍ଷକୁ ସବୁ ଦିଗରୁ ଗୋଟିଏ ସୁଖୀ ଓ ସମୃଦ୍ଧିଶାଳୀ ରାଷ୍ଟ୍ର ଗଠନ କରିବା ପାଇଁ ଏହି ସରକାର ଦୃଢ଼ ସଂକଳ୍ପ ବଦ୍ଧ ରହିବ ।

## ଯୁଦ୍ଧ ଘୋଷଣା

'ଆଜାଦହିନ୍ଦ ସରକାର' ପ୍ରତିଷ୍ଠା କଥା ଘୋଷିତ ହେବାପରେ, ୧୯୪୩ ଅକ୍ଟୋବର ୨୩ ତାରିଖ ରାତି ୧୨ଟା ୫ ମିନଟ ବେଳେ 'ଆଜାଦହିନ୍ଦ ସରକାର'ଙ୍କ ପକ୍ଷରୁ ଇଂଲଣ୍ଡ ଓ ଆମେରିକା ବିରୁଦ୍ଧରେ ଆନୁଷ୍ଠାନିକଭାବେ ଯୁଦ୍ଧ ଘୋଷଣା କରାଯାଇଥିଲା । ଅକ୍ଟୋବର ୨୪ ତାରିଖ ଦିନ ପୁଣି ସିଙ୍ଗାପୁର ମଇଦାନରେ ବିରାଟ ଜନସଭାରେ ନେତାଜୀ ଏହି ଯୁଦ୍ଧ ଘୋଷଣା କଥା ପ୍ରକାଶ କରିଥିଲେ । ଏହା ଶୁଣିବା ପରେ, ଜନ ସାଧାରଣଙ୍କ ମଧ୍ୟରେ ଅପୂର୍ବ ଉତ୍ସାହ ଖେଳିଗଲା, 'ଇନ୍‌କିଲାବ୍-ଜିନ୍ଦାବାଦ', 'ନେତାଜୀ-ଜିନ୍ଦାବାଦ', 'ଆଜାଦହିନ୍ଦ ଜିନ୍ଦାବାଦ', 'ଚଲୋ ଦିଲ୍ଲୀ' ଆଦି ଧ୍ୱନିରେ ଗଗନ-ପବନ ମୁଖରିତ ହୋଇ ଉଠିଲା ।

### ଆଜାଦ ହିନ୍ଦ ବେତାର କେନ୍ଦ୍ରରେ ମହାତ୍ମା ଗାନ୍ଧୀଙ୍କ ନିକଟକୁ ବାର୍ତ୍ତା ପ୍ରେରଣ

ଏହାପରେ ନେତାଜୀ ଆଶୀର୍ବାଦ ଭିକ୍ଷାକରି ବେତାର ଯୋଗେ, ମହାତ୍ମା ଗାନ୍ଧିଜୀଙ୍କ ନିକଟକୁ ନିମ୍ନଲିଖିତ ବାଣୀ ପ୍ରେରଣ କରିଥିଲେ । "ହେ ମୋର ଜାତିର ଜନକ ହିନ୍ଦ୍ ସ୍ୱାଧୀନତାର ଧର୍ମ ଯୁଦ୍ଧରେ ଆମେ ଆଜି ଆପଣଙ୍କର ଆଶୀର୍ବାଦ ଓ ଶୁଭେଚ୍ଛା ଭିକ୍ଷା କରୁଁ ।"

### ଆଜାଦ ହିନ୍ଦ ସରକାରଙ୍କ ମୁଖ୍ୟ ବିଭାଗ ଓ ବିଦେଶୀ ରାଷ୍ଟ୍ରର ମାନ୍ୟତା

ଯୁଦ୍ଧ ଘୋଷଣା ପରେ ଆଜାଦହିନ୍ଦ ସରକାରଙ୍କ କାର୍ଯ୍ୟ ଯେପରି ଦ୍ରୁତ ଗତିରେ ବଢ଼ିବାକୁଲାଗିଲା, କର୍ମକ୍ଷେତ୍ର ମଧ୍ୟ ସେହିପରି ବିସ୍ତୃତ ହେବାକୁ ଲାଗିଲା । ଆଜାଦହିନ୍ଦ୍ ସରକାରଙ୍କ ମୁଖ୍ୟ ବିଭାଗ ଏଗାର ଗୋଟି ଥିଲା ଯଥା- ୧ ସାମରିକ ପ୍ରଚାର ବିଭାଗ, ୨- ସିପାହୀ ବିଭାଗ, ୩- ସାମରିକ ଶିକ୍ଷା ବିଭାଗ ୪- ମହିଳା ବିଭାଗ ୫- ଶିକ୍ଷା ଓ ସାଂସ୍କୃତିକ ବିଭାଗ, ୬- ଅର୍ଥ ବିଭାଗ, ୭- ସ୍ୱାସ୍ଥ୍ୟ ବିଭାଗ, ୮-ପ୍ରଚାର ୯-ପୁନର୍ବାସ ବିଭାଗ, ୧୦-ସାମରିକ ମାଲ ସରବରାହ ବିଭାଗ, ୧୧-ବିଜିତ ପ୍ରଦେଶ ସଂଗଠନ ଓ ଶାସନ ବିଭାଗ, ପ୍ରଭୃତି ପ୍ରଧାନ ।

ଏହି ସରକାରଙ୍କ ଜାପାନ, ଜର୍ମାନୀ, ଇଟାଲୀ, କ୍ରୋସିଆ, ଚୀନ୍, ଆୟର୍ଲ୍ୟାଣ୍ଡ ମାନ୍‌କୁଙ୍କ ଓ ମାଞ୍ଚୁକୋ, କୋରିଆ, ଫିଲିପାଇନ୍, ଇଣ୍ଡୋନେସିଆ, ଇଣ୍ଡୋଚୀନ, ମାଲୟ, ଶ୍ୟାମ ଓ ବ୍ରହ୍ମଦେଶ ପ୍ରଭୃତି ପୂର୍ବେସ୍ ତଥା ଏସିଆର ୧୪ ଟି ରାଷ୍ଟ୍ର ସରକାରୀ ଭାବେ ମାନ୍ୟତା ଦେଇ ସ୍ୱୀକାର କରିଥିଲେ । ଏହି ସରକାରଙ୍କ ଏକାଧିକ ଖାସ ବେତାର କେନ୍ଦ୍ର ଥିଲା—ନିଜର ଦୈନିକ, ସାପ୍ତାହିକ ଓ ମାସିକ ବହୁ ପତ୍ରପତ୍ରିକା ମଧ୍ୟ ଥିଲା । ବେତାର କେନ୍ଦ୍ର ମାନଙ୍କରୁ ନେତାଜୀ ଓ ଅନ୍ୟାନ୍ୟ ଭାରତୀୟ ବିପ୍ଳବୀ ନେତାମାନେ ବହୁବାର ଭାଷଣ ମଧ୍ୟରେ ଘୋଷଣା କରୁଥିଲେ ।

ସରକାରଙ୍କ ସ୍ୱତନ୍ତ୍ର ଭାଷା ଥିଲା—ହିନ୍ଦୁସ୍ତାନୀ ତାଙ୍କର ଅଭିବାଦନ ଥିଲା '—ଜୟହିନ୍ଦ । ତାଙ୍କର ପତାକା ଥିଲା ତ୍ରିରଙ୍ଗା ପତାକା । ତାଙ୍କର ସଙ୍ଗୀତ ବା କୌମୀତରାନା—'ଶୁଭସୁଖ ଚୈନକୀ ବରଖା ବରସେ, ଭାରତ ଭାଗ୍ୟ ହୈ ଜାଗା' । ତାଙ୍କର ଚିହ୍ନ ଥିଲା ବ୍ୟାଘ୍ର । ଜାତୀୟନାରା ଥିଲା—'ଚଲୋ ଦିଲ୍ଲୀ' । ମୋଟା ମୋଟିଭାବେ ଆଜାଦ ହିନ୍ଦ ସରକାରଙ୍କ ସକଳ କାର୍ଯ୍ୟରେ ଭାରତୀୟ ସଂସ୍କୃତି ଓ ଜାତୀୟତାର ସ୍ପଷ୍ଟରୂପେ ପ୍ରତିଫଳିତ ହେଉଥିଲା । ଏହି ସରକାରଙ୍କ ଶାସନ ଢାଞ୍ଚାରେ କୌଣସି ଅପୂର୍ଣ୍ଣତା ନଥିଲା । ତେବେ ନିଜର ଖାସ ଅଧିକାର ଭୁକ୍ତ କୌଣସି ଭୂଖଣ୍ଡ ନଥିବା ଯୋଗୁଁ ପ୍ରଥମେ କିଛିଟା ଅସୁବିଧା ହେଉଥିଲା । କିନ୍ତୁ ପୂର୍ବ ଏସିଆ ସମ୍ମିଳନୀ ପରେ ଅବଶ୍ୟ ସେହି ଅସୁବିଧା ଦୂର ହୋଇ ଯାଇଥିଲା ।

## ପୂର୍ବ ଏସିଆ ସମ୍ମିଳନୀ

୧୯୪୩ ନଭେମ୍ବର ୨୪ ଓ ୨୫ ତାରିଖରେ ଟୋକିଓରେ ଜାପାନର ତତ୍କାଳୀନ ପ୍ରଧାନ ମନ୍ତ୍ରୀ ଜେନେରାଲ୍ ହିଡ଼େକି ଟୋଜୋଙ୍କ ସଭାପତିତ୍ୱରେ ମୁକ୍ତ ଜାତି ମାନଙ୍କର ପ୍ରତିନିଧିଙ୍କୁ ନେଇ ବୃହତ୍ତର ପୂର୍ବ ଏସିଆ ସମ୍ମିଳନୀ ଅନୁଷ୍ଠିତ ହେଲା । ଏଥିରେ ନେତାଜୀ ଭାରତୀୟ ପ୍ରତିନିଧିଙ୍କର ନେତୃତ୍ୱନେଇ ଉପସ୍ଥିତ ହୋଇଥିଲେ । ଉକ୍ତ ସମ୍ମିଳନୀରେ ନେତାଜୀ ଦାବୀ କରିଥିଲେ ଯେ— "ପୂର୍ବ ଏସିଆରେ ଭାରତୀୟମାନଙ୍କର ପରିତ୍ୟକ୍ତ କଳ-କାରଖାନା ତଥା ଚଳ ଅଚଳ ସମସ୍ତ ପ୍ରକାର ସମ୍ପତ୍ତି, ଯାହା କି ଜାପାନ ସରକାର ଶତ୍ରୁ ସମ୍ପତ୍ତି ମନେକରି ଦଖଲ କରିଛନ୍ତି, ସେ ସବୁ ଆଜାଦହିନ୍ଦ ସରକାରଙ୍କୁ ଫେରାଇ ଦେବା ଉଚିତ ହେବ । କାରଣ ଆଜାଦହିନ୍ଦ ଫୌଜ ହିଁ ଭାରତର ପ୍ରକୃତ ପ୍ରତିନିଧି ମୂଳକ ଜାତୀୟ ବାହିନୀ । ଜାପାନ ସହିତ ଯଦି ଏହାର ସମ୍ପର୍କ ରହେ, ତାହେଲେ ଶତ୍ରୁ ପକ୍ଷ 'ତୋଷଣ ବାହିନୀ' ବୋଲି ଦୁର୍ନାମ ରଟନା କରିବା ସୁଯୋଗ ପାଇବେ । ଜାପାନୀମାନଙ୍କର ଭାରତ ଆକ୍ରମଣ କରିବା କୌଣସି ଅଧିକାର ରହିବ ନାହିଁ । କୌଣସି ପ୍ରକାର ବୈଦେଶିକ କର୍ତ୍ତୃତ୍ୱ ବା ବୈଦେଶିକ ସୈନ୍ୟଙ୍କୁ ଭାରତ ଭୂମିରେ ସ୍ୱୀକାର କରିବା ମତ ଆଜାଦହିନ୍ଦ ସରକାର ଗ୍ରହଣ କରିବ ନାହିଁ । ଜାପାନୀମାନେ ଭାରତକୁ ବ୍ରିଟିଶ କବଳରୁ ମୁକ୍ତକରି ସ୍ୱାଧୀନତା ଦେବାକୁ ଯାଉଛନ୍ତି ବୋଲି ଯଦି ଘୋଷଣା କରନ୍ତି, ତାହେଲେ 'ଆଜାଦହିନ୍ଦ ଫୌଜ' ସେମାନଙ୍କୁ ଅନ୍ୟାୟ ଆକ୍ରମଣକାରୀ ଦୃଷ୍ଟିରେ ହିଁ ଦେଖିବ । ଭାରତକୁ ବ୍ରିଟିଶ ପଞ୍ଜାରୁ ମୁକ୍ତ କରିବାକୁ ହେଲେ, ଏକମାତ୍ର ଭାରତର ସ୍ୱକୀୟ ବାହିନୀ ହିଁ ତାହା କରିପାରିବ । ଜାପାନୀ ସାମରିକ କୌଶଳ ଓ ଅସ୍ତ୍ର ଦ୍ୱାରା ଆଜାଦହିନ୍ଦ ଫୌଜ କସ୍ମିନ୍‌କାଳେ ପରିଚାଳିତ ହୋଇନପାରେ । କେବଳ ଜାପାନୀମାନେ ଭାରତର ମିତ୍ର ରୂପେ ସହାନୁଭୂତି ଦେଖାଇଲେ ଆମେ

ତାହା ଆନନ୍ଦର ସହିତ ଗ୍ରହଣ କରିବୁ । ବ୍ରିଟିଶ ଜାତି ନିଜର ସାମ୍ରାଜ୍ୟ ରକ୍ଷା କରିବାପାଇଁ ଯଦି ଆମେରିକାର ସାହାଯ୍ୟ ନେଉଛନ୍ତି, ସେହିପରି ଭାରତୀୟ ଦେଶପ୍ରେମୀମାନେ ନିଜ ଦେଶକୁ ଦାସତ୍ୱ ବନ୍ଧନରୁ ମୁକ୍ତକରିବା ସକାଶେ ନିଜର ମନୋନୀତ ମିତ୍ର ଦେଶମାନଙ୍କର ବିନା ସର୍ତ୍ତରେ ସାହାଯ୍ୟ ଗ୍ରହଣ କରିବା କୌଣସି ଦୋଷାବହ ନୁହେଁ ।”

ଏତିକବେଳେ ତତ୍କାଳୀନ ବର୍ମା ପ୍ରତିନିଧି ଦଳର ନେତା ଡ଼ା· ବାମୋ ଉଠି କହିଲେ— “ପୂର୍ବ ଏସିଆରୁ ବିଦେଶୀ ଶାସକମାନେ ବିତାଡ଼ିତ ହୋଇଛନ୍ତି । କେବଳ ଭାରତରୁ ସେମାନେ ବିତାଡ଼ିତ ହେଲେ ବୃହତ୍ତର ପୂର୍ବ ଏସିଆ ରାଷ୍ଟ୍ରପୁଞ୍ଜ ଏବଂ ସଙ୍ଘଭୁକ୍ତ ନିଜର ସ୍ୱାଧୀନତା ରକ୍ଷାକରି ଉନ୍ନତ ହୋଇପାରିବ । ଏ ମଧ୍ୟରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଏକ ‘ଅସ୍ଥାୟୀ ଭାରତ ସରକାର’ ଗଠନକରି ଇଂରେଜ ଓ ଆମେରିକା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିସାରିଛନ୍ତି । ଆମେ ସବୁ ମୁକ୍ତ ଜାତିପୁଞ୍ଜ ସର୍ବାନ୍ତଃକରଣ ନେତାଜୀଙ୍କର ଆଜାଦହିନ୍ଦ ସରକାରଙ୍କୁ ସାହାଯ୍ୟ ସହାନୁଭୂତି ଜଣାଇବା ସଙ୍ଗେ ସଙ୍ଗେ କାନ୍ଧକୁ କାନ୍ଧ ମିଶାଇ ତାଙ୍କ ସହିତ ସହଯୋଗ କରିବା ନିତାନ୍ତ ଆବଶ୍ୟକ ।”

ଏହାପରେ ସମ୍ମିଳନୀର ସଭାପତି ଜେନେରାଲ ଟୋଜୋ ଉଠି ଡ଼ା. ବାମୋଙ୍କ ଯୁକ୍ତିକୁ ସମର୍ଥନ ଜଣାଇ କହିଲେ ଯେ— “ଜାପାନ କାହାରି ଉପରେ ନିଜର କର୍ତ୍ତୃତ୍ୱ ଜାହିର କରିବାପାଇଁ ଚାହେଁନାହିଁ । ବୃହତ୍ତର ପୂର୍ବ ଏସିଆ ରାଷ୍ଟ୍ରପୁଞ୍ଜ ଭାଇ ଭାଇ ହୋଇ ରହିବା ଏବଂ କୌଣସି ବୈଦେଶିକ ଶକ୍ତି ଏଥିରେ ଅନ୍ୟକୁ ବାଧା ନଦେବା, ଜାପାନର ଏହା ହିଁ ଆନ୍ତରିକ ଇଚ୍ଛା । ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଯାହା ଦାବୀ କରୁଛନ୍ତି, ଆମେ ସେ ସବୁ ମାନିନେବାକୁ ଦୃଢ଼ ପ୍ରତିଜ୍ଞ । ଏହା ସଙ୍ଗେ ସଙ୍ଗେ ସେ କହିଲେ ଯେ— ଭୌଗଳିକ ଦୃଷ୍ଟିରୁ ଆଣ୍ଡାମାନ ଦ୍ୱୀପପୁଞ୍ଜ ଭାରତର । ଆମେ ତାକୁ ବ୍ରିଟିଶ କବଳରୁ ମୁକ୍ତ କରିଛୁ । ଆଜିଠାରୁ ତାହା ଆମେ ନେତାଜୀ ସୁଭାଷ ଚନ୍ଦ୍ରଙ୍କ ହାତରେ ଅର୍ପଣ କରୁଛୁ । ଏହାଛଡ଼ା ପୂର୍ବ ଏସିଆରେ ଦଖଲକରି ରଖିଥିବା ସମସ୍ତ ଭାରତୀୟ ସମ୍ପତ୍ତି, ଆଜାଦହିନ୍ଦ ସରକାରଙ୍କୁ ହସ୍ତାନ୍ତର କରିବାପାଇଁ ଜାପାନ ସରକାରଙ୍କ ପକ୍ଷରୁ ମୁଁ ଦୃଢ଼ଭାବେ ଘୋଷଣା କରୁଛି ।” ଏତିକବେଳେ ଘନ ଘନ କରତାଳି ଧ୍ୱନି ହର୍ଷ ଉଲ୍ଲାସରେ ସମ୍ମିଳନୀ କକ୍ଷ ପୂରିଉଠିଥିଲା । ଏହିପରି ଆନନ୍ଦ ଉତ୍ତେଜନା ମଧ୍ୟରେ ପୂର୍ବ ଏସିଆ ସମ୍ମିଳନୀ ସମାପନ ହୋଇଥିଲା । ତାପରେ ନେତାଜୀ ଟୋକିଓ ରାଜପ୍ରାସାଦକୁ ଯାଇ (ଐତିହାସିକ ମେଇଜୀ ଟୀନ) ବା ଜାପାନ ସମ୍ରାଟ ହିରୋହିତଙ୍କ ସହିତ ସାକ୍ଷାତ କରିଥିଲେ ।

ଟୋକିଓରୁ ଫେରିବା ରାସ୍ତାରେ ନେତାଜୀ ଫିଲିପାଇନ ଦ୍ୱୀପପୁଞ୍ଜ ପରିଦର୍ଶନ କରିଥିଲେ ଏବଂ ସେଠାରେ ସେ ବିପୁଳ ସମ୍ବର୍ଦ୍ଧିତ ହୋଇଥିଲେ ।

୧୯୪୩ ଡିସେମ୍ବର ୨୯ ଠାରୁ ୩୧ ତାରିଖ ପର୍ଯ୍ୟନ୍ତ ସେ ସଫଳଭାବେ ଆଣ୍ଡାମାନ ନିକୋବର ଦ୍ୱୀପପୁଞ୍ଜ ପରିଦର୍ଶନ କରିଥିଲେ । ଉକ୍ତ ଦ୍ୱୀପ ଦୁଇଟିର ନୂତନ ନାମକରଣ ଯଥାକ୍ରମେ 'ସ୍ୱରାଜ ଦ୍ୱୀପ' ଓ ଶହୀଦ ଦ୍ୱୀପପୁଞ୍ଜ ରଖି, ତାହା ଆଜାଦହିନ୍ଦ ସରକାରଙ୍କ ଅଧୀନକୁ ଆଣି, ସେଠାକାର ଶାସନ କର୍ତ୍ତାଭାବେ ଲେଫ୍ଟନାଣ୍ଟ କର୍ଣ୍ଣେଲ ଲୋକନାଥନଙ୍କୁ ନିଯୁକ୍ତ କରିଥିଲେ । ଆଣ୍ଡାମାନ ନିକୋବର ପ୍ରଥମ ସ୍ୱାଧୀନ ଭାରତର ଅଙ୍ଗ ବିଶେଷଭାବେ ଶୋଭା ପାଇଥିଲା । ସେଦିନ ଆଣ୍ଡାମାନ ଦ୍ୱୀପ ବକ୍ଷରେ ନେତାଜୀ ଗୋଟିଏ ନଡ଼ିଆ ଗଛ ମୂଳରେ ଠିଆ ହୋଇ ପ୍ରିୟ ଜନ୍ମସ୍ଥଳ ଭାରତର ବେଳାଭୂମି ଆଡ଼କୁ ଅନିମେଷ ନୟନରେ କିଛି ସମୟ ପାଇଁ ଅନାଇ ରହିଥିଲେ, କିନ୍ତୁ ତାଙ୍କର ଅଜ୍ଞାତ ସାରରେ କେତେବେଳୁ ଆଖିରୁ ଦୁଇଧାର ଲୁହ ଖସି ଆସିଥିଲା । ସାଥୀରେ ଥିବା ଅଫିସର ବୃନ୍ଦ ଏହି କରୁଣମୟ ଦୃଶ୍ୟ ଦେଖି ଅବାକ୍ ଓ ସ୍ତମ୍ଭିଭୂତ ହୋଇ ସେମାନଙ୍କର ମଧ୍ୟ ଆଖି ଛଳ ଛଳ ହୋଇଥିଲା । ନିଜର ମାତୃଭୂମି ପ୍ରତି ନେତାଜୀଙ୍କର ଯେଉଁ ଅସୀମ ମାୟା, ମମତା ଓ ସ୍ନେହଥିଲା, ତାହା ଅବର୍ଣ୍ଣନୀୟ ଓ ଅଚିନ୍ତନୀୟ । ପ୍ରକୃତରେ ଭାରତ ହେଉଛି ତାଙ୍କର ପ୍ରାଣଥିଲା ।

ସାମରିକ କାର୍ଯ୍ୟକଳାପର ସୁବିଧା ନିମନ୍ତେ ଏବଂ ଦୂରତ୍ୱ ଦୃଷ୍ଟିରୁ ୧୯୪୪ ଜାନୁୟାରୀ ପ୍ରଥମ ସପ୍ତାହରେ ଅସ୍ଥାୟୀ ଆଜାଦ୍‌ହିନ୍ଦ୍ ସରକାରର ସମସ୍ତ ଅଫିସ ତଥା କର୍ମକେନ୍ଦ୍ରକୁ ସିଙ୍ଗାପୁରରୁ ସ୍ଥାନାନ୍ତରିତ କରି ବର୍ମାର ରାଜଧାନୀ ରେଙ୍ଗୁନ ସହରକୁ ଅଣା ହୋଇଥିଲା ।

## ଯୁଦ୍ଧପାଇଁ ପ୍ରସ୍ତୁତ

ଆଜାଦହିନ୍ଦ ଫୌଜ ସମ୍ପୂର୍ଣ୍ଣଭାବେ ଯୁଦ୍ଧ ବିଦ୍ୟାରେ ତାଲିମପ୍ରାପ୍ତ ହୋଇ ଦକ୍ଷତା ହାସଲ କଲାପରେ, ନେତାଜୀ ବୁଝିଲେ ଯେ, ଏଣିକି ବ୍ରିଟିଶ ଓ ଆମେରିକା ସେନାବାହିନୀ ବିରୁଦ୍ଧରେ ପ୍ରଚଣ୍ଡ ଆକ୍ରମଣ ଚଳାଇବା ଠିକ୍ ହେବ । ବର୍ଷାଋତୁ ଶେଷରେ ଅନୁକୂଳ ବାତାବରଣ ଦେଖି ଆଜାଦ୍‌ହିନ୍ଦ୍ ସେନାବାହିନୀଙ୍କୁ ଗୋଟିଏ ଜାଗାରେ ଏକତ୍ରିତ ହେବା ପାଇଁ ଆୟୋଜନ କରାଗଲା । ସେହି ଅନୁସାରେ ୧୯୪୪ ଜାନୁଆରୀ ମଧ୍ୟଭାଗରେ ରେଙ୍ଗୁନ ସହରସ୍ଥ ଜୋତନ ସ୍କୁଲଠାରେ ୫୦ ହଜାରରୁ ଊର୍ଦ୍ଧ୍ୱ ଜାତୀୟ ବାହିନୀର ଜଓ୍ୱାନ ସମବେତ ହେଲେ । ଉକ୍ତ ବାହିନୀର ପାସିଂ ଆଉଟ ପରେଡ଼ରେ ନେତାଜୀ ଅଭିବାଦନ ଗ୍ରହଣ କରି

ଉଦ୍‌ବୋଧନ ଦେବାବେଳେ, ପୂର୍ବରୁ ଶତ୍ରୁପକ୍ଷ ଜାଣିପାରି ହଠାତ୍ ସେଦିନ ରେଙ୍ଗୁନ ସହରର ବିଭିନ୍ନ ଅଞ୍ଚଳରେ ବିକ୍ଷିପ୍ତଭାବେ ଉଡ଼ାଇ ଉଡ଼ାଇ ଆକାଶ ମାର୍ଗରୁ ବୋମାବର୍ଷଣ କରିଥିଲେ । କିନ୍ତୁ ନେତାଜୀ ଏଥିରେ ବିଚଳିତ ହେବା ପରିବର୍ତ୍ତେ ଦ୍ୱିଗୁଣ ଉତ୍ସାହିତ ହୋଇ ସୈନ୍ୟବାହିନୀକୁ ସମ୍ବୋଧନ କରି କହିଲେ— "ବନ୍ଧୁଗଣ ! ଆପଣମାନେ ବିବ୍ରତ ହୁଅନ୍ତୁ ନାହିଁ, ମୁଁ ବିଶ୍ୱାସ ଦେଉଛି, ଆଜି ପର୍ଯ୍ୟନ୍ତ ବ୍ରିଟିଶ ସରକାରର କୌଣସି କଳକାରଖାନାରେ ଏପରି ଅସ୍ତ୍ର ତିଆରି ନାହିଁ, ଯାହାକି ସୁଭାଷ ଚନ୍ଦ୍ର ବୋଷକୁ ମାରିପାରିବ ।" ଦୋସ୍ତୋ ! (ଆପ୍‌ଲୋକ୍ ମତ୍ ଘବରାୟେ, ମୈ ୟକୀନ୍ ଦିଲାତା ହୁଁ, ଅବତକ୍ ବର୍ତ୍ତାନିଆକା କିସି କଲ୍ କାରଖାନାମେଁ ଐସୀ ହତ୍ୟାର୍ ନହିଁ ନିକ୍‌ଲା, ଯୋକି ସୁଭାଷ ଚନ୍ଦ୍ର ବୋଷ କୋ ମାର୍ ସକେଁ ।) ଏତିକିବେଳେ ହର୍ଷ ଉଲ୍ଲାସରେ ଜାଗ୍ରତ ବାହିନୀର ଜୟନାଦ ସତେଜରେ ଗର୍ଜି ଉଠିଲା ଇନ୍-କିଲାବ୍ ଜିନ୍ଦାବାଦ, ନେତାଜୀ ଜିନ୍ଦାବାଦ, 'ଚଲୋ ଦିଲ୍ଲୀ' ।

ଏହାପରେ ନେତାଜୀ କହିଲେ— "ବନ୍ଧୁଗଣ ! ବର୍ତ୍ତମାନ ଅଗ୍ନିପରୀକ୍ଷାର ବେଳ ଉପସ୍ଥିତ, ବନ୍ଦିନୀ ଭାରତ ମାତାର ମୁକ୍ତିପାଇଁ ତା'ର ଚରଣ କମଳ ତଳେ ଆମେ ସବୁ ନିଜକୁ ବଳି ଦେବାକୁ ହେବ । ସ୍ୱାଧୀନତାର ମୂଲ୍ୟ ହେବ ରକ୍ତ ! (ଆଜାଦୀକା କୀମତ୍ ହୈ ଖୁନ୍) ଦିଲ୍ଲୀର ପଥ ହେବ ଆମପାଇଁ ସ୍ୱର୍ଗର ପଥ । ସମସ୍ତ ବାଧାବିଘ୍ନ ଅତିକ୍ରମକରି ଆଗେଇଯିବା ଆମେ ଦିଲ୍ଲୀର ପଥରେ । ଏଥିରେ ଭଗବାନ ଆମର ପୂର୍ଣ୍ଣ ସହାୟକ ହେବେ ।

### ଯୁଦ୍ଧକ୍ଷେତ୍ରକୁ ପ୍ରଥମ ଦଳ ଯିବାବେଳେ ନେତାଜୀଙ୍କର ଉଦ୍‌ବୋଧନ

ବନ୍ଧୁଗଣ ! ଦୂରେ ବହୁଦୂରେ— ଏହି ଦେଖ, ସେହି ଶ୍ୟାମଳ ସୁନ୍ଦର ଶସ୍ୟ ରାଶିର ଅନ୍ତରାଳରେ, ସେହି କଳ କଲ୍ଲୋଳ ସ୍ରୋତସ୍ୱିନୀର ପରପାରେ, ସେହି ନୀରବ ଇତସ୍ତତଃ ଅରଣ୍ୟର ଅନ୍ୟ ପଟରେ, ସେହି ଧୂମିଳ ପର୍ବତମାଳାର ସାନୁଦେଶ ଅତିକ୍ରମ କରି ଆମ୍ଭମାନଙ୍କର ମାତୃଭୂମି ବିଦ୍ୟମାନ, ଯାହାର ସ୍ନେହାଙ୍କିତ ଅଙ୍କରେ ଆଶ୍ରୟ ପାଇବାକୁ ଲାଳାୟିତ ହୋଇ ସ୍ୱର୍ଗର ଦେବତା ମଧ୍ୟ ଦିନେ ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୋଇଥିଲେ । ସେହି ଆମର ଜନ୍ମଭୂମି— "ତାହାରି ପାଦ ପ୍ରାନ୍ତରେ ଆମ୍ଭମାନଙ୍କର ଜନ୍ମ ।" ତାହାରି ରକ୍ତରେ ଆମ୍ଭମାନଙ୍କର ଏହି ସୁଗଠିତ ଶରୀର ନିର୍ମିତ ହୋଇଛି । ଆଜି ଆମେ ମାତୃଭୂମିଠାରୁ ଦୂରରେ । ନୀଡ଼ହୀନ ପକ୍ଷୀପରି ଆମ୍ଭେମାନେ ଆଜି ଅନନ୍ତ ପଥରେ ଘୂରି ବୁଲୁଛୁ ।

ଆଜି ଆମ୍ଭମାନଙ୍କୁ ଆମର ସେହି ମାତୃଭୂମି କୋଳକୁ ପୁନରାୟ ଫେରିଯିବାକୁ ହେବ । ଶୁଣ ବନ୍ଧୁଗଣ ! ପବନର ହିଲ୍ଲୋଳରେ ଏ କି ଶବ୍ଦ ? ଏ କି ଆକୁଳ

ଆହ୍ୱାନ ଶୁଣି ଆସୁଅଛି, ସେହି, ଆମର ଜନନୀର ଡାକ ! ଆମର ମା' ଆଜ ଡାକ ଦେଉଛି । ଆମର ରାଜଧାନୀ ଦିଲ୍ଲୀ ଆଜ ଆମର ସ୍ୱାଗତ କରିବାପାଇଁ ସିଂହଦ୍ୱାର ଉନ୍ମୁକ୍ତ କରି ରଖିଛି । ଶୁଣ ! ଦେଶର ପ୍ରତି କୋଣରୁ ସିନ୍ଧୁ, ଗଙ୍ଗା ଏବଂ ରେବାର ତଟଭୂମିରୁ ୩୮ କୋଟି ଦେଶବାସୀ ଏକ ସ୍ୱରରେ ଆହ୍ୱାନ କରୁଛନ୍ତି । ୩୮ କୋଟି ହୃଦୟ ଆମ୍ଭମାନଙ୍କ ସ୍ୱାଗତପାଇଁ ନାଚି ଉଠୁଛି । ୭୬ କୋଟି ସୁଦୃଢ଼ ବାହୁ ଆମ୍ଭ-ମାନଙ୍କର ଆଲିଙ୍ଗନପାଇଁ ଉନ୍ମୁକ୍ତ । ଆଜ ଅପେକ୍ଷା କରିବାର ନୁହେ । ରକ୍ତ ରକ୍ତକୁ ଆହ୍ୱାନ କରୁଛି, ମାତା ଆଜ ତା'ର ନିର୍ବାସିତ ସନ୍ତାନକୁ ଡାକ ଦେଉଛି ।

ଆଜ ସମୟ ଟାଳିବାର ନୁହେ । ଆମ୍ଭମାନଙ୍କର ଅସ୍ତ୍ର ଆଜ କୋଷବଦ୍ଧ ହୋଇନ'ପାରେ । ଅସ୍ତ୍ର ଧର" ! ଦେଖ ସମ୍ମୁଖରେ ପ୍ରସ୍ତର ନିର୍ମିତ ପର୍ବତମାଳା ଅନ୍ତର ମଧ୍ୟରେ ସେହି ପଥ!!! ଆମ୍ଭ ମାନଙ୍କର ଜନ୍ମ ଭୂମି ଠାରୁ ବିଚ୍ଛିନ୍ନ କରି ରଖିଛି । ଅଗ୍ରସର ହୁଅ । ଏହି ବିଚ୍ଛିନ୍ନକାରୀ ପଥକୁ ଛିନ୍ନ ଭିନ୍ନ କର, ଏହି ପର୍ବତ ଓ ଘାଟି ମାଳାକୁ ଉଲ୍ଲଙ୍ଘନ କର, ସେହି ସୁଦୂର କ୍ଷିତିଜ କ୍ଷେତ୍ରରେ ପ୍ରବେଶ କର; ସେହି ଧୂମାବୃତ ମେଘ—ମେଦୁର ରାଜ୍ୟକୁ ଆମର ସ୍ୱାଧୀନତା ଛଡ଼ାଇ ନେବାକୁ ପଡ଼ିବ । ଈଶ୍ୱର ଆପଣମାନଙ୍କୁ ସାହାଯ୍ୟ କରିବେ । ଈଶ୍ୱର ସେହିମାନଙ୍କୁହିଁ ସାହାଯ୍ୟ କରନ୍ତି, ଯାହାର ମାଂସ ଖଣ୍ଡରୁ ବାତ୍ୟାର ଜନ୍ମ ହୋଇ ପାରେ, ଯାହାର ପେଶୀ ମଧ୍ୟରୁ ଭୂମିକମ୍ପ ବିସ୍ଫୋରଣ ହୋଇପାରେ, ଈଶ୍ୱର କେବଳ ସେହିମାନଙ୍କୁ ସାହାଯ୍ୟ କରନ୍ତି ।

ଶତ୍ରୁର ସଜ୍ଜିତ ଶ୍ରେଣୀକୁ ବିଦୀର୍ଣ୍ଣ କରି ଆପଣମାନଙ୍କୁ ନିଜ ଦେଶରେ ପହଞ୍ଚିବାକୁ ହେବ । ସମ୍ମୁଖରେ ପଥ ! ସେହି ପଥ ଆମ୍ଭମାନଙ୍କର, ଅଗ୍ରଗାମୀ-ମାନଙ୍କର ପ୍ରଦର୍ଶିତ ପଥ । ସେହି ପଥରେହିଁ ଆମ୍ଭମାନଙ୍କୁ ଅଗ୍ରସର ହେବାକୁ ପଡ଼ିବ । ଶତ୍ରୁସେନାର ବ୍ୟୂହ ଭେଦ କରି ପଥ ପରିଷ୍କାର କରିବାକୁ ହେବ । ଭଗବାନଙ୍କର ଇଚ୍ଛା ହେଲେ ଶହୀଦର ଅମର ମୃତ୍ୟୁହିଁ ବରଣକରି ନେବାକୁ ହେବ ।

ସ୍ୱାଧୀନତା—ନଚେତ୍ ମୃତ୍ୟୁ ! ହୁଏତ ନିଜର ତ୍ରିରଙ୍ଗା ପତାକା ଉତ୍ତୋଳନ କରି ଦିଲ୍ଲୀର ଲାଲ୍ କିଲ୍ଲାକୁ ଅଧିକାର କରିବାକୁ ହେବ ନଚେତ୍ ସଂଗ୍ରାମରେହିଁ ପ୍ରାଣ ବିସର୍ଜ୍ଜନ ଦେବାକୁ ପଡ଼ିବ ଦିଲ୍ଲିର ପଥ ସ୍ୱାଧୀନତାର ପଥ । 'ଦିଲ୍ଲୀ ଚଲୋ' ହୁଏତ ଆମେ ବିଜୟୀ ବେଶରେ ଦିଲ୍ଲୀ ପ୍ରବେଶ କରିବୁ ନଚେତ୍ ଆମ୍ଭମାନଙ୍କର ଶରୀର ତାହାର ଧୂଳିରେ ମିଶିଯିବ । ଯେଉଁ ପଥ ଦେଇ ଆମର ସେନାବାହିନୀ ଦିଲ୍ଲୀ ପ୍ରବେଶ କରିବେ, ଶେଷ ଶଯ୍ୟା ଗ୍ରହଣ କରିବା ସମୟରେ ଥରେ ସେ ସ୍ୱର୍ଗର ସରଣୀକୁ ଚୁମ୍ବନ କରି ନେବେ । ସନ୍ଧ୍ୟାର ରକ୍ତାକ୍ତ କେବଳହିଁ ସାକ୍ଷୀ ଦେବ ଯେ, ଦେଶର ସ୍ୱାଧୀନତା ପାଇଁ ଜୀବନର ମୂଲ୍ୟ ଦେବାକୁ ଆମ୍ଭେମାନେ ପଶ୍ଚାତ୍ପଦ

ସିଙ୍ଗାପୁର । ଶୁଣ! ଶୁଣ! ଭାଇଗଣ, ନିଜର ରକ୍ତ ଦାନ ଦେଉଛୁ! ରକ୍ତକୁ ରକ୍ତର ଡାକର !! ଉଠ, ଜାଗ, ଦିଲ୍ଲୀ ଚଲୋ ! ଜୟହିନ୍ଦ୍ ଓ ଜାତୀୟ ଶହୀଦ ବନ୍ଦରେ ସଙ୍ଗୀତ ଗାଅ !!! ଜାଲିଆନୱାଲାବାଗର ଅମର୍ତ୍ତ୍ୟ ଶହୀଦ, ବଙ୍ଗଳାର ସିରାଜଉଦ୍ଦୌଲା, ମୋହନ ଲାଲ, ଖୁଦି ରାମ, ହାପୁତର ଅଲ୍ଲୀ, ଝେଲ୍‌ଟାଓ ଆପ୍ପା ସାହେବ ଭୋଁସଲ, ମହାରାଷ୍ଟ୍ରର ପେଶୱା ବାଜୀରାଓ, ଅଯୋଧ୍ୟାର ବେଗମ୍ ପଞ୍ଜାବର ଭଗତ ସିଂହ, ସର୍ଦ୍ଦାର ଶ୍ୟାମ ସିଂ ଅଟାରିୱାଲା, ଝାନ୍ସୀର ରାଣୀ ଲକ୍ଷ୍ମୀବାଈ, ତାନ୍ତିଆଟୋପି, ଦୁମ୍‌ରାଓର ମହାରାଜା କୁଅଁର ସିଂ, ନାନା ସାହେବ, ଟିପୁ ସୁଲତାନ, ବୁଧୁଭଗତ ଓ ଆମର ଶେଷ ସମ୍ରାଟ ବାହାଦୁରଶାହ ପ୍ରଭୃତି ଅସଂଖ୍ୟ ବୀର ଶହୀଦଗଣ ଆକାଶ କଣ୍ଠରେ ଆମ୍ଭମାନଙ୍କୁ ଆହ୍ୱାନ କରୁଛନ୍ତି । ଉଠ, ପ୍ରସ୍ତୁତ ହୁଅ ! ଚଲୋ ଦିଲ୍ଲୀ, ଜୟହିନ୍ଦ ।

## ଯୁଦ୍ଧ ଯାତ୍ରା

ଏହାପରେ ଆଜାଦ ହିନ୍ଦ ଫୌଜର ୩ ଗୋଟି ରେଜିମେଣ୍ଟ ଯଥା ସୁଭାଷ ବ୍ରିଗେଡ୍, ଗାନ୍ଧୀ ବ୍ରିଗେଡ୍ ଓ ଆଜାଦ ବ୍ରିଗେଡର ଜବାନମାନେ ରେଙ୍ଗୁନଠାରୁ ଭାରତ ଅଭିମୁଖେ ଯୁଦ୍ଧ ଯାତ୍ରା କରି, ବର୍ମା ଓ ଭାରତ ସୀମାନ୍ତରେ ଠୁଳ ହେଲେ । ଏଥିରେ ମୋଟ ୧୨ ହଜାର ସୈନ୍ୟ ଥିଲେ ଏବଂ ସେନାପତି ଥିଲେ ଯଥାକ୍ରମେ : ମେଜର୍ ଜେନେରଲ-ଶାହନୱାଜ ଖାଁ, କର୍ଣ୍ଣେଲ-ଇନାୟତ୍ କିୟାନୀ ଓ ଜେନେରଲ ମୋହନ ସିଂ ଇମରେଜ୍ ସେନା ବାହିନୀକୁ ପରିଚାଳନା କରୁଥିଲେ । ଏମାନଙ୍କ ମଧ୍ୟରେ ନେହେରୁ ବ୍ରିଗେଡର ଅଧିନାୟକ କର୍ଣ୍ଣେଲ ଧିଲ୍ଲୋଁନ ୧୨ ହଜାର ସୈନ୍ୟ ଧରି ଆଗଉଥିଲେ । ତାଙ୍କ ପଛରେ ବାହାଦୁର ଗ୍ରୁପ୍ ଓ ଅନ୍ୟାନ୍ୟ ସ୍ୱତନ୍ତ୍ର ଦଳର ଆଉ ଚାରି ହଜାର ସୈନ୍ୟ ଧରି କର୍ଣ୍ଣେଲ ପି. କେ. ସେହଗଲ, କର୍ଣ୍ଣେଲ-ଗୀଲ, କର୍ଣ୍ଣେଲ-ଅଜାଦ, କର୍ଣ୍ଣେଲ-ରାମ ସ୍ୱରୂପ ସିଂହ, କର୍ଣ୍ଣେଲ-ମିଶ୍ରା ଓ ମେଜର୍-ଭଟ୍ଟ ପ୍ରମୁଖ ଆଗେଇ ଚାଲିଥାନ୍ତି । ଆଗରୁ ନିଷ୍ପତ୍ତି ହୋଇଥିଲା ଯେ, ଆଜାଦହିନ୍ଦ ବାହିନୀ ସୀମାନ୍ତରେ ପହଞ୍ଚିବା ପରେ ପ୍ରଥମେ ମଣିପୁର ରାଜଧାନୀ ଇମ୍ଫାଲ ଉପରେ ଆକ୍ରମଣ କରିବେ ଏବଂ ସୈନ୍ୟମାନେ ବ୍ରହ୍ମପୁତ୍ର ନଦୀ କୂଳରେ ପହଞ୍ଚିଲାପରେ, ନେତାଜୀ ସୁଭାଷ ଚନ୍ଦ୍ର ନିଜେ ସୈନ୍ୟାଧ୍ୟକ୍ଷତା କରିବେ । ତଦନୁସାରେ ସୈନ୍ୟମାନଙ୍କୁ ସୀମାନ୍ତରେ ଏକତ୍ରିତ କରି ଶତ୍ରୁର ରଣାଙ୍ଗନକୁ ଯିବାପାଇଁ ଦଳ ଦଳକରି ବାଣ୍ଟି ଦିଆଗଲା ।

## ପ୍ରଥମ ଯୁଦ୍ଧ

୧୯୪୪ ଫେବୃଆରୀ ୪ ତାରିଖ ଦିନ ପୂର୍ବାହ୍ନ ୮ ଘଟିକା ବେଳେ ଆଜାଦହିନ୍ଦ ଫୌଜର ସୈନ୍ୟମାନେ ଛୋଟ ଛୋଟ ଦଳରେ ବିଭକ୍ତହୋଇ ବ୍ରିଟିଶ ଓ ଆମେରିକା

ସେନାବାହିନୀ ଫ୍ରଣ୍ଟରେ ପ୍ରଚଣ୍ଡ ଆକ୍ରମଣ ଆରମ୍ଭ କଲେ । ବିଶେଷକରି ପୋପା, ହାଲ୍ଲା, ତମାପୁର, କୋହିମା, ଟିଡ଼ିମା, ହାକା, ମୋରଜ, ମଣିପୁର, ଇମ୍ଫାଲ, ପାଲେଲ, ଟାମୁ ଓ ଚଟ୍ଟଗ୍ରାମ ପ୍ରଭୃତି ବହୁଗୁଡ଼ିଏ ରଣାଙ୍ଗନରେ ଶତ୍ରୁସେନା ସହିତ ଆଜାଦହିନ୍ଦ ବାହିନୀର ମୁହାଁମୁହିଁ ହମାଘୋଟ ଲଢ଼ାଇ ହେଲା । ଦୀର୍ଘ ୭ ସପ୍ତାହ ବ୍ୟାପି ଯୁଦ୍ଧ ଚାଲିଲା । କିନ୍ତୁ ଆଜାଦ ବାହିନୀରେ କଠୋର ଆଘାତ ସହ୍ୟ କରି ନ'ପାରି ବ୍ରିଟିଶ ବାହିନୀ ପୃଷ୍ଠଭଙ୍ଗ ଦେଇ ପଳାୟନ କରିବାକୁ ବାଧ୍ୟ ହେଲେ । ଫଳରେ ମଣିପୁର ପର୍ଯ୍ୟନ୍ତ ଜାତୀୟ ବାହିନୀ ମାଡ଼ି ଚାଲିଲେ । ଟିଡ଼ିମ, ହାକା, ପାଲେଲ, ଟମ୍ମୁ ପ୍ରଭୃତି କୋହିମାର ୨୦ ହଜାର ବର୍ଗମାଇଲ ପରିମିତ ଅଞ୍ଚଳ ଜାତୀୟ ବାହିନୀର ଅଧିକାର ଭୁକ୍ତ ହେଲା । ୧୯୪୪ ମାର୍ଚ୍ଚ ୧୮ ତାରିଖ ଦିନ ଭାରତ ଭୂମି ମଣିପୁରରେ ପ୍ରଥମକରି ଜାତୀୟ ବାହିନୀ ନିଜର ତ୍ରିରଞ୍ଜିତ ଜାତୀୟ ପତାକା ଉତ୍ତୋଳନ କରି କୌମୀ ତରନା ( ଜାତୀୟ ସଙ୍ଗୀତ ) ଶୁଭ ସୁଖ ଚୈନକୀ ବରଷା ବରସେ' ଗାନ କରିବାପରେ, ଜଙ୍ଗୀନାଦ— 'ଇନ୍‌କିଲାବ-ଜିନ୍ଦାବାଦ !' 'ଆଜାଦ ହିନ୍ଦ-ଜିନ୍ଦାବାଦ', 'ନେତାଜୀ-ଜିନ୍ଦାବାଦ', 'ଚଲୋ-ଦିଲ୍ଲୀ', ଓ ସ୍ୱାଧୀନ ଭାରତକୀ ଜୟ ! ଧ୍ୱନିରେ କୋହିମା ଅଞ୍ଚଳର ଆକାଶ ବତାସ କମ୍ପାଇ ଦେଲେ । ଏହାପରେ ଦଖଲୀକୃତ ଇଲାକାରେ ପ୍ରଶାସନିକ ବ୍ୟବସ୍ଥା ଚଳାଇବା ପାଇଁ, ନେତାଜୀ ଜେନେରାଲ ଏ· ସି· ଚାଟାର୍ଜୀଙ୍କୁ ଜଙ୍ଗୀଲାଟରୂପେ ନିଯୁକ୍ତ କରିଥିଲେ ।

ସେତେବେଳେ ଆହ୍ଲ ନ'ହୋଇ ପୃଷ୍ଠପରେ ଯୁଦ୍ଧ ଜୟକରି ଜାତୀୟ ଉଲ୍ଲାସରେ ଜାତୀୟ ବାହିନୀ ମାଡ଼ି ଚାଲିଲେ ଆଗକୁ, ଦେଶ ମାତୃକାର ମୁକ୍ତି ସାଧନରେ ବ୍ରତୀହୋଇ ଜୀବନକୁ ତୁଚ୍ଛମଣି ଦୁର୍ଗମ ବଣ ପାହାଡ଼ ନଦ ନଦୀ ଅତିକ୍ରମ କରି ବ୍ରିଟିଶ ବାହିନୀର ଦ୍ୱିତୀୟ ବୃହତ୍ତମ ଯୁଦ୍ଧ ଘାଟି ଇମ୍ଫାଲ ମୋର୍ଚ୍ଚାକୁ ଅବରୋଧ କରିବା ଉଦ୍ଦେଶ୍ୟରେ ସେଠାରୁ ସେମାନେ ୩ ଭାଗରେ ବିଭକ୍ତ ହୋଇ ଦଳେ ମଣିପୁର ରାଜଧାନୀ ଇମ୍ଫାଲ ଦିଗକୁ ଗଲେ । ଦଳେ ଖଣ୍ଡକରି କୋହିମାର ଅଧିକୃତ ଅଞ୍ଚଳ ରକ୍ଷା କରିବା ପାଇଁ ସେଠାରେ ରହିଲେ । ବାକି ଅଂଶ ଗଲେ ଚଟ୍ଟଗ୍ରାମ ଦିଗକୁ ମାଡ଼ି ଚାଲିଲେ । ଅଳ୍ପଦିନ ମଧ୍ୟରେ ଗାନ୍ଧୀ ବ୍ରିଗେଡର ଜୱାନମାନେ ଇମ୍ଫାଲ ଅବରୋଧ କରି, ମୋର୍ଚ୍ଚାର ଶୀର୍ଷ ଦେଶରେ ନିଜର ଜାତୀୟ ନିଶାଣ ତ୍ରିରଙ୍ଗା ପତାକା ଉତ୍ତୋଳନ କରିବାରେ ସକ୍ଷମ ହେଲେ ।

ଏଣେ ଚଟ୍ଟଗ୍ରାମ ଓ ଆରାକାନର କ୍ଷେତ୍ରରେ କର୍ଣ୍ଣେଲ ମିଶ୍ରା (ହର୍କୋର-ର-ଜଙ୍ଗ୍‌ଙ୍କ ଅଧିନାୟକତ୍ୱରେ ରଥୀଡାଙ୍ଗ, ବୁଧିଡ଼ାଙ୍ଗ ପ୍ରଭୃତି ଅଞ୍ଚଳରେ ରକ୍ତାକ୍ତ ଯୁଦ୍ଧ ଚାଲିଲା ଓ ପରେ ସେ ସମସ୍ତ ସୁରକ୍ଷିତ ନଗର ଅଧିକାର ଭୁକ୍ତ ହୋଇଥିଲା ।

ଏହି ଅଞ୍ଚଳରେ ଆଜାଦ ହିନ୍ଦ୍ ବାହିନୀର କୋହିମା ରଣକ୍ଷେତ୍ର ବାସ୍ତବରେ ଲୋମହର୍ଷଣକାରୀ ଥିଲା । ସେତେବେଳେ ମିତ୍ରପକ୍ଷ ସେନା ବାହିନୀର ଦକ୍ଷିଣ ପ୍ରାଚ୍ୟ କମାଣ୍ଡିଂ ଅଫିସର ଲର୍ଡ ଓ୍ୱାଭେଲ ମୁକ୍ତ କଣ୍ଠରେ ଘୋଷଣା କଲେ ଯେ— "ସୁଭାଷ ବୋଷଙ୍କର ଆଜାଦ ହିନ୍ଦ ଫୌଜ, ମନୁଷ୍ୟ ନୁହନ୍ତି । ସେମାନେ ଏକ ପ୍ରକାରର ଦୁର୍ଦ୍ଧର୍ଷ ଜଙ୍ଗଲୀ ଓ ଅସୀମ ବଳଶାଳୀ ରାକ୍ଷସ ପ୍ରକୃତିର ସେନା । ଯେ ହେତୁ ସେମାନେ ଜୀବନ୍ତ ମଣିଷର ରକ୍ତ ପିଇଯାଉଛନ୍ତି ।" ଓ୍ୱାଭେଲଙ୍କ ଘୋଷଣାରେ ବାସ୍ତବ କେତେକାଂଶ ସତ୍ୟତା ଥିଲା । କାରଣ, କୋହିମାରେ ବ୍ରିଟିଶ ସେନାବାହିନୀ ସହିତ ମୁହାଁମୁହିଁ ସଙ୍ଗୀନ ଯୁଦ୍ଧବେଳେ ଆଜାଦ ହିନ୍ଦ ବାହିନୀର ଜଓ୍ୱାନମାନେ କେତେକ ଗୋରା ସିପାହୀଙ୍କୁ ସଙ୍ଗୀନରେ ଭୁଷିବା ସଙ୍ଗେ ସଙ୍ଗେ ଚିତ୍କାର କରି ଉଠେ (ବୀରହୁଙ୍କାର) ଯେ— "ଅଢ଼େଇ ଶହ ବର୍ଷର ପରାଧୀନତାର ରକ୍ତ ପିଇବୁ ଆଜି, ଆଜି ତାର ଉଚିତ ଶିକ୍ଷା ଦେବୁ ।" ସେତେବେଳେ ବ୍ରିଟିଶ ବାହିନୀ ପରାସ୍ତ ହୋଇ ପ୍ରାଣ ଭୟରେ ଛତ୍ରଭଙ୍ଗ ହୋଇ କିଏ କୁଆଡ଼େ ପଳାଇଗଲେ, ତାର ଠିକଣା ମିଳିଲା ନାହିଁ । ବାକି ସାତ ହଜାର ଶତ୍ରୁ ସୈନ୍ୟ ଆଜାଦ ହିନ୍ଦ ଫୌଜ ନିକଟରେ ଆତ୍ମ ସମର୍ପଣ କରିଥିଲେ । ଏହି ବନ୍ଦୀ ସୈନ୍ୟମାନଙ୍କୁ ପରବର୍ତ୍ତୀ କାଳେ ରେଙ୍ଗୁନକୁ ସ୍ଥାନାନ୍ତରିତ କରାଯାଇଥିଲା ।

## ଜାତୀୟ ବାହିନୀର ଇମ୍ଫାଲ ବିପର୍ଯ୍ୟୟର କାରଣ

ଆଜାଦ୍ ହିନ୍ଦ ଫୌଜ ଇମ୍ଫାଲ୍ ଅବରୋଧ କରିବା ପୂର୍ବରୁ ଜାପାନୀ ପକ୍ଷ ମୋର୍ଚ୍ଚା ଉପରେ ବୋମା ନିକ୍ଷେପ କରି ତାକୁ ଧ୍ୱଂସ କରିବାପାଇଁ ଯୋଜନା କରିଥିଲେ । କିନ୍ତୁ ନେତାଜୀ ଏ କଥା ଜାଣିପାରି କୌଣସି ମତେ ସେଥିରେ ରାଜି ହେଲେ ନାହିଁ । କାରଣ ମୋର୍ଚ୍ଚା ଭିତରେ ଯେଉଁ ଲକ୍ଷାଧିକ ବ୍ରିଟିଶ ଭାରତୀୟ ସୈନ୍ୟ ରହିଥିଲେ, ସେମାନେ ସବୁ ଭାରତୀୟ ଓ ନିଜର ଭାଇ ବୋଲି ନେତାଜୀ ଭାବିଲେ । ଏବଂ ବୋମା ପକାଇବା ଦ୍ୱାରା ସବୁ ଧ୍ୱଂସପ୍ରାପ୍ତ ହୋଇଯିବେ । ଏଣୁ ସେ ବୁଝିଥିଲେ ଯେ, ସୈନ୍ୟଙ୍କୁ ହତ୍ୟା ନ'କରି, ଯେ କୌଣସି ମତେ ସେମାନଙ୍କୁ ହାର ମନାଇ, ମୋର୍ଚ୍ଚା ଦଖଲ କରିବା ଏବଂ ଭାରତୀୟମାନଙ୍କୁ ଦେଶାତ୍ମବୋଧରେ ପ୍ରବର୍ତ୍ତାଇ ନିଜ ଦଳରେ ମିଶାଇ ପାରିଲେ, ଆଜାଦ୍ ହିନ୍ଦ୍ ଫୌଜର ଶକ୍ତି ଦ୍ୱିଗୁଣ ବୃଦ୍ଧିପାଇବ । ପ୍ରକୃତରେ ନେତାଜୀ ଏହି ଉଦ୍ଦେଶ୍ୟ ରଖି ମୋର୍ଚ୍ଚା ଉପରେ ବମ୍ବାର୍ଡ଼ କରିବା ପାଇଁ ଅନୁମତି ଦେଇନଥିଲେ । ଏପରିକି କଲିକତାସ୍ଥ ହାୱଡ଼ା ବ୍ରିଜ୍ ଓ ବିବେକାନନ୍ଦ ବ୍ରିଜ୍କୁ ବୋମା ପକାଇ ଭାଙ୍ଗିବାକୁ ଅନୁମତି ଦେଇନଥିଲେ । କିନ୍ତୁ ଆଜାଦ ବାହିନୀ ଇମ୍ଫାଲକୁ ଯେତିକି ସହଜରେ ଦଖଲ କରିବାପାଇଁ ଭାବିଥିଲେ, ତାହା ହୋଇପାରିଲା ନାହିଁ । କାରଣ ପ୍ରାକୃତିକ ପରିସ୍ଥିତି ଏଥିରେ ଘୋର ବାଧା

ହେଲା । ପ୍ରଥମ କାରଣ ହେଲା, ୧୯୪୪ ଏପ୍ରିଲ୍ ଓ ମଇ ମାସରେ ଲଗାତାର ପ୍ରବଳ ବର୍ଷା ସାଙ୍ଗକୁ ଝଡ଼ ବାତ୍ୟା ହେବା ଫଳରେ ନଈ, ନାଳ, ରାସ୍ତାଘାଟ ସବୁ ପାଣିରେ ଭରିଗଲା । ସୈନ୍ୟମାନେ ଗୋଟିଏ ଯାଗାରୁ ଅନ୍ୟ ଯାଗାକୁ ଯିବା ପାଇଁ କାଦୁଅ ପାଣିରାସ୍ତା ପ୍ରତିବନ୍ଧକ ହେଲା । ଦ୍ୱିତୀୟ କାରଣ ହେଲା, ମୋର୍ଚ୍ଚା ଅବରୋଧ ସମୟ ଭିତରେ ପଛରୁ ଖାଦ୍ୟ-ପେୟ, ଔଷଧ ପତ୍ର, ଲଗାସାଡ଼, ଯୁଦ୍ଧ ସରଞ୍ଜାମ ଓ କୌଣସି ଜିନିଷ ଆଜାଦହିନ୍ଦ୍ ଫୌଜ ନିକଟରେ ପହଞ୍ଚି ପାରିଲା ନାହିଁ । ତୃତୀୟ କାରଣ ହେଲା, ଆଜାଦ ବାହିନୀର ଘେରାଉ ଭାଙ୍ଗିବା ପାଇଁ ବ୍ରିଟିଶ ବିମାନ ବାହିନୀ ପକ୍ଷରୁ ଅନବରତ ଆକାଶ ମାର୍ଗରୁ ବୋମା ଓ ମେସିନଗନ୍‌ରୁ ଗୋଳା ବର୍ଷଣ ହେଲା । କିନ୍ତୁ ଶତ୍ରୁପକ୍ଷର ଏହିସବୁ ବିମାନ ଆକ୍ରମଣକୁ ମୁକାବିଲା କରିବା ପାଇଁ ଆଜାଦ୍‌ହିନ୍ଦ ଫୌଜ ନିକଟରେ ଯଥେଷ୍ଟ ବିମାନ ବାହିନୀ ନଥିଲା । ତେବେ ଜାପାନୀ ପକ୍ଷରୁ ପ୍ରତିଶ୍ରୁତି ଦିଆଯାଇଥିଲା ଯେ, ଠିକ୍ ସମୟରେ ତାଙ୍କର ବୋମା ବାହିନୀ ଆଜାଦହିନ୍ଦ୍ ଫୌଜକୁ ସାହାଯ୍ୟ କରିବ ବୋଲି । କିନ୍ତୁ ଦେଖାଗଲା ଶେଷ ପର୍ଯ୍ୟନ୍ତ ଜାପାନ ପକ୍ଷରୁ କୌଣସି ସାହାଯ୍ୟ ମିଳିଲା ନାହିଁ । ଅନୁସନ୍ଧାନ ପରେ ଏହାର ପ୍ରକୃତ ତଥ୍ୟ ଜଣାଗଲେ ଯେ, ପ୍ରଥମରୁ ଜାପାନୀମାନେ ଇମ୍ଫାଲ ମୋର୍ଚ୍ଚା ଉପରେ ବୋମା ପକାଇ ତାକୁ ଧ୍ୱଂସ କରିବାକୁ ଚାହିଁଥିଲେ, କିନ୍ତୁ ନେତାଜୀ ଏଥିରେ ସେମାନଙ୍କୁ ଅନୁମତି ଦେଇନଥିଲେ । ତେଣୁକରି ଜାପାନ ସେନାପତିମାନେ ଅସନ୍ତୁଷ୍ଟ ହୋଇ ଇମ୍ଫାଲ କିମ୍ବା ଅନ୍ୟ ଯୁଦ୍ଧ କ୍ଷେତ୍ରରେ ଆଜାଦ ହିନ୍ଦ୍ ଫୌଜକୁ ଜାଣିଶୁଣି, ଉଡ଼ାଜାହାଜ ସାହାଯ୍ୟ ଦେଇ ନଥିଲେ । କାରଣ, ଏକଥା ଆଗରୁ ସ୍ପଷ୍ଟ ହୋଇଯାଇଥିଲା ଯେ, ଭାରତର ସ୍ୱାଧୀନତାରେ ଜାପାନୀମାନେ ହସ୍ତକ୍ଷେପ କରନ୍ତୁ ନଥିଲା । ବୋଧହୁଏ ଏଥିପାଇଁ ଜାପାନୀ ସମର ନାୟକ ବୃନ୍ଦ ଅସନ୍ତୁଷ୍ଟି ବା ପ୍ରତିବନ୍ଧକ ସୃଷ୍ଟି କଲେ । କିନ୍ତୁ ପୂର୍ବରୁ ଜାପାନ ଓ ଆଜାଦହିନ୍ଦ୍ ସରକାର ମଧ୍ୟରେ ଚୁକ୍ତି ହୋଇଥିଲା ଯେ, "—ଯୁଦ୍ଧ ସମୟରେ ସମସ୍ତ ପ୍ରକାର ଯୁଦ୍ଧ ସରଞ୍ଜାମ ଓ ଆବଶ୍ୟକୀୟ ମୁତାବକ ଉଡ଼ାଜାହାଜ ସାହାଯ୍ୟ, ଜାପାନ ସରକାରଙ୍କ ପକ୍ଷରୁ ଆଜାଦହିନ୍ଦ୍ ସରକାରଙ୍କୁ ଯୋଗାଇ ଦିଆଯିବ ।' କିନ୍ତୁ ବାସ୍ତବ କ୍ଷେତ୍ରରେ ଜାପାନୀମାନେ ଏ ଚୁକ୍ତିର ବ୍ୟତିକ୍ରମ କରିଥିବା ଯୋଗୁଁ, ପରବର୍ତ୍ତୀକାଳେ ନେତାଜୀ ସମସ୍ତ ବିଷୟ ଜାଣିପାରି ବଡ଼ କ୍ଷୁବ୍ଧ ଓ ବ୍ୟଥିତ ହୋଇଥିଲେ ।

ସେ ଯାହାହେଉ ପ୍ରତିବାଧାବିଘ୍ନ ସତ୍ତ୍ୱେ ଆଜାଦହିନ୍ଦ୍ ବାହିନୀ ନଖାଇ ନପିଇ ବଣଜଙ୍ଗଲର ଫଳମୂଳ, ଘାସପତ୍ର ଓ ପାହାଡ଼ର ଝରଣା ପାଣି ପିଇ ଇମ୍ଫାଲ ଅବରୋଧକୁ ସୁଦୃଢ଼ ରଖିବାପାଇଁ ଅକ୍ଲାନ୍ତ ଚେଷ୍ଟାକଲେ । ସେମାନେ ଭାବିଲେ "—ବର୍ଷାରେ କୌଣସି ଅସୁବିଧା ଘଟିଥିବା ଯୋଗୁଁ, ସାହାଯ୍ୟ ଆସି ପହଞ୍ଚି ପାରିନାହିଁ, କିନ୍ତୁ ଭବିଷ୍ୟତରେ ନିଶ୍ଚୟ ଆସିବ ।" ଠିକ୍ ଏହାର ଦୁଇଦିନ ପରେ,

ଜାପାନୀ ବାହିନୀର ଗୋଟିଏ ରେଜିମେଣ୍ଟ ପଛରୁ ଆସେଇଆସି ଅନେକ ଦୂରରେ ଛାଉଣୀ ପକାଇଲେ । ସେମାନଙ୍କ ପାଖରେ ପ୍ରଚୁର ଖାଦ୍ୟ ଜିନିଷ ଥିବା ଜାଣି, କିଛି ସାହାଯ୍ୟ ପାଇବା ଆଶାରେ, ଆଜାଦ୍ ହିନ୍ଦ ବାହିନୀର ଦୁଇଜଣ କର୍ମ୍ମଚାରୀ ସେଠାକୁ ଯାଇଥିଲେ । କିନ୍ତୁ ଜାପାନୀମାନେ ଖାଦ୍ୟଜିନିଷ ଦେବା ପରିବର୍ତ୍ତେ ବଚସା ଓ ଝଗଡ଼ା ଆରମ୍ଭ କରି ଜଣେ କର୍ମ୍ମଚାରୀଙ୍କୁ ହତ୍ୟାକଲେ । ଅନ୍ୟଜଣେ ପ୍ରାଣନେଇ କୌଣସିମତେ ପଳାଇ ଆସି ନିଜ କ୍ୟାମ୍ପରେ ଖବର ଦେବାମାତ୍ରେ ଆଜାଦ୍ ହିନ୍ଦ୍ ବାହିନୀ ଜାପାନୀ ଛାଉଣୀ ଉପରେ ପ୍ରବଳ ଆକ୍ରମଣ ଚଳାଇ, ତାଙ୍କୁ ପରାସ୍ତ କଲେ ଏବଂ ତାଙ୍କ ନିକଟରେ ଥିବା ସମସ୍ତ ଖାଦ୍ୟ ସାମଗ୍ରୀ ନିଜ କ୍ୟାମ୍ପକୁ ନେଇଆସିଲେ । ଅବଶ୍ୟ କିଛିଦିନପାଇଁ ସେଥିରେ ଖାଦ୍ୟାଭାବ ଦୂର ହୋଇଥିଲା । ଏହାର କିଛିଦିନ ପରେ ପୁଣି ଦଳେ ସୈନ୍ୟ, ଖାଦ୍ୟଜିନିଷ ପାଇବା ଉଦ୍ଦେଶ୍ୟ ନେଇ ନାଗା ପାହାଡ଼କୁ ଯାଇଥିଲେ । କିନ୍ତୁ ନାଗାମାନେ, ଧନୁଶର ମାରି ସାତଜଣ ସୈନ୍ୟଙ୍କୁ ହତ୍ୟା କରିବା ଫଳରେ ଆଜାଦ୍ ହିନ୍ଦ ବାହିନୀର ସୈନ୍ୟମାନେ, ଆତ୍ମରକ୍ଷାରେ ରଗି, ନାଗାମାନଙ୍କ ଉପରେ ଗୁଳି ଚଳାଇଲେ । ଶେଷକୁ ନାଗାମାନେ ପରାସ୍ତହୋଇ କିଛି ଖାଦ୍ୟଜିନିଷ ସଂଗ୍ରହ କରି, ସୈନ୍ୟମାନଙ୍କ ନିକଟରେ ଦେଇ, ନିଜର ଭୁଲ ଯୋଗୁଁ, କ୍ଷମା ମାଗିଥିଲେ । ଏହିଭଳି ମଝି ମଝିରେ ଅର୍ଦ୍ଧାହାର ଓ ଅନାହାର । ରହି ଆଜାଦ୍ ବାହିନୀ ଦିନକୁ ଦିନ ଅତି ଦୁର୍ବଳ ହେବାକୁ ଲାଗିଲେ, ତଥାପି ମନୋବଳ ସେମାନଙ୍କର ଭାଙ୍ଗି ନାହିଁ ।

ଖାଦ୍ୟ ଦ୍ରବ୍ୟ କେଉଁଠୁ ଓ କେମିତି ମିଳିବ ? ସମସ୍ତେ ଏହି ଚିନ୍ତାରେ ବ୍ୟସ୍ତ ଥିଲାବେଳେ, ଠିକ୍ ଏତିକି ବେଳେ, କ୍ୟାପ୍ଟେନ୍ ଜର୍ଜ ଥୋମାସ୍ ନାମକ ଜଣେ ଟାମିଲିଆନ୍ ଭଦ୍ର ବ୍ୟକ୍ତି ନିଜର ବୁଦ୍ଧି ଖଟାଇଲେ । ସେ ବ୍ରିଟିଶ ବାହିନୀ ପୋଷାକ ପିନ୍ଧି, ହାତରେ ଦୁଇଖଣ୍ଡ ପତାକା ଧରି, ଗୋଟିଏ ପାହାଡ଼ର ଶୃଙ୍ଗ ଜାଗାରେ ଠିଆହୋଇ ଆକାଶ ମାର୍ଗରେ ଉଡ଼ୁଥିବା ବ୍ରିଟିଶ ହେଲିକପ୍ଟରକୁ ସିଗ୍ନାଲ୍ ଦ୍ୱାରା ଜଣାଇଲେ । ଏଥିରେ ବ୍ରିଟିଶ ବ୍ୟୋମ ବାହିନୀ ଭାବିଲେ ଯେ, "ତାଙ୍କର ସୈନ୍ୟମାନେ ଅସୁବିଧା ଓ ବିପତ୍ତିରେ ପଡ଼ି, ଖାଦ୍ୟ ସାହାଯ୍ୟ ମାଗୁଛନ୍ତି ।" ଏହା ମନେକରି ସେମାନେ ଏକାଧିକ ଉଡ଼ାଜାହାଜ ଓ ହେଲିକପ୍ଟରରେ ପ୍ରଚୁର ଖାଦ୍ୟ ନେଇ ସେହିସବୁ ପାହାଡ଼ ଅଞ୍ଚଳରେ ପକାଇଥିଲେ । ଉକ୍ତ ଖାଦ୍ୟ ବସ୍ତା ଗୁଡ଼ିକ ସବୁ ଆଜାଦହିନ୍ଦ୍ ଫୌଜ ହାତରେ ପଡ଼ିବାରୁ, ସେମାନେ ପେଟଭରି ଖାଦ୍ୟ ଖାଇ ଦ୍ୱିଗୁଣ ଉତ୍ସାହିତ ଭାବେ ଯୁଦ୍ଧରେ ମନୋନିବେଶ କଲେ ।

କିନ୍ତୁ ବିଧିର ବିଡ଼ମ୍ବନା ଯେ, ଏକ ସପ୍ତାହ ପରେ ପୁଣି ପ୍ରବଳ ବର୍ଷା ଓ ବାତ୍ୟା ଆରମ୍ଭ ହେଲା । ବର୍ଷାତି ଅଭାବ ଯୋଗୁଁ, ସୈନ୍ୟମାନେ ଉନସ୍ଥିତ

ଓଦାବସ୍ତ୍ରରେ ରହିଲେ । ଅଗରୁ ନ'ଖାଇ ଏକ ପ୍ରକାର ଅନ୍ତ ଶୁଖିଯାଉଥିଲା । ପରେ ପେଟଭରି ତାଜାଖାଦ୍ୟ ଖାଇବାକୁ ପାଉଥିଲେ, ଫଳରେ ବହୁସୈନ୍ୟ ଡାଇରିଆ ଓ ମେଲେରିଆ ଜ୍ୱର କବଳିତ ହେଲେ । ସେମାନଙ୍କର ପୋଷାକ ପରିଧାନ ଓ ଚିକିତ୍ସା ପାଇଁ ଔଷଧ ପତ୍ର ଅଭାବ ଘଟିଲା । ଫଳରେ ଇମ୍ଫାଲ ରଣକ୍ଷେତ୍ରରେ ଗାନ୍ଧୀ ବ୍ରିଗେଡ୍‌ର ଅର୍ଦ୍ଧାଧିକ ସୈନ୍ୟ ଏପରି ଦୈନ୍ୟଭାବେ ମାତୃଭୂମିର ମୁକ୍ତି ପାଇଁ ମୃତ୍ୟୁ ମୁଖରେ ପତିତ ହେଲେ । ଯାହା ଯେଉଁମାନେ ବଞ୍ଚିଗଲେ ସେମାନଙ୍କର ମନୋବଳ ଏକ ପ୍ରକାର ଭାଙ୍ଗିଗଲା । ତେଣେ ଶତ୍ରୁ ପକ୍ଷର ଲକ୍ଷାଧିକ ନୂଆ ଗୋର୍ଖା ସୈନ୍ୟ ଯୁଦ୍ଧରେ ଯୋଗଦେଲେ ଏବଂ ବିମାନ ଉପରୁ ଦେବଜ ଭାଙ୍ଗିବା ପାଇଁ ପ୍ରବଳ ବୋମା ବର୍ଷଣ ଚାଲିଲା । ଅଗତ୍ୟା, ଅନିଚ୍ଛା ସତ୍ତ୍ୱେ ଇମ୍ଫାଲ ଅବରୋଧ ତ୍ୟାଗ କରି ଜାପାନ ବାହିନୀ ପଛକୁ ହଟିବାକୁ ବାଧ୍ୟ ହେଲେ । କିନ୍ତୁ ପଛକୁ ହଟି ଆସିବା ସମୟରେ ସେଥି ମଧ୍ୟରୁ ଜ୍ୱର କବଳିତ କେତେଜଣ ଜୱାନ ପଥ ମଧ୍ୟରେ ମୃତ୍ୟୁବରଣ କଲେ । ଆଉ କେତେକ ପର୍ଯ୍ୟଟନ ପରେ ଆଜାଦ ହିନ୍ଦ ସରକାରଙ୍କ ଶାସନାଧୀନ କୋହିମାରେ ପହଞ୍ଚି ଚିକିତ୍ସା ହୋଇଥିଲେ । କହିବାକୁ ଗଲେ ଇମ୍ଫାଲ ରଣକ୍ଷେତ୍ରରେ ଗାନ୍ଧୀ ବ୍ରିଗେଡ୍‌ର ଅଧିକାଂଶ ସୈନ୍ୟ ଦେଶପାଇଁ ନିଜର ପ୍ରାଣବଳି ଦେଇଥିଲେ ।

## ଦ୍ୱିତୀୟବାର ଯୁଦ୍ଧ

ଇମ୍ଫାଲ ଅଭିଯାନ ବିଫଳ ହେଲେ ମଧ୍ୟ ଆଜାଦ୍ ହିନ୍ଦ ଫୌଜର ମନୋବଳ ଭାଙ୍ଗି ଯାଇ ନଥିଲା । ସେମାନେ ଦ୍ୱିତୀୟବାର ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ । ଏତିକିବେଳେ ଶତ୍ରୁ ପକ୍ଷ ଜାଣିପାରି ଚଟ୍ଟଗ୍ରାମ, ଆରାକାନ, ଟିଡ଼ିମ, ହାଫା ପ୍ରଭୃତି ଯାହାକି କୋହିମାଠାରୁ ୪୦/୪୫ ମାଇଲ ଦୂରରେ ଅବସ୍ଥିତ ସେହିସବୁ ଅଞ୍ଚଳରେ ଆଗ ଅପେକ୍ଷା ୨୦ ଗୁଣ ଯାନ ବାହାନ ଓ ୨୪ ଲକ୍ଷ ସୈନ୍ୟ ସମାବେଶ କଲେ । ଯାହାକି ଦ୍ୱିତୀୟ ବିଶ୍ୱଯୁଦ୍ଧରେ ୟୁରୋପ ଓ ଏସିଆ ଭୂଖଣ୍ଡରେ ସମସ୍ତ ରଣାଙ୍ଗନ ଅପେକ୍ଷା ମିତ୍ର ଶକ୍ତିର ଏହା ଥିଲା ସବୁ ବୃହତ୍ତର ସୈନ୍ୟ ସମାବେଶ ।

୧୯୪୪ ନଭେମ୍ବର ମାସ ମଧ୍ୟ ଭାଗରେ ଇଂରେଜ ସେନାବାହିନୀ ଓ ଆଜାଦ ହିନ୍ଦ ଫୌଜ ମଧ୍ୟରେ ପୁଣି ଘମାଘୋଟ ଯୁଦ୍ଧ ଆରମ୍ଭ ହେଲା । ପ୍ରଥମ ଦୁଇ ସପ୍ତାହ ଯୁଦ୍ଧରେ ଶତ୍ରୁ ପକ୍ଷର ଅବସ୍ଥା ଏପରି ନାକେଦମ ହେଲା ଯେ ହଜାର ହଜାର ବ୍ରିଟିଶ ସେନା ମୃତ୍ୟୁ ବରଣ କଲେ । ଶତ୍ରୁ ପକ୍ଷର ସହସ୍ରାଧିକ ଗାଡ଼ି, ଟ୍ୟାଙ୍କ ଓ ଟ୍ରାକ ପ୍ରଭୃତି ଜାପାନ ବାହିନୀ ନିଜ ଦଖଲକୁ ଆଣିପାରିଲେ । ଏପରି ପରିସ୍ଥିତି ହେଲା; ଯାହାକି ମାଇଲ ମାଇଲ ବ୍ୟାପି ଶତ୍ରୁ ପକ୍ଷର ମୃତ ସୈନିକ ଶବ ଉପରେ ଶବ ରଣକ୍ଷେତ୍ରରେ ବିକ୍ଷିପ୍ତଭାବେ ପଡ଼ି ପଡ଼ି ସଢ଼ିଗଲା, କେହି ତାଙ୍କୁ ଉଠାଇବାକୁ

ଆସିଲେ ନାହିଁ । ସେମାନେ ସବୁ ବ୍ରିଟିଶ୍ ଅଫ୍ରିକା ରେଜିମେଣ୍ଟ ବା ନିଗ୍ରୋ ବାହିନୀର ସୈନିକ ଥିଲେ । ଜାପାନୀ ବାହିନୀର ଅନ୍ତର୍ଘାତୀ ଦଳର ଲୋକମାନେ ଚଟ୍ଟଗ୍ରାମ ଉପକଣ୍ଠରେ ପହଞ୍ଚି ସେଠାକାର ଟେଲିଗ୍ରାଫ ଓ ପୋଷ୍ଟ ଅଫିସକୁ ମାଇନ୍ ଦ୍ୱାରା ଉଡ଼ାଇଦେବାପାଇଁ ଯୋଜନା କରିଥିଲେ କିନ୍ତୁ ସବୁ ମାରିପିବାରୁ ପଛକୁ ହଟିଆସିଥିଲେ । ପରବର୍ତ୍ତୀକାଳେ ଯୁଦ୍ଧର ଉପ୍ରାବସ୍ଥାକୁ ଉପଲବ୍ଧି କରି ଶତ୍ରୁ ପକ୍ଷ ପୁଣି ଅଗଣିତ ବ୍ୟୋମଯାନ, ସାଞ୍ଜୁଆଗାଡ଼, ଟ୍ୟାଙ୍କ ବାହିନୀ ତଥା ଲକ୍ଷ ଲକ୍ଷ ସେନା ନେଇ ଅତର୍କିତଭାବେ ଜାପାନୀ ବାହିନୀ ଉପରେ କଠୋର ଆକ୍ରମଣ ଚଳାଇଲେ । ଆଶ୍ଚର୍ଯ୍ୟର କଥା ! ଆଜାଦ ବାହିନୀ ଅପେକ୍ଷା, ଶହେଗୁଣ ଶକ୍ତି ସମ୍ପର୍ଣ୍ଣ ବ୍ରିଟିଶ ଭାରତୀୟ ବାହିନୀ, ଗର୍ଭ ୨ ସପ୍ତାହ ଯୁଦ୍ଧ କରି ମଧ୍ୟ କୌଣସି ମତେ ଆଜାଦହିନ୍ଦ ଫୌଜକୁ ପଛକୁ ହଟାଇ ପାରିଲେ ନାହିଁ । ବାସ୍ତବରେ ଜାପାନୀ ବାହିନୀର ପ୍ରାଣମୂର୍ଚ୍ଛା । ଯୁଦ୍ଧ ସମ୍ମୁଖରେ ଦଣ୍ଡାୟମାନ ହେବାପାଇଁ ଶତ୍ରୁ ପକ୍ଷ ସେନାର ସାହସ ନଥିଲା, ସେମାନେ ଅତ୍ୟନ୍ତ ଭୟ ପାଉଥିଲେ । ଏଥିର କାରଣ ମଧ୍ୟ ଯଥେଷ୍ଟ ଥିଲା— ଆଜାଦହିନ୍ଦ୍ ଫୌଜ ନ'ଖାଇ, ନପିଇ ଦେଶର ସ୍ୱାଧୀନତା ଅର୍ଜନ ସକାଶେ ନେତାଜୀଙ୍କ ଆହ୍ୱାନରେ ଯୁଦ୍ଧ କରୁଥିଲେ । ସେମାନଙ୍କର ଲକ୍ଷ୍ୟ, ଆଜାଦ, ୟା ମଉତ୍ ( ସ୍ୱାଧୀନତା ନଚେତ୍ ମୃତ୍ୟୁ ) ।" କିନ୍ତୁ ବ୍ରିଟିଶ ବାହିନୀ ଯୁଦ୍ଧ କରୁଥିଲେ ମାସିକ ବେତନ ଓ ନିଜର ପଦୋନ୍ନତି ସକାଶେ ।

ଏହାର ଦୁଇଦିନ ପରେ ହଠାତ୍ ଯୁଦ୍ଧର ଗତି ବଦଳି ଗଲା । ଏହା ଅଖିତକାଳରେ ଭାରତବର୍ଷ ପରାଧୀନତାର କାରଣ ସଙ୍ଗେ ତୁଳନୀୟ, ଅର୍ଥାତ୍ ଭିତରିଆପର ପୁନରାବୃତ୍ତି ହେଲା । ଯାହାର ଫଳ ଜାପାନୀ ବାହିନୀର ଦୁର୍ଦ୍ଦିନ ଓ ପତନର ପଥ ପରିଷ୍କାର ହୋଇଗଲା । ସେତେବେଳେ ପଦାତିକ ଓ ଭଲ ଖାଦ୍ୟ ପାଇବା ଆଶାରେ, ଆଜାଦହିନ୍ଦ ଫୌଜ ମଧ୍ୟରୁ ମଦନ, ଇବାଜ, ସରକାର ଙ୍କ ନାମକ ୩ ଜଣ ପଦସ୍ଥ ଅଫିସର ଯୁଦ୍ଧ କ୍ଷେତ୍ରର ସମ୍ପୂର୍ଣ୍ଣ ଏକ ନକ୍ସା ସହ ୮ ଶତ ସୈନ୍ୟଙ୍କୁ ନେଇ ଶତ୍ରୁ ପକ୍ଷରେ ଯାଇ ସାମିଲ ହୋଇଗଲେ । ସେମାନଙ୍କର ଚରମ ବିଶ୍ୱାସଘାତକତା ଯୋଗୁଁ, ଶତ୍ରୁ ପକ୍ଷରୁ ଆଜାଦହିନ୍ଦ ଫୌଜର ପ୍ରତ୍ୟେକ ଗୁପ୍ତ ସେନାଛାଉଣୀ ଘାଟି ଉପରେ ପ୍ରବଳ ବୋମା ବର୍ଷଣ ଓ ଆକ୍ରମଣ ଚଳାଇ ବହୁତ କ୍ଷତି ସାଧନ ଘଟାଇଲେ । ଏହିପରି ଶୋଚନୀୟ ପରିସ୍ଥିତି ହେତୁ ନେତାଜୀଙ୍କ ଆଦେଶରେ ସେହି ସବୁ ଅଞ୍ଚଳ ଛାଡି ଜାପାନୀ ବାହିନୀ ପଛକୁ ହଟି ଆସିବା ପାଇଁ ବାଧ୍ୟ ହୋଇଥିଲେ ।

ପରବର୍ତ୍ତୀକାଳେ ନେତାଜୀ ଏ ସମସ୍ତ ଘଟଣା ଯେତେବେଳେ ଜାଣିପାରିଲେ, ସେତେବେଳେ ସୈନ୍ୟବାହିନୀକୁ ସମ୍ବୋଧନ କରି କହିଲେ—"ଲଢ଼ିବାପାଇଁ

ସେହିମାନଙ୍କର ଇଚ୍ଛା ନାହିଁ, ସେମାନେ ନିଜର କମାଣ୍ଡରଙ୍କୁ ସଫା ସଫା କହି ଦିଅନ୍ତୁ, ସେମାନଙ୍କୁ ଅନ୍ୟ କାର୍ଯ୍ୟରେ ଲଗାଯିବ । ଯାହା ସେହିମାନଙ୍କର ରହିବାକୁ ଇଚ୍ଛା ନାହିଁ, ସେମାନେ ଖୁସୀରେ ଏଠାରୁ ଚାଲିଯାଆନ୍ତୁ । କିନ୍ତୁ ଆମେ ଆମର ଯଥାଶକ୍ତି ଦେଇ ଶତ୍ରୁ ମହଲ ଯୁଦ୍ଧ ଚଳାଇବାକୁ ହେବ । ସେଥିପାଇଁ ଆପଣମାନେ ପ୍ରସ୍ତୁତ ରହନ୍ତୁ ।'' ଏହାପରେ ସୈନ୍ୟ ସମାବେଶକୁ ଅଦଳ ବଦଳ କରାଗଲା । କେହି ଯଦି ଶତ୍ରୁପକ୍ଷକୁ ପଳାଇ ଯାଉଥିବା ସନ୍ଦେହ ହେଲେ, ସେନା କମ୍ପାନୀ ଅଫିସର ଯିଏ ହୁଅନ୍ତୁନା କାହିଁକି, ପଛରୁ ତାଙ୍କୁ ଗୁଳି କରିଦେବା ପାଇଁ ଆଦେଶ ଦେବା ସଙ୍ଗେ ସଙ୍ଗେ ସମସ୍ତଙ୍କୁ ପଛକୁ ହଟି ଆସିବା ପାଇଁ ମଧ୍ୟ ନିର୍ଦ୍ଦେଶ ହୋଇଥିଲା ।

ଏହାପରେ ଆଜାଦହିନ୍ଦ ଫୌଜ ନିଜର ଘାଟି ମଧ୍ୟରେ ଘାଟି ପରିତ୍ୟାଗ କରି ଧୀରେ ଧୀରେ ପଛକୁ ହଟିବା ଆରମ୍ଭ କଲେ । ଶତ୍ରୁପକ୍ଷର ଶତାଧିକ ବିମାନ ଆକାଶମାର୍ଗରୁ ବୋମା ଓ ମେସିନ ଗନରୁ ଗୁଳି ବର୍ଷଣ କରି ଚାଲିଥାନ୍ତି ଯେ, ସେମାନେ ମୁଣ୍ଡ ଉଠାଇ ପାରିଲେ ନାହିଁ । ନିଜର ଜୀବନ ରକ୍ଷା ସକାଶେ ଲୁଚି ଛପି ଆଉ ନେଇ ମୋର୍ଚ୍ଚା ଭିତରେ ଅଧିକାଂଶ ସମୟ ରହିବାକୁ ହେଉଥାଏ । ଏହି ସୈନ୍ୟପାଇ ଶତ୍ରୁପକ୍ଷର ସାଞ୍ଜୁଆ ଗାଡ଼, ଟ୍ୟାଙ୍କ ବାହିନୀ ଓ ତା ପଛରେ ଲକ୍ଷ ଲକ୍ଷ ପଦାତିକ ବାହିନୀ ପିମ୍ପୁଡ଼ିକା ସଦୃଶ୍ୟ ମାଡ଼ି ଆସୁଥାନ୍ତି । ଜାଗାପ୍ ବାହିନୀର ବିପର୍ଯ୍ୟୟ ପାଇଁ ବ୍ରିଟିଶ ପଦାତିକ ବାହିନୀ ଅପେକ୍ଷା ବିମାନ ବାହିନୀର ଭୂମିକାହିଁ ଗୁରୁତ୍ୱପୂର୍ଣ୍ଣ । ଯଦି ଏ କ୍ଷେତ୍ରରେ ଆଜାଦହିନ୍ଦ ଫୌଜର ପର୍ଯ୍ୟାପ୍ତ ପରିମାଣ ନ ହେଲେ ମଧ୍ୟ, ଶତ୍ରୁପକ୍ଷର ବିମାନକୁ ଭୂପତିତ କରିବାପାଇଁ ଅନ୍ତତଃ ପକ୍ଷେ ୧୦/୨୦ଟା ବିମାନ ଯଦି ଆକାଶ ମାର୍ଗରେ ଉଡ଼ି ପାରିଥାନ୍ତା ତାହେଲେ ସେମାନେ ଏତେ ନିକଟତମ ହୋଇ ଆକ୍ରମଣ କରି ପାରି ନଥାନ୍ତେ ! ଏବଂ ଯୁଦ୍ଧର ଗତି ମଧ୍ୟ ଭିନ୍ନପ୍ରକାର ଧାରଣ କରିଥାନ୍ତା । ଏଥିରେ କୌଣସି ସନ୍ଦେହ ନଥିଲା । କାରଣ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଜୟ ଲାଭପାଇଁ ସେତେବେଳର ସବୁଠାରୁ ଅମୋଘ ଶକ୍ତି ହୋଇଥିଲା ବୋମା ଓ ବ୍ୟୋମଯାନ । ଏହି ଦୁଇଟି ଶକ୍ତି ଆଜାଦହିନ୍ଦ ଫୌଜ ନିକଟରେ ପ୍ରଥମରୁ ନଥିଲା ଜାପାନୀମାନଙ୍କ ପ୍ରତିଶ୍ରୁତି ଉପରେ ନିର୍ଭର କରି ସେମାନେ ଯୁଦ୍ଧକୁ ଅଗ୍ରସର ହୋଇଥିଲେ ।

ପରିଶେଷରେ ଆଜାଦହିନ୍ଦ ଫୌଜ ୧୯୪୫ ଜାନୁୟାରୀ ପ୍ରଥମ ଭାଗରେ ପଛକୁ ହଟି ବ୍ରହ୍ମଦେଶର ଐତିହାସିକ ତଥା ପ୍ରାଚୀନ ରାଜଧାନୀ ମାନ୍ଦଲେ ସହର ଓ ଟାନ୍‌ଗୁଆ ପାହାଡ଼ ଅଞ୍ଚଳରେ ନିଜର ଘାଟି ସ୍ଥାପନ କରି, ଲଢ଼ିବା ପାଇଁ ଦୃଢ଼ତା ଅବଲମ୍ବନ କଲେ । ଏହିକ ବେଳେ ଶତ୍ରୁ ସେନା ବ୍ରହ୍ମ ଭିତରେ

ମାଡ଼ ଆସି, ମାଣ୍ଡେଲେ ସହରକୁ ଅବରୋଧ କଲେ । ଉଭୟ ସେନାଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ହେଲା । ଶତ୍ରୁପକ୍ଷ ବିମାନ ବାହିନୀର ପ୍ରଚଣ୍ଡ ଆକ୍ରମଣ ବଳରେ ବ୍ରିଟିଶ ପଦାତିକ ବାହିନୀ ଦୀର୍ଘ ଏକ ସପ୍ତାହ ଯୁଦ୍ଧ କରି ମାଣ୍ଡେଲେ ସହର ଭିତରକୁ ପଶିବା ପାଇଁ ସକ୍ଷମ ହେଲେ । ସେମାନେ ସହର ଭିତରେ ପଶି ପ୍ରଥମେ ଗୋଟିଏ ଗଳି ରାସ୍ତା ମଧ୍ୟରେ ମାର୍ଚ୍ଚିଂ କଲେ । ସେତେବେଳକୁ ସହର ଜନତା ସମସ୍ତ ହୋଇଥିଲା । ଏତିକିବେଳେ ୧୦ ବର୍ଷର ଜଣେ ଘରଷ୍ଟସ୍ଥ ବାଳକ ସେମାନଙ୍କୁ ଆଜାଦହିନ୍ଦ ଫୌଜ ମନେ କରି ଘରର ବାରଣ୍ଡା ଉପରେ ଠିଆ ହୋଇ ସଜୋରେ 'ଜୟହିନ୍ଦ' ଅଭିବାଦନ କଲା । ହଠାତ୍ ଜଣେ ଗୋରାସିପାହୀ ଉତ୍ତ୍ୟକ୍ତ ହୋଇ ବାଳକର ଛାତି ଉପରକୁ ଗୁଳି କରିଦେଲା । ସଙ୍ଗେ ସଙ୍ଗେ ବାଳକଟି ଟଳି ପଡ଼ିଲା । କିନ୍ତୁ ଅନ୍ୟ ଗଳିରେ ସେତେବେଳେ ଆଜାଦହିନ୍ଦ ଫୌଜର ସେନାମାନେ ପହରା ଦେଉଥିଲେ । ହଠାତ୍ ଗୁଳିର ଆବାଜ ଶୁଣି ଦେଖିଲେ ଯେ, ଶତ୍ରୁ ସୈନ୍ୟ ସହର ଭିତରକୁ ପଶି ଆସିଲେଣି । ସଙ୍ଗେ ସଙ୍ଗେ ସେମାନେ ଶତ୍ରୁ ସେନା ସହିତ ପ୍ରାଣମୂର୍ଚ୍ଛା ଯୁଦ୍ଧ କରି, ଯେତିକି ପଶି ଆସିଥିଲେ ସେମାନଙ୍କୁ ସମୂଳେ ଧ୍ୱଂସ କରିଦେଲେ ମାଣ୍ଡେଲେ ସହରର ମୁଖ୍ୟ ରାସ୍ତା ଓ ଗଳିକନ୍ଦି ଭିତରେ ଦୀର୍ଘ ୭ ସପ୍ତାହ ପର୍ଯ୍ୟନ୍ତ ଆଜାଦହିନ୍ଦ ଫୌଜ ଓ ବ୍ରିଟିଶ ବାହିନୀ ମଧ୍ୟରେ ଛକା ପଂଝା ଯୁଦ୍ଧ ଚାଲିଲା । ଉଭୟ ପକ୍ଷରୁ ବହୁ ସୈନ୍ୟ ମୃତାହତ ହେଲେ । କିନ୍ତୁ ଶତ୍ରୁପକ୍ଷର ଭାରୀ ଟ୍ୟାଙ୍କ ବାହିନୀ ସହରର ଗଳିକନ୍ଦି ଭିତରକୁ ଧସେଇ ପଶିବା ଫଳରେ ୧୯୪୫ ମାର୍ଚ୍ଚ ୨୪ ତାରିଖ ଦିନ ବ୍ରିଟିଶ ବାହିନୀ ସମ୍ପୂର୍ଣ୍ଣ ଭାବେ ମାଣ୍ଡେଲେ ସହରକୁ ଦଖଲ କରିଗଲେ ।

ପରବର୍ତ୍ତୀକାଳେ ପୋପା, ଟାନ୍‌ଗୁଆ ଓ ତାଗ୍‌ଗୀ ଦୁର୍ଗମ ପାହାଡ଼ ଅଞ୍ଚଳରେ ଉଭୟ, ଜାପାନୀ-ବାହିନୀ ଶତ୍ରୁସେନା ସହିତ ଲୁଚିଛପି ଯୁଦ୍ଧ ଚାଲୁ ରଖିଲେ । କେଉଁଠି ହାରୁଥାନ୍ତି ତ, କେଉଁଠି ଜିଣୁଥାନ୍ତି ମଧ୍ୟ । କିନ୍ତୁ ଟାନ୍‌ଗୁଆ ପାହାଡ଼ ଯୁଦ୍ଧକ୍ଷେତ୍ରରେ ଆଜାଦହିନ୍ଦ ଫୌଜର ଗୁଳି ବାରୁଦ ସବୁ ସରିଗଲା । ସେତେବେଳେ ଦଳର ସେନାପତି ଶାହନୱାଜ୍ ଖାଁ, ସେନାବାହିନୀକୁ ନିର୍ଦ୍ଦେଶ ଦେଲେ ଯେ,—"ଫିକସ୍ ବୟୋନେଟ୍ ଚାର୍ଜ, ଅର୍ଥାତ୍ ସଙ୍ଗୀନ ମୁନରେ ଭୁଷି ଯୁଦ୍ଧ କର ।" ଏହି ସଙ୍ଗୀନ ଯୁଦ୍ଧରେ ନିଜ ପକ୍ଷର ଅବଶ୍ୟ ବହୁ ସେନା ହତାହତ ହେଲେ, କିନ୍ତୁ ଶେଷକୁ ଜାପାନ ବାହିନୀ ବିଜୟ ହାସଲ କରି ଶତ୍ରୁପକ୍ଷର ହଜାର ହଜାର ଗାଡ଼ି, ଟ୍ୟାଙ୍କ, ଅସ୍ତ୍ର ଓ ପ୍ରଚୁର ପରିମାଣ ଖାଦ୍ୟସାମଗ୍ରୀ ନିଜ ଦଖଲକୁ ଆଣି, ପୁଣି ସେହି ଅଞ୍ଚଳରେ ଓଲଟି ଅଭିଯାନ ଚଳାଇ ଦୀର୍ଘ ଏକ ମାସ ପର୍ଯ୍ୟନ୍ତ ଯୁଦ୍ଧ କରିଥିଲେ । ଏହିପରି ଭାବେ ବ୍ରହ୍ମଦେଶର ବିଭିନ୍ନ ରଣାଙ୍ଗନରେ ଆଜାଦ ହିନ୍ଦ ଫୌଜ ଶେଷ ପର୍ଯ୍ୟନ୍ତ ଲଢ଼ି, ଅବଶେଷରେ ୧୦୪୫ ଏପ୍ରିଲ ୨୮ ତାରିଖ ଦିନ କର୍ଣ୍ଣେଲ ପି.କେ. ସେହଗଲ୍, ମଇ ମାସ ୧୪ ତାରିଖ ଦିନ କର୍ଣ୍ଣେଲ ଜ. ବ. ଧୀଲ୍ଲନ ଓ ମଇ ମାସ

୧୮ ତାରିଖ ଦିନ ମେଜର ଜେନେରାଲ୍ ଶାହନୱାଜ ଖାଁ ପ୍ରମୁଖ ଜାତୀୟ ବାହିନୀର ଆଗୁଆ ସେନାପତିମାନେ ବ୍ରିଟିଶ ବାହିନୀ ଦ୍ୱାରା ଯୁଦ୍ଧ କ୍ଷେତ୍ରରେ ଧରାହୋଇ ବନ୍ଦୀହେଲେ । ଆଜାଦହିନ୍ଦ୍ ଫୌଜର ସେନାବାହିନୀ ମଧ୍ୟ ଦଳେ ଦଳେ କିଏ କେଉଁଠି ଶତ୍ରୁ ଦ୍ୱାରା ଧରାହୋଇ ସବୁ ବନ୍ଦୀହେଲେ ।

ଏହା ପୂର୍ବରୁ ଅର୍ଥାତ୍ ମାଣ୍ଡେଲେ ସହର ପତନ ହେବା ପରେ ପରେ ନେତାଜୀ ନିଜର ହେଡକ୍ୱାର୍ଟର ରେଙ୍ଗୁନ ସହରକୁ ଫେରି ଆସି, ବିଶ୍ୱଯୁଦ୍ଧର ପରିସ୍ଥିତି ବିଶେଷ କରି ଜର୍ମାନ୍, ଜାପାନ ଓ ଆଜାଦହିନ୍ଦ୍ ସରକାର ସମ୍ବନ୍ଧରେ ନିଜର ମନ୍ତ୍ରିମଣ୍ଡଳ ସଙ୍ଗେ ଦୀର୍ଘ ସମୟ ଆଳାପ ଆଲୋଚନା କରି ଶେଷ ସିଦ୍ଧାନ୍ତରେ ଉପନୀତ ହେଲେ ଯେ, "—ବର୍ତ୍ତମାନ ପରିସ୍ଥିତିରେ ଆଜାଦହିନ୍ଦ ଫୌଜ ଯୁଦ୍ଧ ବନ୍ଦକରି ସେରେଣ୍ଡର ଘୋଷଣା କରିବା ଉଚିତ ହେବ ।" ଏହି ସିଦ୍ଧାନ୍ତ ପ୍ରକାରେ ପ୍ରତି ରଣକ୍ଷେତ୍ରର ସେନାପତିଙ୍କ ନିକଟକୁ ସେରେଣ୍ଡର ହେବାପାଇଁ ବାର୍ତ୍ତା ପ୍ରେରଣ କରାଗଲା । କିନ୍ତୁ ସେନାପତି ଓ ସେନାମାନେ ଏଥିରେ ରାଜି ହୋଇନଥିଲେ ।

ସେତେବେଳେ ଜାପାନ ପକ୍ଷରୁ ମଧ୍ୟ ସିଦ୍ଧାନ୍ତ ନିଆ ଯାଇଥିଲା ଯେ, ସେମାନେ ଯିବା ପୂର୍ବରୁ ବ୍ରହ୍ମଦେଶର ରାଜଧାନୀ ରେଙ୍ଗୁନ ସହରକୁ ଧ୍ୱଂସ କରିବା ପାଇଁ ସେଠାରେ ଶେଷ ସଂଗ୍ରାମ ଚଳାଇବେ । କାରଣ ତତ୍କାଳୀନ ବର୍ମା ନେତା ଓ ସେନାପତି ଜେନେରାଲ ଆଙ୍ଗସାନ୍, ଯିଏ କି ପ୍ରଥମେ ବ୍ରିଟିଶ ବିରୁଦ୍ଧରେ ଉକ୍ତ ଜାପାନୀମାନଙ୍କୁ ପଥ କଢ଼ାଇ ବ୍ରହ୍ମଦେଶକୁ ଆଣିଥିଲେ, ପରବର୍ତ୍ତୀକାଳେ ସିଏ ପୁଣି ଜାପାନକୁ ତଡ଼ିବା ପାଇଁ ଇଂରେଜମାନଙ୍କୁ ଡାକି ଆଣି ସ୍ୱାଗତ ଜଣାଇଥିଲେ । ଏଥିରେ ଜାପାନୀମାନଙ୍କର କ୍ରୋଧ ବଢ଼ିଥିଲା । ସେମାନଙ୍କର ଶେଷ ସିଦ୍ଧାନ୍ତ ଜାଣିପାରି ରେଙ୍ଗୁନସ୍ଥ ଭାରତୀୟ ନେତା ଏଲ୍. ଏ. ଲଠିଆ ଓ ସୁନ୍ଦର ମୁଦାଲିଅର ପ୍ରମୁଖଙ୍କ ନେତୃତ୍ୱରେ ଦଳେ ବିଶିଷ୍ଟ ଭାରତୀୟ ନାଗରିକ ଯାଇ ନେତାଜୀଙ୍କୁ ଅନୁରୋଧ କରିଥିଲେ ଯେ, "—ରେଙ୍ଗୁନ ସହର ଭିତରେ ଯେପରି ଶେଷ ଯୁଦ୍ଧ ନହୁଏ । କାରଣ ସହରର ଅଧିକାଂଶ ବାସିନ୍ଦା ଭାରତୀୟ, ଯୁଦ୍ଧ ହେଲେ ସେମାନେ ସବୁ ଧ୍ୱଂସ ପ୍ରାପ୍ତ ହୋଇଯିବେ । ଏହାପରେ ନେତାଜୀଙ୍କ ପରାମର୍ଶ କ୍ରମେ ଜାପାନୀମାନେ ନିଜର ସିଦ୍ଧାନ୍ତ ପରିବର୍ତ୍ତନ କରି ରେଙ୍ଗୁନ ଠାରୁ ୫୦ ମାଇଲ ଦୂର ଉତ୍ତରରେ ଅବସ୍ଥିତ 'ଟାନାଧାନ୍ ପାହାଡ଼' ଅଞ୍ଚଳକୁ ହଟିଯାଇ ସମାବେଶ ହେଲେ । ୧୯୪୫ ଏପ୍ରିଲ ୧୪ ତାରିଖ ଦିନ ଜାପାନୀ ସେନା ବ୍ରିଟିଶ ବାହିନୀ ସହିତ ଦୀର୍ଘ ଦଶଦିନ ଭୀଷଣ ଯୁଦ୍ଧକରି, ପରିଶେଷରେ ଏପ୍ରିଲ ୨୩ ତାରିଖ ଦିନ ସମ୍ପୂର୍ଣ୍ଣ ଭାବେ ପରାସ୍ତ ହୋଇ ନିଜ ଦେଶ ଅଭିମୁଖେ ଫେରିଗଲେ । ବାକି କେତେକ ଜାପାନୀ ସୈନ୍ୟ ବ୍ରିଟିଶ ହାତରେ ବନ୍ଦୀ ହୋଇଥିଲେ । ଜାପାନୀମାନଙ୍କ ପକ୍ଷରୁ ବ୍ରହ୍ମଦେଶରେ ଏହାଥିଲା ତାଙ୍କର ଶେଷ ଯୁଦ୍ଧ ।

ଏହାପରେ ନେତାଜୀ ନିଷ୍ପତ୍ତି କଲେ ଯେ, ଯେତେ ବଡ଼ ବାଧାବିଘ୍ନ ଆସିଲେ ମଧ୍ୟ, ନିଜର ମନ୍ତ୍ରିମଣ୍ଡଳ ଓ ଆଜାଦହିନ୍ଦ ଫୌଜଙ୍କୁ ଯୁଦ୍ଧର ମୃତ୍ୟୁ ମୁଖରେ ଛାଡ଼ିଦେଇ ସେ କଦାପି ବ୍ରହ୍ମଦେଶ ତ୍ୟାଗକରି ଅନ୍ୟତ୍ର ଯିବେନାହିଁ । ନେତାଜୀଙ୍କର ଏହି ନିଷ୍ପତ୍ତି କଥା ଜାଣିବା ପରେ ଆଜାଦହିନ୍ଦ ମନ୍ତ୍ରିମଣ୍ଡଳ ଭିତରେ ପ୍ରବଳ ଆଲୋଡ଼ନ ସୃଷ୍ଟି ହେଲା । ସେମାନେ ମିଳିତ ଭାବେ ନେତାଜୀଙ୍କୁ ଅନୁରୋଧ କଲେ ଯେ, "—ଆପଣ ଯେ କୌଣସି ମତେ ଏଠାରୁ ଚାଲିଯାଇ ନିଜର ଆତ୍ମଗୋପନ କରିବାକୁ ହେବ । ବିଶେଷ କରି କର୍ଣ୍ଣେଲ୍ ବରହାନୁଦ୍ଦିନ ବିନମ୍ର ହୋଇ ନେତାଜୀଙ୍କୁ ପ୍ରାର୍ଥନା କରି କହିଲେ,"—ନେତାଜୀ ! ଆପଣ ଦୟାକରି ଆମମାନଙ୍କର ଶେଷ ନିଷ୍ପତ୍ତି ମାନି ନିଅନ୍ତୁ । କାରଣ, ଆମପରି ଲକ୍ଷ ଲକ୍ଷ ଲୋକ ମରି ମିଶିଗଲେ ମଧ୍ୟ ବିଶେଷ କିଛି କ୍ଷତି ହେବନାହିଁ, କିନ୍ତୁ ଆପଣଙ୍କ ପରି ଜଣେ ନେତା ବଞ୍ଚିଥିଲେ, ଭାରତର ସ୍ୱାଧୀନତା ଯୁଦ୍ଧ ପାଇଁ ପୁଣି କୋଟି କୋଟି ଫୌଜ ତିଆରି କରିପାରିବେ । ଏଣୁ ଆପଣ ଆମ ମନ୍ତ୍ରୀଙ୍କର ନିବେଦନ ଓ ଅନୁରୋଧ ରକ୍ଷାକରି ଯଥା ଶୀଘ୍ର ଏଠାରୁ ସ୍ଥାନ ପରିବର୍ତ୍ତନ କରି ଚାଲିଯାଆନ୍ତୁ ।" ଶେଷକୁ ନେତାଜୀ ବଡ଼ କଷ୍ଟର ସହିତ ନିଜର ସିଦ୍ଧାନ୍ତ ପରିବର୍ତ୍ତନ କରିବାକୁ ବାଧ୍ୟ ହୋଇଥିଲେ । ଏବଂ ବ୍ରହ୍ମଦେଶସ୍ଥ ଆଜାଦହିନ୍ଦ ସରକାରଙ୍କ ସମସ୍ତ ଭାର ମେଜର ଜେନେରାଲ ଲୋକନାଥନଙ୍କ ହସ୍ତରେ ଅର୍ପଣ କରି ସେ ଆଦେଶ ଦେଇଥିଲେ ଯେ, "—ଶତ୍ରୁ ପକ୍ଷ ନିକଟରେ ଆତ୍ମସମର୍ପଣ ସମୟେ ଜାତୀୟ ବାହିନୀ ଜଓ୍ୱାନମାନଙ୍କର ଆତ୍ମ ସମ୍ମାନରେ ଯେପରି ଆଞ୍ଚ ନ' ଆସେ ତାର ବ୍ୟବସ୍ଥା କରିବ ।" ବିଶେଷତଃ ରେଙ୍ଗୁନ ସହରକୁ ମିତ୍ର ଶକ୍ତି ସମ୍ପୂର୍ଣ୍ଣ ଭାବେ ଦଖଲ ନେବା ପର୍ଯ୍ୟନ୍ତ ସହରସ୍ଥ ଭାରତୀୟମାନଙ୍କର ଧନ ଜୀବନ ତଥା ଶାନ୍ତି ଶୃଙ୍ଖଳା ଯେପରି ବଜାୟ ରହିବ ସେଥିପାଇଁ ନେତାଜୀ ଥିଙ୍ଗାଜୁନ୍‌ସ୍ଥ ସ୍ପେଶିଆଲ କ୍ୟାମ୍ପ କମାଣ୍ଡର କର୍ଣ୍ଣେଲ ଜୀବନ ସିଂହଙ୍କ ଉପରେ ଭାର ନ୍ୟସ୍ତ କରି ବ୍ରହ୍ମଦେଶ ଛାଡ଼ିବା ପାଇଁ ସେ ପ୍ରସ୍ତୁତ ହେଲେ ।

ବ୍ରହ୍ମଦେଶ ତ୍ୟାଗ କରିବା ପୂର୍ବରୁ ନିଜ ମନ୍ତ୍ରିମଣ୍ଡଳର ନିଷ୍ପତ୍ତି କଥା ଘୋଷଣା କରି, ନେତାଜୀ ଆଜାଦହିନ୍ଦ ଫୌଜ ଉଦ୍ଦେଶ୍ୟରେ ଯେଉଁ ଶେଷ ବାର୍ତ୍ତା ଶୁଣାଇଥିଲେ ତାହା ଅତୀବ କରୁଣ ତଥା ଦୁଃଖଦାୟକ ଥିଲା । ସେ କହିଥିଲେ —"ବର୍ମିଜ ଭାଇ, ପ୍ରବାସୀ ଭାରତୀୟ ବନ୍ଧୁଗଣ ତଥା ମୋର ପ୍ରିୟ ଆଜାଦହିନ୍ଦ ଫୌଜର ସାଥୀ ଭାଇମାନେ ! ଇମ୍ଫାଲ, କୋହିମା ତଥା ବର୍ମାର ଏହି ରଣକ୍ଷେତ୍ରରେ ଯେଉଁଠି ଦଣ୍ଡାୟମାନ ହୋଇ ଆପଣମାନେ ଏକ ବର୍ଷରୁ ଊର୍ଦ୍ଧ୍ୱ ସମୟ ଅର୍ଥାତ୍ ୧୯୪୪ ଫେବୃୟାରୀଠାରୁ ଏ ଯାଏଁ, ଦୁର୍ଗମ ବଣ, ଜଙ୍ଗଲ ପାହାଡ଼ରେ ରହି, ଦେଶର ସ୍ୱାଧୀନତା ସକାଶେ ଅନବରତ ଯୁଦ୍ଧ କରି ଚାଲିଛନ୍ତି, ଆଜି ଗମ୍ଭୀର

ଦୁଃଖ ଓ ମନୋବେଦନା ସହ ମୋତେ ସେହି ଯୁଦ୍ଧକ୍ଷେତ୍ରରୁ ବିଦାୟ ନେବାକୁ ପଡ଼ୁଛି । ଆମ ସ୍ୱାଧୀନତା ଯୁଦ୍ଧର ପ୍ରଥମ ଅଭିଯାନ ବିଫଳ ହୋଇଛି ସତ; କିନ୍ତୁ ଏଭଳି ସୁଯୋଗ ଆମେ ପୂର୍ବରୁ କେବେ ପାଇନଥିଲେ । ଏହା ହେଉଛି ମୋ ଜୀବନରେ ସ୍ୱାଧୀନତା ଯୁଦ୍ଧର ପ୍ରଥମ ଚରଣ । କିନ୍ତୁ ଆମକୁ ବାରଂବାର ଏହି ଅଭିଯାନ ଚଳାଇ ଯିବାକୁ ହେବ । ମୁଁ ଜନ୍ମରୁ ଆଶାବାଦୀ—ପରାଜୟ କେବେ ହେଲେ ମାନି ନେଇପାରିବି ନାହିଁ । ଆପଣମାନଙ୍କର ଅସୀମ ସାହାସ ତଥା ଚରମ ତ୍ୟାଗର ବୀରତ୍ୱ କାହାଣୀ ଭାରତର ସ୍ୱାଧୀନତା ଯୁଦ୍ଧର ଇତିହାସରେ ଚିର ଅମର ହୋଇ ରହିବ ।" —ଇନ୍‌କିଲାବ ଜିନ୍ଦାବାଦ, ଅଜାଦହିନ୍ଦ୍ ଜିନ୍ଦାବାଦ— ଜୟହିନ୍ଦ ।"

ପରଦିନ ନେତାଜୀ ଥାଇଲ୍ୟାଣ୍ଡର ରାଜଧାନୀ ବ୍ୟାଙ୍କକ୍ ଅଭିମୁଖେ ଯାତ୍ରାକଲେ । ଯିବା ସମୟରେ ନିଜର ବଡ଼ିଗାର୍ଡ ସମେତ ୧୫୦ ଜଣ ସୈନ୍ୟ, ଝାନ୍‌ସୀ ରାଣୀ ବାହିନୀର ୫୦ ଜଣ ବୀରାଙ୍ଗନା ତଥା ଆଜାଦ ହିନ୍ଦ୍ ବ୍ୟାଙ୍କରେ ପୂର୍ବରୁ ଗଚ୍ଛିତ ଥିବା ସୁନା, ହୀରା ଓ ଅଳଙ୍କାର ପ୍ରଭୃତି ଅତି ମୂଲ୍ୟବାନ ଓ ଦୁର୍ଲ୍ଲଭ ଜିନିଷ ଯାହାର କି, ସେତେବେଳର ଅନୁମାନିକ ମୂଲ୍ୟ ହେବ ପ୍ରାୟ ୮୦ କୋଟି ଟଙ୍କା, ଏ ସବୁ କେତେଗୋଟି ବାକ୍ସରେ ପ୍ୟାକ୍ ହୋଇଥିଲା । ଉପରୋକ୍ତ ସମସ୍ତ ଜିନିଷ ସଙ୍ଗରେ ନେଇ ଦୁର୍ଗମ ପଥ ଅତିକ୍ରମ କରି ଦୀର୍ଘ ୧୮ ଦିନ ପରେ ନେତାଜୀ ଥାଇଲାଣ୍ଡ ରାଜଧାନୀ ବ୍ୟାଙ୍କକ୍‌ରେ ପହଞ୍ଚିଥିଲେ । ଏହା ପରେ ପରେ ଆଜାଦହିନ୍ଦ୍ ସରକାରଙ୍କ ହେଡ଼କ୍ୱାର୍ଟର ମଧ୍ୟ ରେଙ୍ଗୁନରୁ ଥାଇଲ୍ୟାଣ୍ଡକୁ ଉଠାଇ ନିଆଯାଇଥିଲା ।

୧୯୪୫ ମଇ ମାସ ମଧ୍ୟଭାଗରେ ଇଂରେଜବାହିନୀ ରେଙ୍ଗୁନ୍ ସହରକୁ ଅବରୋଧ କଲେ । ସେତେବେଳେ ଆଜାଦହିନ୍ଦ୍ ସରକାରଙ୍କ ଭାରପ୍ରାପ୍ତ ସେନାପତି ମେଜର ଜେନେରେଲ ଲୋକନାଥନ୍ ଜାପାନୀବାହିନୀର ଆତ୍ମସମର୍ପଣ ବାର୍ତ୍ତା ନେଇ ବ୍ରହ୍ମଦେଶ ରଣାଙ୍ଗନର ବ୍ରିଟିଶବାହିନୀ ସେନାପତିଙ୍କ ନିକଟକୁ ଯାଇଥିଲେ । ଇଂରେଜ ସେନାପତି କହିଲେ, "ଜାପାନୀବାହିନୀ ରେଙ୍ଗୁନ ସହରରେ ଶାନ୍ତିଶୃଙ୍ଖଳା ରକ୍ଷାକରି ନିଜ ନିଜ ଜାଗାରେ ରହିଥାନ୍ତୁ" ବୋଲି ଆଦେଶ ଦେଇଥିଲେ । ଫଳରେ ଦୀର୍ଘ ୧୩ ଦିନ ପର୍ଯ୍ୟନ୍ତ ଜାପାନୀବାହିନୀ ରେଙ୍ଗୁନ ସହରକୁ ଶାସନ କରି ପରବର୍ତ୍ତୀକାଳେ ବ୍ରିଟିଶ ସେନାଧ୍ୟକ୍ଷଙ୍କ ନିର୍ଦ୍ଦେଶରେ ବିଭିନ୍ନ ଯୁଦ୍ଧବନ୍ଦୀ ଶିବିରକୁ ଚାଲିଯାଇଥିଲେ ।

ନେତାଜୀ ସଦଳବଳେ ଥାଇଲେଣ୍ଡର ରାଜଧାନୀ ବ୍ୟାଙ୍କକ୍‌ରେ ପହଞ୍ଚି, ଅଳ୍ପ କିଛିଦିନ ବିଶ୍ରାମ ନେବାପରେ ପୁଣି ସେଠାରୁ ସଙ୍ଗରେ ଥିବା ଝାନସୀରାଣୀ

ବାହିନୀର ୫୦ ଜଣ ସୈନିକା ଓ ୫୦ ଜଣ ସୈନ୍ୟଙ୍କୁ ସାଥିରେ ନେଇ ସିଙ୍ଗାପୁର ଅଭିମୁଖେ ଯାତ୍ରାକଲେ । ୧୯୪୫ ଜୁଲାଇ ୮ ତାରିଖ ଦିନ ନେତାଜୀ ଆଜାଦହିନ୍ଦ୍ ଫୌଜ ସ୍ମୃତିସ୍ତମ୍ଭର ଭିତ୍ତିପ୍ରସ୍ତର ସିଙ୍ଗାପୁର ବେଳାଭୂମିରେ ସ୍ଥାପନ କରିଥିଲେ । ସ୍ମୃତିସ୍ତମ୍ଭଟି ଉଲ୍ଲେଖନୀୟ ସମୟ ଭିତରେ ସମ୍ପୂର୍ଣ୍ଣ ହୋଇଥିଲା । ସେହି ସ୍ତମ୍ଭ ନିକଟରେ ନେତାଜୀ ଦଣ୍ଡାୟମାନ ହୋଇ ଆଜାଦହିନ୍ଦ୍ ଫୌଜର ସୈନ୍ୟମାନଙ୍କୁ ସମ୍ମାନ ଅର୍ପଣ କରି କହିଥିଲେ— "ଭାରତର ଭବିଷ୍ୟତ ବଂଶଧରମାନେ ଯେଉଁମାନେ କି କ୍ରୀତଦାସ ଭାବେ ଜନ୍ମ ନ'ହୋଇ ଜନ୍ମହେବେ ମୁକ୍ତ ମାନବ ଭାବେ ସେମାନେ ଆପଣ ମାନଙ୍କ ଅସୀମ ତ୍ୟାଗ ପାଇଁ ଆପଣମାନଙ୍କୁ କୃତଜ୍ଞତା ଅର୍ପଣ କରିବେ ଏବଂ ପୃଥିବୀ ବାସୀଙ୍କୁ ଗର୍ବର ସହିତ ଜଣାଇ ଦେବେ ଯେ, ସେମାନଙ୍କ ବଂଶଧରମାନେ ମଣିପୁର, ଆସାମ ଓ ବର୍ମାରେ ଯୁଦ୍ଧ କରି ପରାଜୟ ସ୍ୱୀକାର କରିଥିଲେ ହେଁ, ଏହି ସାମୟିକ ଅସଫଳତା ଜରିଆରେ ସେମାନେ ଚରମ ବିଜୟ ଓ ଗୌରବରପଥ ପରିଷ୍କାର କରିଥିଲେ ।"

ଏଠାରେ ଉଲ୍ଲେଖ ଯୋଗ୍ୟ ଯେ, ପରବର୍ତ୍ତୀକାଳେ ବ୍ରିଟିଶ ପକ୍ଷ ଉକ୍ତ ଦ୍ୱୀପଟି ଦଖଲ ନେବା ପରେ ପରେ ସେହି ଶହୀଦ ସ୍ମୃତି ସ୍ତମ୍ଭଟି ନଷ୍ଟ କରି ଦେଇଥିଲେ ।

ଏହାପରେ ନେତାଜୀ ଝାନସୀରାଣୀ ବାହିନୀର ସୈନିକାମାନଙ୍କୁ ସିଙ୍ଗାପୁର ନିକଟ କୋଲାଲମ୍ପୁର ଠାରେ ଛାଡ଼ିଦେଇ ସେଠାରୁ ପୁଣି ସିଙ୍ଗାପୁର ଫେରିଆସି, ସେ ଆଜାଦହିନ୍ଦ ସରକାରଙ୍କ ମନ୍ତ୍ରୀମଣ୍ଡଳର କେତେଜଣ ପ୍ରମୁଖ ସଦସ୍ୟ ଓ ବରିଷ୍ଠ ପରାମର୍ଶ ଦାତାମାନଙ୍କ ସଙ୍ଗରେ ଗମ୍ଭୀର ଆଲୋଚନା କରିଥିଲେ । ଏହାଥିଲା ନେତାଜୀଙ୍କର ଶେଷ ଆଲୋଚନା । ଯେତେ ଦୂର ସମ୍ଭବ ଏହି ଆଲୋଚନାର ବିଷୟ ବସ୍ତୁ କେବଳ ତାଙ୍କର ଆତ୍ମଗୋପନ କରିବା ସମ୍ବନ୍ଧେ ଚୂଡ଼ାନ୍ତ ନିଷ୍ପତ୍ତି ହୋଇଥିଲା । କିନ୍ତୁ କିପରିଭାବେ ଓ କେଉଁଠି ସେ ଆତ୍ମଗୋପନ କରିବେ, ସେ ସମ୍ବନ୍ଧ ଭୁଲରେ ମଧ୍ୟ କାହାରିକୁ କିଛି ଜଣାଇ ଦିଆଯାଇନଥିଲା । ଉପରୋକ୍ତ ସମସ୍ତ ବିଷୟ ଠିକ୍ ହେବାପରେ, ୧୯୪୫ ଅଗଷ୍ଟ ୧୪ ତାରିଖ ଦିନ ନେତାଜୀ ସିଙ୍ଗାପୁର ଠାରୁ ଆଜାଦହିନ୍ଦ ଫୌଜ ଉଦ୍ଦେଶ୍ୟରେ ସେ ଯେଉଁ ଶେଷ ବାର୍ତ୍ତା ପଠାଇଥିଲେ ତାହା ଇଂରେଜୀରୁ ଅନୁବାଦ ହୋଇ ଏଠାରେ ପ୍ରଦତ୍ତ କରାଗଲା ଯଥା :—

## ନେତାଜୀଙ୍କର ସର୍ବଶେଷ ଆଦେଶ

ଆଜାଦହିନ୍ଦ ଫୌଜର ସର୍ବୋଚ୍ଚ ସେନାପତିଙ୍କର ସ୍ୱତନ୍ତ୍ର ନିର୍ଦ୍ଦେଶ ।

ପ୍ରାପ୍ତେଷୁ— ଆଜାଦହିନ୍ଦ ଫୌଜର ପଦାଧିକାରୀ ଓ ସୈନିକ ବୃନ୍ଦ,

ବନ୍ଧୁଗଣ,

ଶୋନାନ୍ (ସିଙ୍ଗାପୁର) ଓ ଅନ୍ୟ ସ୍ଥାନମାନଙ୍କରେ ସବୁ ପ୍ରକାର ବଦର୍ଯ୍ୟ ଗୁଜବ ବର୍ତ୍ତମାନ ପ୍ରଚ୍ଛରିତ ହେଉଛି । ତନ୍ମଧ୍ୟରେ ଶତ୍ରୁ ଚାର ଅବସାନ ହୋଇଛି— ଏହି ଗୁଜବ ଅନ୍ୟତମ । ଅଧିକାଂଶ ଗୁଜବ ହୁଏତ ମିଥ୍ୟା କିମ୍ବା ମାତାଧିକ୍ୟଭାବେ ଅତିରଞ୍ଜିତ । ବର୍ତ୍ତମାନ ମଧ୍ୟ ସବୁ କ୍ଷେତ୍ରରେ ଯୁଦ୍ଧ ଚାଲୁ ରହିଛି । କେବଳ ବନ୍ଧୁତ୍ୱପୂର୍ଣ୍ଣ ସୂତ୍ରରୁ ପ୍ରାପ୍ତ ଖବରକୁ ଉତ୍ତିକର ନୁହେଁ ଶତ୍ରୁ-ବେତାର ଯନ୍ତ୍ରରୁ ପ୍ରାପ୍ତ ଖବରକୁ ଉତ୍ତିକର ମୁଁ ଏହା କହୁଛି । ଯଦି ଯୁଦ୍ଧ ପରିସ୍ଥିତିରେ କିଛି ପରିବର୍ତ୍ତନ ହୁଏ ମୁଁ ପ୍ରଥମେ ଆପଣମାନଙ୍କୁ ଜଣାଇବି । ତେଣୁ ମୁଁ ଚାହେଁ, ଆପଣମାନେ ସମସ୍ତେ ପୂର୍ବପରି ଶାନ୍ତ ଓ ଅବିଚଳିତ ରହନ୍ତୁ ଏବଂ ସ୍ୱାଭାବିକ ଭାବେ ନିଜର କର୍ତ୍ତବ୍ୟ କରନ୍ତୁ । ସର୍ବୋପରି ସ୍ଥାନ, ଦେଖନ୍ତୁ ଗୁଜବ ଦ୍ୱାରା କୌଣସି ପ୍ରକାରେ ପ୍ରଭାବିତ ହେବାପାଇଁ ନିଜକୁ ସୁଯୋଗ ଦିଅନ୍ତୁ ନାହିଁ । ଆଇ ସୈନିକମାନେ ସେମାନଙ୍କର ମାତୃଭୂମିର ସ୍ୱାଧୀନତାପାଇଁ ଲଢ଼ିବାପରି ଯେ କୌଣସି ପରିସ୍ଥିତି ଉପୁଜିଲେ ମଧ୍ୟ ଆମ୍ଭମାନଙ୍କୁ ଦମ୍ଭଶୀଳ ହେବାକୁ ହେବ । ଜୟହିନ୍ଦ୍ ।

ଶୋନାନ
୧୪-୮-୧୯୪୫
ଘ. ୧୫-୦୦

ସୁଭାଷ ଚନ୍ଦ୍ର ବୋଷ
ସର୍ବୋଚ୍ଚ ସେନାପତି
ଆଜାଦହିନ୍ଦ ଫୌଜ

ଏହାପରେ ନେତାଜୀ ସିଙ୍ଗାପୁର ଠାରୁ ଫେରି ପୁଣି ଥାଇଲ୍ୟାଣ୍ଡ ରାଜଧାନୀ ବ୍ୟାଙ୍କକକୁ ଆସିଥିଲେ । ୧୯୪୫ ଅଗଷ୍ଟ ୧୭ ତାରିଖ ଦିନ ବ୍ୟାଙ୍କକ୍ ଠାରୁ ଉଡ଼ାଜାହାଜ ଯୋଗେ ସେ ସାଇଗନ୍ ଯାଇଥିଲେ ଅପରାହ୍ଣ ୨ ଘଣ୍ଟା ସମୟରେ ସେଠାରେ ଓହ୍ଲାଇଥିଲେ । କିନ୍ତୁ ସାଇଗନ ଠାରୁ ସେ କେବେ, କେଉଁ ସମୟରେ ଓ କେଉଁଠାକୁ ଗଲେ ? ସେ ସମ୍ବନ୍ଧେ କୌଣସି ସଠିକ ଖବର କିଛି ଜଣା-ପଡ଼ିନାହିଁ । ବ୍ୟାଙ୍କକରୁ ସାଇଗନ ବିମାନ ବନ୍ଦର ପର୍ଯ୍ୟନ୍ତ କେବଳ ନେତାଜୀଙ୍କର ପ୍ରତି ଛବି ଦେଖିବାକୁ ମିଳେ, କିନ୍ତୁ ତା ପରବର୍ତ୍ତୀ କାଳ ଘଟଣାର କୌଣସି ବିଶ୍ୱାସ ଯୋଗ୍ୟ ଛବି ଦେଖିବାକୁ ମିଳିନାହିଁ ।

## ମୃତ୍ୟୁ ସମ୍ବାଦ

ଏହାପରେ ପରେ ୧୯୪୫ ଅଗଷ୍ଟ ୨୩ ତାରିଖ ଦିନ ଜାପାନର ଡୋମେଇ ନ୍ୟୁଜ୍ ଏଜେନ୍ସି ସର୍ବ ପ୍ରଥମେ ନେତାଜୀଙ୍କର ମୃତ୍ୟୁ ସମ୍ବାଦ ପରିବେଷଣ କଲା ଯେ—"ଅଗଷ୍ଟ ୧୮ ତାରିଖ ଦିନ ଅପରାହ୍ଣ ୩ ଘଣ୍ଟା ସମୟରେ ତାଇପେଇ ବିମାନ

ବନ୍ଦରରେ ଆଜାଦହିନ୍ଦ ଫୌଜର ସର୍ବାଧିନାୟକ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କର ବିମାନ ଦୁର୍ଘଟଣାରେ ମୃତ୍ୟୁ ଘଟିଛି ।”

ଘଟଣାର ବିଷଦ ବିବରଣୀ ନିମ୍ନ ପ୍ରକାର ଥିଲା ଯଥା “—ଗୋଟିଏ ଜାପାନୀ ସୈନିକ ବିମାନରେ ସୁଭାଷ ଚନ୍ଦ୍ର ବୋଷ ତାଙ୍କର ଦେହରକ୍ଷୀ ହବିବୁର ରହମନଙ୍କୁ ସଙ୍ଗରେ ନେଇ ସାଇଗନରୁ ସନ୍ଧ୍ୟା ୫ଟା ସମୟରେ ଟୋକିଓ ଅଭିମୁଖେ ଯାତ୍ରା କରୁଥିଲେ । ଉକ୍ତ ବିମାନରେ କେତେକ ଜାପାନୀ ସାମରିକ ଅଫିସର ମାନିଲାରୁ ମଞ୍ଚୁରିଆ ଯିବାପାଇଁ ବସିଥିଲେ । ବିମାନଟି ସନ୍ଧ୍ୟା ସାଢ଼େ ସାତଟା ସମୟରେ ତାଇରେନ୍ ବିମାନଘାଟିରେ ପହଞ୍ଚିବା ପରେ, ସେଦିନ ରାତି ସେଠାରେ ବିଶ୍ରାମ ନେଇଥିଲେ । ପରଦିନ ସକାଳେ ତାଇରେନ୍‌ରୁ ପୁଣି ବିମାନ ଯାତ୍ରା କରି ତାଇପେଇ ବିମାନ ବନ୍ଦରରେ ପହଞ୍ଚିଥିଲା । ସେଠାରେ ବିମାନରେ ତେଲ ଭର୍ତ୍ତି ବେଳେ ଇଞ୍ଜିନରେ ଯାନ୍ତ୍ରିକ ଗୋଳମାଳ ଥିବା କଥା ଜଣାପଡ଼ିବାରୁ ସଙ୍ଗେ ସଙ୍ଗେ ବିମାନର ମରାମତି ହୋଇଥିଲା । ଅପରାହ୍ଣ ଅଢ଼େଇଟା ବେଳେ ପୁଣି ବିମାନ ଯାତ୍ରା କଲା, ଭୂମି ଉପରୁ ୩ଶହ ଫୁଟ ଉପରକୁ ଉଠିବା ପରେ ହଠାତ୍ ଜାହାଜର ଇଞ୍ଜିନ୍‌ରେ ନିଆଁ ଲାଗି ଜଳିଥିଲା ଏବଂ ଜ୍ୱଳନ୍ତ ଅବସ୍ଥାରେ ୩ ଖଣ୍ଡ ହୋଇ ତଳେ ପଡ଼ିଯାଇଥିଲା । ଏଥିରେ ପାଇଲଟ ଓ ଜାପାନୀ ଜେନେରାଲ ସିଡାଇଙ୍କର ଘଟଣା ସ୍ଥଳରେ ମୃତ୍ୟୁ ହୋଇଥିଲା । ଅନ୍ୟମାନେ ଗୁରୁତର ଭାବେ ଆହତ ହୋଇଥିଲେ । ନେତାଜୀଙ୍କର ତାଳୁ ଓ ଛାତିରେ ଶକ୍ତ ଆଘାତ ଲାଗିବା ସଙ୍ଗେ ସଙ୍ଗେ ତାଙ୍କର ସର୍ବାଙ୍ଗ ଶରୀର ପୋଡ଼ିଯାଇଥିଲା । ସେତେବେଳେ କର୍ଣ୍ଣେଲ୍ ହବିବୁର ରହମାନ ନେତାଜୀଙ୍କ ପୋଷାକରୁ ନିଆଁ ଲିଭାଇବା ପାଇଁ ବହୁ ଚେଷ୍ଟା କରି ବିଫଳ ହୋଇଥିଲେ । ରହମନଙ୍କ ଦେହରେ ମଧ୍ୟ ଆଘାତ ଲାଗିଥିଲା ଏବଂ ହାତ ଓ ଫିତାର କିଛି ଅଂଶ ପୋଡ଼ି ଯାଇଥିଲା ।

ଏହି ଘଟଣା ଘଟିବା ସଙ୍ଗେ ସଙ୍ଗେ ଯଥାଶୀଘ୍ର ନେତାଜୀ ଓ ଅନ୍ୟମାନଙ୍କୁ ତାଇପେଇର ଗୋଟିଏ ସୈନିକ ହସ୍ପିଟାଲ୍‌କୁ ନେଇ ଚିକିତ୍ସା କରାଯାଇଥିଲା । ସେତେବେଳେ ନେତାଜୀଙ୍କ ସର୍ବାଙ୍ଗରେ ଏପରି ଭାବେ ପଟି ବାନ୍ଧି ରଖାଯାଇଥିଲା ଯେ, ତାଙ୍କୁ ସୁଭାଷ ଚନ୍ଦ୍ର ବୋଲି ଚିହ୍ନିବା ସହଜ ନଥିଲା । ଏପରି ଅବସ୍ଥାରେ ତାଙ୍କ ଦେହରେ ଏକଶତ ଶିଶି ରକ୍ତ ଦିଆ ଯାଇଥିଲା । କିନ୍ତୁ ଅବସ୍ଥାର କିଛି ପରିବର୍ତ୍ତନ ନ ଘଟି କିଛି ସମୟ ପରେ ତାଙ୍କର ପ୍ରାଣବାୟୁ ଉଡ଼ି ଯାଇଥିଲା । ଏହାପରେ ନେତାଜୀଙ୍କର ଶବ ସତ୍କାର କରି ତାଙ୍କର ଚିତାଭସ୍ମ ଟୋକିଓର ରେନେକୋଜୀ’ ମନ୍ଦିରରେ ରଖାଯାଇଥିବା କଥା ଘୋଷଣା କରାଯାଇଥିଲା । କିନ୍ତୁ ସେଠାରେ କେଉଁମାନେ ଏହି ଶବ ସତ୍କାର କରିଥିଲେ ? ଏହା କିଛି ଉଲ୍ଲେଖ ନଥିଲା । ଯେ ଯାହା ହେଉ, ଏତେ ବଡ଼ ଦୁର୍ଘଟଣାରେ ସମସ୍ତେ

ମରି ମିଶିଗଲେ । କେବଳ ଜଣେ ମାତ୍ର ବ୍ୟକ୍ତି ବଞ୍ଚି ରହିଥିଲେ, ସେ ହେଉଛନ୍ତି କର୍ଣ୍ଣେଲ ହବିବୁର ରହମନ । ଯିଏକି ପରବର୍ତ୍ତି କାଳେ ଭାରତକୁ ଆସି ମହାତ୍ମା ଗାନ୍ଧିଜୀଙ୍କ ନିକଟରେ ଉପରୋକ୍ତ ସମସ୍ତ ଘଟଣାର ବୟାନ ଦେଇଥିଲେ । କିନ୍ତୁ ଗାନ୍ଧିଜୀ ସେତେବେଳେ ଏହାକୁ ବିଶ୍ୱାସ କରିନଥିଲେ ।

•

## ସରକାରୀ ଇସ୍ତାହାର

ଏହାର କିଛି ଦିନପରେ ପୁଣି ଇଂରେଜ ସରକାରଙ୍କ ତରଫରୁ ସରକାରୀ ଇସ୍ତାହାରରେ ପ୍ରକାଶ ପାଇଲା— "ଆଜ୍ଞାତ୍ପି ଆଜାଦହିନ୍ଦ୍ ସରକାରଙ୍କର କେତେ ଜଣ ବରିଷ୍ଠ ସଭ୍ୟ ଓ ଜାପାନ ସୈନ୍ୟ ବିଭାଗର କେତେକ ପଦସ୍ଥ କର୍ମଚାରୀଙ୍କ ସହିତ ସୁଭାଷ ଚନ୍ଦ୍ର ବୋଷ ସିଙ୍ଗାପୁରରୁ ଜାପାନକୁ ଗୋଟିଏ ଉଡ଼ାଜାହାଜରେ ଯାଉଥିଲେ । ଏହି ବିମାନ ଗୁଡିକ ଫରମୋଜା ଦ୍ୱୀପର ତାଇପେହ ବିମାନ ବନ୍ଦରରେ ଓହ୍ଲାଇଥିଲା । ତାଇପେହରୁ ପୁଣି ବିମାନ ଯାତ୍ରାବେଳେ, ସୁଭାଷ ଚନ୍ଦ୍ର ବୋଷ ଯେଉଁ ବିମାନରେ ଥିଲେ, ସେହି ବିମାନଟି ଉପରକୁ ଉଠିଲାବେଳେ, ଜାହାଜରେ ନିଆଁ ଲଗି, ତାହା ତଳକୁ ଖସିପଡି ଚୂରମାର ହୋଇଗଲା । ସେଥିରେ ସୁଭାଷ ଚନ୍ଦ୍ରଙ୍କର ଜାନୁ ଓ ଦେହରେ ଭୟଙ୍କର ଆଘାତ ଲଗି ଦେହସାରା ପୋଡି ଯାଇଥିଲା । ୧୯୪୫ ଅଗଷ୍ଟ ୧୮ ତାରିଖ ଦିନ ତାଇପେହସ୍ଥ ଜାପାନର ଗୋଟିଏ ହସପିଟାଲରେ ତାଙ୍କର ମୃତ୍ୟୁ ଘଟିଥିଲା । ଏଥିରେ କର୍ଣ୍ଣେଲ ହବିବୁର ରହମନ ସୁଭାଷ ଚନ୍ଦ୍ରଙ୍କ ସଙ୍ଗେ ଗୋଟିଏ ବିମାନରେ ଥିଲେ । ସେ ମଧ୍ୟ ଆଘାତ ପାଇଛନ୍ତି କିନ୍ତୁ ଦୈବାତ୍ ବଞ୍ଚିଗଲେ ।

## ପ୍ରଥମ ଅନୁସନ୍ଧାନ କମିଟି

ନେତାଜୀଙ୍କର ଏଭଳି ଆକସ୍ମିକ ବିମାନ ଦୁର୍ଘଟଣାରେ ମୃତ୍ୟୁ ହୋଇଥିବା କଥା ଶୁଣି, ଭାରତର ଜନ ସାଧାରଣ ଦୁଃଖରେ ମର୍ମାହତ ହୋଇ ପଡ଼ିଥିଲେ । କିନ୍ତୁ ପରବର୍ତ୍ତୀ କାଳେ ଏହି ସମ୍ବାଦକୁ ଭିତ୍ତିକରି ଲୋକଙ୍କ ମନରେ ଅବିଶ୍ୱାସ ଓ ଘୋର ସନ୍ଦେହ ଜାତ ହୋଇଥିଲା । ତେଣୁକରି ବିଳମ୍ବରେ ହେଲେ ସୁଦ୍ଧା ଜନତାର ସନ୍ଦେହ ମୋଚନ ପାଇଁ ଭାରତ ସରକାର ୧୯୫୬ ମସିହାରେ ଗୋଟିଏ ତିନିଜଣିଆ ଅନୁସନ୍ଧାନ କମିଟି ବସାଇଥିଲେ । ଉକ୍ତ କମିଟିର ଅଧ୍ୟକ୍ଷ ଓ ସଭ୍ୟଭାବେ ଯଥାକ୍ରମେ ମେଜର ଜେନେରଲ୍ ଶାହନୱାଜ ଖାଁ, ନେତାଜୀଙ୍କ ବଡଭାଇ ସୁରେଶ ଚନ୍ଦ୍ର ବୋଷ, ବାର୍-ଏଟ୍-ଲ ଓ ଏମ୍. ଏନ୍. ମଇତ୍ର ଆଇ. ସି. ଏସ୍‌ଙ୍କୁ ନିଯୁକ୍ତ ଦିଆଯାଇଥିଲା । ଏହି କମିଟି ନେତାଜୀଙ୍କ ମୃତ୍ୟୁ ସମ୍ବନ୍ଧେ ଅନୁସନ୍ଧାନ କରି, ପ୍ରକୃତ ତଥ୍ୟ ସରକାରଙ୍କ ନିକଟରେ ଉପସ୍ଥାପିତ କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଥିଲା । ଏଥିରେ କମିଟି ଅନୁସନ୍ଧାନ କରି, ଶେଷ ସିଦ୍ଧାନ୍ତରେ ଉପନୀତ ହୋଇଥିଲା ଯେ,

“—ବିମାନ ଦୁର୍ଘଟଣାରେ ନେତାଜୀଙ୍କର ନିଶ୍ଚିତ ମୃତ୍ୟୁ ଘଟିଛି ।” କିନ୍ତୁ କମିଟିର ଅନ୍ୟତମ ସଦସ୍ୟ ସୁରେଶ ଚନ୍ଦ୍ର ବୋଷ ଏଥିରେ ଏକମତ ନ'ହୋଇ ନିଜ ପଦରୁ ଇସ୍ତଫା ଦେଇଥିଲେ । ପରିଶେଷରେ ସରକାର କମିଟିର ଅନ୍ୟ ଦୁଇଜଣ ସଭ୍ୟଙ୍କର ମତକୁ ଗ୍ରହଣ କରି ତାହା ଅନୁମୋଦନ କରିଥିଲେ ।

## ଦ୍ୱିତୀୟ ତଦନ୍ତ କମିଶନ

ନେତାଜୀଙ୍କର ମୃତ୍ୟୁ ସମ୍ବନ୍ଧେ ପ୍ରଥମ ତଦନ୍ତ କମିଟି ରିପୋର୍ଟକୁ ସରକାର ମାନିନେଇଥିଲେ ମଧ୍ୟ ଜନ ସାଧାରଣ ତାହା ମାନିବା ପାଇଁ କୌଣସିମତେ ପ୍ରସ୍ତୁତ ନ'ଥିଲେ । ଏଣୁ ନେତାଜୀଙ୍କ ମୃତ୍ୟୁ ରହସ୍ୟ ପୁନଃ ତଦନ୍ତ କରିବା ପାଇଁ ୧୯୭୫ ମସିହାରେ ୩୫୦ ଜଣ ପାର୍ଲ୍ୟାମେଣ୍ଟ ସଦସ୍ୟ ମିଳିତଭାବେ ରାଷ୍ଟ୍ରପତି ଓ ପ୍ରଧାନମନ୍ତ୍ରୀଙ୍କ ନିକଟରେ ଅନୁରୋଧ ଜଣାଇଥିଲେ । ଫଳରେ ଭାରତ ସରକାର ୧୯୭୦ ମସିହାରେ ପଞ୍ଜାବ ହାଇକୋର୍ଟର ପୂର୍ବତନ ମୁଖ୍ୟ ବିଚାରପତି ମାନ୍ୟବର ଜି. ଡ଼ି. ଖୋସଲାଙ୍କୁ ଜଣକିଆ ତଦନ୍ତ କମିଶନଭାବେ ନିଯୁକ୍ତ କରିଥିଲେ । ଏଠାରେ ଅବଶ୍ୟ ଉଲ୍ଲେଖଯୋଗ୍ୟ ଘଟଣା ଏହି ଯେ, ସରକାରଙ୍କ ପକ୍ଷରୁ ଖୋସଲା କମିଶନ ନିଯୁକ୍ତ କଥା ଘୋଷଣା ହେବାପରେ, ପ୍ରଥମ ତଦନ୍ତ କମିଟିର ଅଧ୍ୟକ୍ଷ, ମେଜର ଜେନେରଲ ଶାହନୱାଜ୍ ଖାଁ, ସେତେବେଳେ ଦୃପ୍ତ କଣ୍ଠରେ ଘୋଷଣା କଲେ “—ଖୋସଲା କମିଶନ ଯଦି ନେତାଜୀ ଜୀବିତ ଅଛନ୍ତି ବୋଲି ପ୍ରମାଣ କରିଦେବେ, ତାହେଲେ ମୁଁ ଦେହରେ ପେଟ୍ରୋଲ ଢ଼ାଳି ହୋଇ ଜୀବନ୍ତ ଅବସ୍ଥାରେ ପୋଡିହୋଇ ମରିଯିବି ।” କିନ୍ତୁ ସେହି ସମୟରେ ଏପରି ଘୋଷଣାର କି ଆବଶ୍ୟକତା ଥିଲା ? ଅବଶ୍ୟ ପାଠକେ ତାହା ବିଚାର କରିବେ ।

ସେ ଯାହାହେଉ ନେତାଜୀଙ୍କ ମୃତ୍ୟୁ ରହସ୍ୟ ତଦନ୍ତକରି, ସତ୍ୟତା ଉଦ୍‌ଘାଟନ ପ୍ରକାଶେ ମାନ୍ୟବର ଖୋସଲା କମିଶନଙ୍କୁ ଭାରତ ସମେତ ଦକ୍ଷିଣ ପୂର୍ବ ଏସିଆର ବହୁଦେଶ ଓ ବିଭିନ୍ନ ସ୍ଥାନକୁ ଗସ୍ତ କରିବାକୁ ହୋଇଥିଲା । ଏହି କାର୍ଯ୍ୟରେ ସାହାଯ୍ୟ କରିବାପାଇଁ ତାଙ୍କ ସହିତ କେତେଜଣ ବିଶିଷ୍ଟ ଆଇନଜ୍ଞ ମଧ୍ୟ ସଜ ହୋଇଥିଲେ । କମିଶନ ଦୀର୍ଘ ୪ ବର୍ଷକାଳ ଅଜସ୍ର ପରିଶ୍ରମ କରି ସେହିସବୁ ଯାଗାରେ ୨୨୪ ଜଣଙ୍କ ଠାରୁ ସାକ୍ଷ୍ୟ ଗ୍ରହଣ କରିବା ସଙ୍ଗେ ସଙ୍ଗେ ବହୁ ଦଲିଲ ପତ୍ର ମଧ୍ୟ ଅନୁଧ୍ୟାନ କରିଥିଲେ । କିନ୍ତୁ ପୂର୍ବ ତଦନ୍ତ କମିଟିର ମତକୁ ଭିତ୍ତି କରି ଏହି କମିଶନ ୧୩୭ ପୃଷ୍ଠା ସମ୍ବଳିତ ନିଜର ସିଦ୍ଧାନ୍ତ ୧୯୭୦ ମସିହାରେ ଭାରତ ସରକାରଙ୍କୁ ଦେଇଥିଲେ । ଏଥିରେ ମଧ୍ୟ ତାଇପେଇ ବିମାନ ଦୁର୍ଘଟଣାରେ ନେତାଜୀଙ୍କର ସୁନିଶ୍ଚିତ ମୃତ୍ୟୁ ଘଟିଛି ବୋଲି ଖୋସଲା କମିଶନ ମତ ପ୍ରଦାନ କରିଥିଲେ ଏବଂ ସରକାର ମଧ୍ୟ ଏହାକୁ ଅନୁମୋଦନ କରିଥିଲେ ।

## କମିଶନ ଆଗରେ ସାକ୍ଷ୍ୟଦାନ ବ୍ୟକ୍ତିଙ୍କର ମତ

ତଦନ୍ତ କମିଶନ ଆଗରେ ଯେଉଁମାନେ ସାକ୍ଷ୍ୟ ଦେଇଥିଲେ ସେଥିମଧ୍ୟରୁ କେତେଜଣ ବିଭିନ୍ନ ପ୍ରକାର ମତ ବ୍ୟକ୍ତ କରିଥିଲେ ଯଥା— ପ୍ରକୃତରେ ସେଦିନ ତାଇପେହରେ କୌଣସି ବିମାନ ଦୁର୍ଘଟଣା ଘଟିନଥିଲା, ନେତାଜୀ ତାଇପେହରେ ପହଞ୍ଚି ସ୍ୱୟଂ ନିଜକୁ ନିଜେ ନିଖୋଜ ହୋଇଯାଇଥିଲେ, ଦୁର୍ଘଟଣା ଯଦିଓ ଘଟିଥିଲା ପ୍ରକୃତରେ ନେତାଜୀଙ୍କର ସେଥିରେ ମୃତ୍ୟୁ ଘଟିନଥିଲା ।" ଏହାଛଡ଼ା କାବୁଲରେ ନେତାଜୀଙ୍କର ଆଶ୍ରୟଦାତା ଓ ଖାସ ଅନ୍ତରଙ୍ଗ ବନ୍ଧୁ ଶ୍ରୀ ଉତ୍ତମ ଚାନ୍ଦ ମାଲ୍ହୋତ୍ରା ସାକ୍ଷ୍ୟଦେଇ କହିଲେ ଯେ, ନେତାଜୀଙ୍କର ମୃତ୍ୟୁ ଘଟିନାହିଁ । ବର୍ତ୍ତମାନ ସେ ପଶ୍ଚିମ ବଙ୍ଗର ଶୋଲମାରୀ ଆଶ୍ରମସ୍ଥିତ ସ୍ୱାମୀ ଶାରଦା ନନ୍ଦ ନାମରେ ଜୀବିତ ଅଛନ୍ତି । ଡା. ସତ୍ୟନାରାୟଣ ସିହ୍ନା ସାକ୍ଷଦେଇ କହିଥିଲେ ଯେ, ବିମାନ ଦୁର୍ଘଟଣାରେ ନେତାଜୀଙ୍କ ମୃତ୍ୟୁ କଥା ଯେପରି ଅବାସ୍ତବ ସେହିପରି ଅପପ୍ରଚାରମଧ୍ୟ । ସିଙ୍ଗାପୁରରୁ ସେ ଭୁଲରେ ସୁଦ୍ଧା ଟୋକିଓ ଅଭିମୁଖେ ଯାଇନଥିଲେ । ଶ୍ରୀ ଏସ, ଏସ, ଗୋସ୍ୱାମୀ ସାକ୍ଷ୍ୟଦେଇ ୧୯୫୨ ମସିହାରେ ମଙ୍ଗୋଲିଆନ ଟ୍ରେଡ଼ୟୁନିଅନ ପ୍ରତିନିଧିମଣ୍ଡଳର ଗୋଟିଏ ଗ୍ରୁପ ଫଟୋ ଯେଉଁଥିରେ ନେତାଜୀ ଓ ସ୍ୱୟଂ ଗୋସ୍ୱାମୀ ସଦସ୍ୟ ଭାବେ ଥିଲେ । ତାହା କମିଶନ ଆଗରେ ଦାଖଲ କରି ନେତାଜୀଙ୍କ ମୃତ୍ୟୁ ଅପ୍ରମାଣିତ କରିବା ସଂଗେସଙ୍ଗେ କମିଶନକୁ ଚ୍ୟାଲେଞ୍ଜ ଦେଇଥିଲେ । କଲିକତାର ବିଖ୍ୟାତ ଆନନ୍ଦ ବଜାର ପତ୍ରିକାର ତତ୍କାଳୀନ ସମ୍ପାଦକ ଓ ବିଶିଷ୍ଟ ସାମ୍ବାଦିକ ଦୟ ଶ୍ରୀ ଚପଳାକାନ୍ତ ଭଟ୍ଟାଚାର୍ଯ୍ୟ ଓ ଶ୍ରୀ ପାରେନ୍‌ ସେନ ମହାଶୟ ନେତାଜୀଙ୍କୁ ଜଣେ ସୈନିକ ବେଶରେ ୧୯୪୭ ମସିହାରେ ମସିଲସଠାରେ ସେ ଦୁହେଁ ଦେଖିଥିବା କଥା ଦୃଢ଼ଭାବେ କମିଶନ ଆଗରେ କହିଥିଲେ । ଆଜାଦହିନ୍ଦ ଫୌଜର କର୍ଣ୍ଣେଲ ୰ ବ୍ରଜମୋହନ ପଟ୍ଟନାୟକ ପୁରୀଠାରେ କମିଶନ ଆଗରେ ସାକ୍ଷ୍ୟ ଦେଇ କହିଥିଲେ ଯେ, ଦୁର୍ଘଟଣାରେ ନେତାଜୀଙ୍କ ଦେହରେ ଯେଉଁ ସବୁ ଜାଗାରେ ଆଘାତ ଲାଗିଥିବା କଥା ଉଲ୍ଲେଖ କରିଛି, ସେଭଳି ଆଘାତରେ ହଠାତ୍ ଜଣଙ୍କର ମୃତ୍ୟୁହେବା ସମ୍ଭବ ନୁହେଁ । ଯେହେତୁ ମୁଁ ଜଣେ ସିଭିଲ ସର୍ଜନଭାବେ ନିଜର ଅଭିଜ୍ଞତାରୁ ଏହା କହୁଛି । ନେତାଜୀଙ୍କର ଅନୁଗାମୀ ଓ ଜଣେ ପରମ ଭକ୍ତ ଅଧ୍ୟାପକ ସମର ଗୁହ କମିଶନ ଆଗରେ ସାକ୍ଷ୍ୟ ଦେଇ, ଦୁର୍ଘଟଣା ଘଟିବା ପରବର୍ତ୍ତୀ କାଳରେ ନେତାଜୀଙ୍କ ହାତ ଲିଖିତ କେତେକ ଚିଠିପତ୍ର ଉପସ୍ଥାପିତ କରିଥିଲେ ଏବଂ ରୁଷର ସାଇବେରିଆ ଅଞ୍ଚଳସ୍ଥ କୌଣସି ଏକ ବନ୍ଦୀଶାଳାରେ ନେତାଜୀ କଠୋରଭାବେ ଆବଦ୍ଧ ହୋଇ ରହିଥିବା କଥା ପ୍ରମାଣ ଦେଇ ସେ କହିଥିଲେ । ନେତାଜୀଙ୍କର ମୃତ୍ୟୁ ସମ୍ବାଦ କେବଳ କଳ୍ପନା ପ୍ରସୂତ ବୋଲି ମଧ୍ୟ ସେ ମତ ଦେଇଥିଲେ । କହୁହନ ପୂର୍ବେ ଫରୱାର୍ଡ଼ ବ୍ଲକ ନେତା ୰ ହେମନ୍ତ କୁମାର ବୋଷ ଦାବୀ କରିଥିଲେ ଯେ, ଦ୍ୱିତୀୟ ବିଶ୍ୱ ଯୁଦ୍ଧରେ ମିତ୍ର ଶକ୍ତିର ସବୁଠାରୁ ବଡ଼ ଶତ୍ରୁ ରୂପେ ନେତାଜୀ ସୁଭାଷ ଚନ୍ଦ୍ରଙ୍କୁ

ଅଭିହିତ କରି ତାଙ୍କ ନାମରେ କ୍ରିମିନାଲ କେସ ଜାତି ସଂଘର ନିରାପତ୍ତା ପରିଷଦରେ ଲିପିବଦ୍ଧ କରି ରଖାଯାଇଛି । ଏଣୁ ଜାତି ସଂଘ ଓ ଭାରତ ସରକାର ଉଭୟେ ମୁକ୍ତ କଣ୍ଠରେ ଘୋଷଣା କରନ୍ତୁ ଯେ, ସୁଭାଷ ଚନ୍ଦ୍ରଙ୍କ ଉପରେ ଥିବା କଟକଣା ପ୍ରତ୍ୟାହାର କରାଗଲା ବୋଲି । ତାହେଲେ ନେତାଜୀ ନିଶ୍ଚିତ ଭାବେ ଆତ୍ମ ପ୍ରକାଶ କରିବେ । ଏଠାରେ ଉଲ୍ଲେଖନୀୟ ଯେ, ତଦନ୍ତ କମିଶନ ବସିବା ବହୁ ବର୍ଷ ପୂର୍ବରୁ ଅର୍ଥାତ୍ ନେତାଜୀଙ୍କ ମୃତ୍ୟୁ ସମ୍ବାଦ ପ୍ରଚାର ହେବା ପରେ ପରେ ଆଜାଦହିନ୍ଦ ଫୌଜର କର୍ଣ୍ଣେଲ ହବିବୁର ରହମନ ଯିଏକି ଦୁର୍ଘଟଣା ଘଟିବା ସମୟରେ ନେତାଜୀଙ୍କ ସହିତ ବିମାନରେ ଥିଲେ, ପ୍ରଥମେ ସେ ଭାରତକୁ ଆସି ମହାତ୍ମା ଗାନ୍ଧୀଜୀଙ୍କୁ ଭେଟି ନେତାଜୀଙ୍କ ମୃତ୍ୟୁ ସମ୍ବନ୍ଧେ ବର୍ଣ୍ଣନା କରିଥିଲେ । କିନ୍ତୁ ଗାନ୍ଧୀଜୀ ସେତେବେଳେ ସମସ୍ତ କଥା ଶୁଣି ନିଜର ମତ ବ୍ୟକ୍ତ କରିଥିଲେ ଯେ — "ମୈଁ ବିଶ୍ୱାସ କରତାହୁଁ, ଭାରତମାତା କଭିନା କଭି ନେତାଜୀ ସୁଭାଷ କୋ ଜିନ୍ଦଗୀମେ ରଖେ ହୋଙ୍ଗେ ।" (ମୁଁ ବିଶ୍ୱାସ କରୁଛି ଭାରତମାତା କେଉଁଠି ନା କେଉଁଠି ନେତାଜୀ ସୁଭାଷଙ୍କୁ ଜୀବନରେ ରଖିଥିବେ ।)

ଅତଏବ ତଦନ୍ତ କମିଶନ ଉପରୋକ୍ତ ଗଣ୍ୟମାନ୍ୟ ବ୍ୟକ୍ତିଙ୍କର ସାକ୍ଷ୍ୟ ଓ ମତକୁ କୌଣସି ଗୁରୁତ୍ୱ ବା ବିଚାରକୁ ନନେଇ ନିଜର ସିଦ୍ଧାନ୍ତ ଉପରେ ମତବ୍ୟକ୍ତ କରିଛନ୍ତି ଯେ, "ନେତାଜୀ ଜୀବିତ ଥିଲେ ଅବଶ୍ୟ ଆତ୍ମ ପ୍ରକାଶ କରିଥାନ୍ତେ ।" କିନ୍ତୁ ଜାତି ସଂଘରେ ତାଙ୍କ ପ୍ରତି ଯେଉଁ ନିଷେଧାଦେଶ ଅଛି ସେଥିପ୍ରତି କମିଶନ କୌଣସି ଦୃଷ୍ଟି ଦେଇନାହାନ୍ତି । କେବଳ ସେ ଆତ୍ମ ପ୍ରକାଶ ନକରିବା ଯୋଗୁଁ ତାଙ୍କର ମୃତ୍ୟୁ ସୁନିଶ୍ଚିତ ବୋଲି ଧରାଯାଇଛି ।

ପାଠକଙ୍କ ଅବଗତପାଇଁ ଯଥା— "ଦ୍ୱିତୀୟ ବିଶ୍ୱ ଯୁଦ୍ଧର ଶେଷ ଭାଗରେ ଇଂରେଜ-ଆମେରିକା ମିଳିତ ସେନାବାହିନୀଙ୍କୁ ନିର୍ଦ୍ଦେଶ ଦେଇଥିଲେ ଯେ, ସୁଭାଷ ଚନ୍ଦ୍ର ବୋଷଙ୍କୁ ଜୀବନ୍ତରେ ଧରିବାପାଇଁ ଚେଷ୍ଟା କରିବ, ଯଦି ନ' ଧରିପାରୁଛ ତାହେଲେ ମାରିବ ।" ଏହାର କିଛି ମାସ ପରେ, ମିତ୍ରଶକ୍ତି ଯୁଦ୍ଧରେ ବିଜୟୀହେଲେ ଏବଂ ଅକ୍ଷ ଶକ୍ତି ପରାସ୍ତ ହେଲ । ସେହି ସମୟରେ ଆଜାଦହିନ୍ଦ ଫୌଜକୁ ମଧ୍ୟ ଆତ୍ମ ସମର୍ପଣ କରିବାକୁ ପଡିଥିଲ । କିନ୍ତୁ ଏହାର ପ୍ରାକ୍ କାଳରେ ଜାଇସ୍ବାଧୀନତାର ମନ୍ତ୍ରୀ ମଣ୍ଡଳର ନିଷ୍ପତ୍ତି ଅନୁଯାୟୀ, ନେତାଜୀ ଆତ୍ମଗୋପନ କରିବା କଥା ଚୂଡାନ୍ତ ନିଷ୍ପତ୍ତି ହୋଇଥିଲା । କିନ୍ତୁ କିପରି ଓ କେଉଁଠି ସେ ଆତ୍ମଗୋପନ କରିବେ ? ସେହି ପରିକଳ୍ପନାର ରୂପ ଓ ଖସଡ଼ା, ସ୍ୱୟଂ ନେତାଜୀ ଓ କେତେଜଣ ଗୁଇନ୍ଦା(ଗୁପ୍ତ ବିଭାଗ) ଅଫିସର ମିଶି ତିଆରି କରିଥିଲେ । ଏହାର କାରଣ ସ୍ପଷ୍ଟ ଯେ, ବିମାନ ଦୁର୍ଘଟଣାରେ ନେତାଜୀଙ୍କର ମୃତ୍ୟୁ ଘଟନା ଦ୍ୱାରା ଶତ୍ରୁ ପକ୍ଷର ଗୁଇନ୍ଦା ଓ ସି.ଆଇ.ଡ଼ି.ଙ୍କ ତତ୍ପରତା କମିଯିବ ନଚେତ ସେମାନେ ଏଥିରୁ କ୍ଷାନ୍ତ ନହୋଇ ସୁଭାଷ ଚନ୍ଦ୍ରଙ୍କୁ

ଖୋଜ ଧରିବା ପାଇଁ ବିଭିନ୍ନ ସ୍ଥାନ ବୁଲି ଅନବରତ ଖୋଳତାଡ଼ ଆରମ୍ଭ କରି ଦେଲେ । ଏଣୁକରି ଲୋକଙ୍କ ମନରେ ଯେପରି ସ୍ୱତଃ ବିଶ୍ୱାସ ଜନ୍ମିବ, ସେଥିପରେ ଆଗରୁ ଗୋଟିଏ ଦୁର୍ଘଟଣା ଜଡ଼ିତ ସ୍ଥାନକୁ ନିରୂପଣ କରାଯାଇଥିଲା । ଯେଉଁଠାରେ କି ବହୁ ପୂର୍ବରୁ ଉଡ଼ାଜାହାଜର କେତୋଟି ଭଗ୍ନ ଅଂଶ ବିକ୍ଷିପ୍ତ ଭାବେ ପଡ଼ି ରହିଥିଲା । ସେ ସବୁର ଯେଉଁ ଫଟୋ କମିଶନ ଉପସ୍ଥାପିତ କରିଥିଲେ, ବିଶେଷଜ୍ଞମାନଙ୍କ ମତରେ ତାହା ଦୁଇଟି ବିମାନର ସମିଶ୍ରଣ ଫଟୋ ବୋଲି ପ୍ରମାଣ ହୋଇଛି ।

ଦ୍ୱିତୀୟତଃ, ବିମାନ ଦୁର୍ଘଟଣା ୧୯୪୫ ଅଗଷ୍ଟ ୧୮ ତାରିଖ ଦିନ ଘଟିଥିଲେ ମଧ୍ୟ ୫ ଦିନ ବିଳମ୍ବରେ ଅଗଷ୍ଟ ୨୩ ତାରିଖ ଦିନ ସର୍ବ ପ୍ରଥମ ଜାପାନର 'ଡୋମାଇ ସମ୍ବାଦ ସଂସ୍ଥା' ତରଫରୁ ଏହା ପରିବେଷଣ କରାଯାଇଥିଲା ଯଥା "—ନେତାଜୀ ସୁଭାଷ ଚନ୍ଦ୍ର ବୋଷ ସିଙ୍ଗାପୁରରୁ ଟୋକିଓ ଯାଉଥିବା ବେଳେ ତାଇପେଇ ଠାରେ ସେ ବିମାନ ଦୁର୍ଘଟଣାରେ ପ୍ରାଣ ହରାଇଛନ୍ତି ।" କିନ୍ତୁ ମନେ ରଖିବା କଥା ଯେ, ୧୯୪୫ ଅଗଷ୍ଟ ୬ ତାରିଖ ଦିନ ଜାପାନର ହିରୋସିମା ଓ ନାଗାସାକି ନାମକ ଦୁଇଟି ସମୃଦ୍ଧିଶାଳୀ ଶିଳ୍ପନଗରୀ ଉପରେ ଆମେରିକା ପକ୍ଷରୁ ପରମାଣୁ ବୋମା ନିକ୍ଷେପ ଫଳରେ ଜାପାନୀ ସମର ନାୟକମାନେ ଆତ୍ମ ସମର୍ପଣ କରିବାକୁ ବାଧ୍ୟ ହେଲେ । ଏହାର ଅଳ୍ପ କିଛି ଦିନ ମଧ୍ୟରେ ମିତ୍ର ଶକ୍ତି ଜାପାନର ରାଜଧାନୀ ଟୋକିଓ ସହରକୁ ସମ୍ପୂର୍ଣ୍ଣ—ଭାବେ ଦଖଲ କରି ନେଇଥିଲା । ଠିକ୍ ସେତିକି ବେଳେ ନେତାଜୀ ସିଙ୍ଗାପୁରଠାରେ ନିଜର ଆତ୍ମ ଗୋପନ ସମ୍ବନ୍ଧେ ସହକର୍ମୀଙ୍କ ଗହଣରେ ଆଲୋଚନା ଚଳାଇଥିଲେ । ଏଠାରେ ପ୍ରଣିଧାନ ଯୋଗ୍ୟ ଯେ, ଯେଉଁ ଇଂରେଜ-ଆମେରିକାର ନଜର ଏଡ଼ାଇ ସେମାନଙ୍କଠାରୁ ଦୂରେଇ ରହିବା ପାଇଁ, ନେତାଜୀ ବହୁଦିନ ପୂର୍ବେ ନିଜର ଆତ୍ମ ଗୋପନ କଥା ଚିନ୍ତା କରି ଶେଷ ସିଦ୍ଧାନ୍ତରେ ପହଞ୍ଚି ସାରିଥିଲେ, ସେ ପୁଣି ସମସ୍ତ କଥା ଜାଣି ଶୁଣି କିପରି ଟୋକିଓ ଅଭିମୁଖେ ଯାତ୍ରା କଲେ ? ଏଣୁ ସମ୍ବାଦ ସୂତ୍ରର ଯଦି ହେଲେ ମଧ୍ୟ ପୂର୍ବାପର ସାଙ୍ଗକୁ ଭିତ୍ତିକରି ତାହାଁ ବିଶ୍ୱାସ ଯୋଗ୍ୟ ନୁହଁ ବୋଲି ମନେ ହେଉଛି ।

ନେତାଜୀଙ୍କର ଜନ୍ମ ୧୮୯୭ ଜାନୁୟାରୀ ୨୩ ତାରିଖ ଦିବା ୧୨ ଘଣ୍ଟା ଠାରୁ ୧୯୪୫ ଅଗଷ୍ଟ ୧୭ ତାରିଖ ଅପରାହ୍ନ ଅଢ଼େଇଟା ପର୍ଯ୍ୟନ୍ତ ଦୀର୍ଘ ୪୮ ବର୍ଷ ୬ ମାସ ୯ ଦିନ, ତାଙ୍କ କର୍ମମୟ ଜୀବନର ବିଭିନ୍ନ ସମୟରେ ସେ ବିଭିନ୍ନ ସ୍ଥାନକୁ ଯାଇ ନିଜ ଦେଶ, ଜାତି ଓ ସମାଜର ସେ ଯେଉଁ ମହନୀୟ କାର୍ଯ୍ୟ କରିଛନ୍ତି, ସେ ସବୁର ପ୍ରାୟ ୪୩୧ ଗୋଟି ଆଲେଖ୍ୟ ଚିତ୍ର, ନେତାଜୀ ରିସର୍ଚ୍ଚ ବ୍ୟୁରୋ କଲିକତା, ସଂଗ୍ରହ କରିଛନ୍ତି । ସେଥି ମଧ୍ୟରେ ୧୯୪୫ ଅଗଷ୍ଟ ୧୭ ତାରିଖ ଦିନ

ନେତାଜୀ ବ୍ୟାଙ୍କକ୍‌ରୁ ଯାଇ ସାଇଗନଠାରେ ବିମାନରୁ ଅବତରଣ କରିବା ଫଟୋଟି ହେଉଛି ତାଙ୍କର ଶେଷ ଛବି । କିନ୍ତୁ ପରବର୍ତ୍ତୀକାଳେ ସେ ସିଙ୍ଗାପୁରରୁ ଟୋକିଓ ଯାତ୍ରା କରିବା ସମ୍ବନ୍ଧୀୟ କୌଣସି ଫଟୋ ନାହିଁ । ପୁଣି ସେହିଦିନ ସନ୍ଧ୍ୟା ୮ ଟା ରେ ତାଇପେହରେ ଓହ୍ଲାଇ, ସେଠାରେ ରାତି ଯାପନ କରିଥିଲେ । ପରଦିନ ଅପରାହ୍ଣ ଅଢ଼େଇଟା ପର୍ଯ୍ୟନ୍ତ ସେ ତାଇପେହରେ ଥିଲେ । ପ୍ରାୟ ୧୮ଘଣ୍ଟା କାଳ ସେ ତାଇପେହରେ ଅବସ୍ଥାନ କରିଥିଲେ ମଧ୍ୟ ସେଠିକାର କୌଣସି ଫଟୋ ନାହିଁ । ଏହାପରେ ଅପରାହ୍ଣ ଅଢ଼େଇଟା ଠାରୁ ୩ଟା ମଧ୍ୟରେ ବିମାନ ଦୁର୍ଘଟଣା ଘଟି, ସ୍ଥାନୀୟ ସୈନିକ ହସ୍‌ପିଟାଲ୍‌ରେ ଚିକିତ୍ସାଧୀନ ଅବସ୍ଥାରେ ସେ ମୃତ୍ୟୁ ବରଣ କରିବା କଥା ଉଲ୍ଲେଖ ଅଛି, କିନ୍ତୁ ଏହି ପ୍ରାୟ ବ୍ୟବଧାନ ସମୟ ଭିତରେ ମଧ୍ୟ ତାଙ୍କର ଫଟୋ ଖଣ୍ଡେ କେହି ଉଠାଇପାରିଲେ ନାହିଁ ? ପରବର୍ତ୍ତୀକାଳେ ତାଙ୍କର ଶବ ସତ୍କାର କରି ଚିତା ଭସ୍ମ ରଖାଗଲା । ଯେଉଁ ବ୍ୟକ୍ତିର ଆଗମନ ବାର୍ତ୍ତାପାଇ ଲୋକେ ଦିନ ଦିନଧରି ଦଣ୍ଡାୟମାନ ରହୁଥିଲେ ତାଙ୍କର ଦର୍ଶନ ପାଇବା ସକାଶେ, ସେ ପୁଣି ଏତେବଡ଼ ମର୍ମନ୍ତୁଦ ଦୁର୍ଘଟଣାରେ ଶିକାର ହେଲେ,ଅଥଚ ସେହି ସମୟର ଦୁର୍ଘଟଣା ଜନିତ କୌଣସି ପ୍ରାମାଣିକ ଚିତ୍ର ଖଣ୍ଡିଏ କେହି ଦେଖାଇ ପାରିଲେ ନାହିଁ ।

ବିଶେଷକରି ଆମେରିକା ଓ ବ୍ରିଟିଶର ପୃଥିବୀ ବିଖ୍ୟାତ ସି·ଆଇ·ଏ· ସଂସ୍ଥା ଓ ସ୍କଟ୍‌ଲାଣ୍ଡ ୟାର୍ଡ଼ର ଗୁଇନ୍ଦା ବିଭାଗ ସେମାନେ ନେତାଜୀଙ୍କର ଏହି ମୃତ୍ୟୁ ଖବରକୁ ବିଶ୍ୱାସ ଯୋଗ୍ୟ ବୋଲି ମାନି ନାହାନ୍ତି । କିମ୍ବା ବିମାନ ଦୁର୍ଘଟଣାକୁ ମଧ୍ୟ ସ୍ୱୀକାର କରିନାହାନ୍ତି । ମୋଟାମୋଟି ଭାବେ ଏହାକୁ ଗୋଟିଏ ଉଡ଼ାଖବର ବୋଲି ଅଭିହିତ କରି ତାଙ୍କର ଗୁପ୍ତ ଡାଏରିରେ ଉଲ୍ଲେଖ କରିଛନ୍ତି ।

ଏଠାରେ କେତେକ ବିଷୟ ଉଲ୍ଲେଖ କରିବା ଉଚିତ ମନେ କଲି । କାରଣ ସମୟେ ସମୟେ ବହୁ ଶିକ୍ଷିତ ଭଦ୍ର ବ୍ୟକ୍ତି ବିଭିନ୍ନ ପ୍ରକାର ପ୍ରଶ୍ନ କରିବା ସଙ୍ଗେ ସଙ୍ଗେ ନିଜର ମନ୍ତବ୍ୟ ଦିଅନ୍ତି ଯେ "ନେତାଜୀ ଆଉ ଜୀବିତାବସ୍ଥାରେ ନାହାନ୍ତି । ବଞ୍ଚିଥିଲେ ସେ ନିଶ୍ଚୟ ଆତ୍ମପ୍ରକାଶ କରିଥାନ୍ତେ ।" ସେ ଜଣେ ମହାନ ନିର୍ଭୀକ ପୁରୁଷ ଦେଶର ଘଡ଼ିସନ୍ଧି ମୁହୂର୍ତ୍ତରେ ନଆପି କଦାପି ଲୁଚି ରହନ୍ତେ ନାହିଁ, ଇତ୍ୟାଦି ଇତ୍ୟାଦି । ଅବଶ୍ୟ ସେ ସମ୍ବନ୍ଧରେ ଲେଖକଙ୍କର ମନ୍ତବ୍ୟ ଯାହା ହେଉନା କାହିଁକି ପ୍ରକୃତରେ ନେତାଜୀ ବିମାନ ଦୁର୍ଘଟଣାରେ ମରିନାହାନ୍ତି । ଅନ୍ୟ କୌଣସି କାରଣରେ ଯଦି ତାଙ୍କର ଦେହାବସାନ ଘଟିଥାଏ, ତାହେଲେ ସେତ ଭିନ୍ନ ପ୍ରକାର କଥା । କାରଣ ମୃତ୍ୟୁ ହେଉଛି ଜୀବଜଗତର ଅଲଙ୍ଘନୀୟ ନିୟମ । ଆମର କହିବା କଥା ଯେ, ନେତାଜୀ ଅଛନ୍ତି କି ନାହାନ୍ତି, ଏହି ଦ୍ୱନ୍ଦରେ ନପଡ଼ି ଦେଶର ମୁକ୍ତିପାଇଁ ସେ ଯେପରି ତ୍ୟାଗର ଆଦର୍ଶ ଦେଖାଇ ଯାଇଛନ୍ତି ଆମେ ଭାରତବାସୀ ତାଙ୍କର ଯଥାର୍ଥ ଅନୁକରଣ

କରିପାରନ୍ତୁ କି ? ଏହାକୁ ସମସ୍ତେ ହୃଦୟଙ୍ଗମ କରିବା କଥା । ଏହି ନିୟମକୁ ଏଡ଼େଇ ଯିବା ତାହାର ପକ୍ଷେ ସହଜ ସାଧ୍ୟ ନୁହେଁ । ଏହା ସମସ୍ତେ ମୁକ୍ତ କଣ୍ଠରେ ସ୍ୱୀକାର କରିବେ । କିନ୍ତୁ ଏହାକୁ କେବଳ ଗୋଟିଏ କଳ୍ପନା ପ୍ରସୂତ ମନଗଢ଼ା କଥାକୁ ରୂପ ରଙ୍ଗ ଦେଇ ଲୋକଙ୍କ ମନରେ ବିଶ୍ୱାସ ଜନ୍ମାଇବା ସମ୍ଭବ ନୁହେଁ । ଆଗରୁ କୁହାଯାଇଛି ଯେ ବିମାନ ଦୁର୍ଘଟଣା ଘଟନାର ସ୍ରଷ୍ଟା ହୋଇଛନ୍ତି ଜାପାନୀ ଜେନେରାଲ ହିକାରୀ କାଇକନ୍, ଜେନେରାଲ ଇସୋଡ଼ା, କର୍ଣ୍ଣେଲ ଟାଡ଼ା ଏବଂ ସ୍ୱୟଂ ନେତାଜୀ ମିଶି ପ୍ରସ୍ତୁତ କରିଥିଲେ । ମୃତ୍ୟୁ ଖବର ଟୋକିଓସ୍ଥ ମୁଖ୍ୟ ସୈନିକ କାର୍ଯ୍ୟାଳୟ ଦ୍ୱାରା ପ୍ରସ୍ତୁତ କରାଯାଇଥିଲା ଏବଂ ପରବର୍ତ୍ତୀ କାଳେ ତାହା ଟୋକିଓ ଡୋମେଇ ଏଜେନ୍‌ସି ୧୯୪୫ ଅଗଷ୍ଟ ୨୩ ତାରିଖ ଦିନ ପରିବେଷଣ କରିଥିଲା । ତତ୍‌କାଳୀନ ସୈନିକ ଗୁପ୍ତଚର ବିଭାଗର ବ୍ରିଟିଶ ବଶ୍ୟ ଏଜେନ୍‌ସି ଯାହାକି C. S. D. I. C. (କମ୍ବାଇଣ୍ଡ ସର୍ଭିସେସ ଡିଟେଲ୍‌ଡ୍ ଇଣ୍ଟେରୋଗେସନ୍ ସେଣ୍ଟର) ଏହି ସଂସ୍ଥା ବିଶ୍ୱର କୋଣେ କୋଣେ ତନ୍ନ ତନ୍ନ ଅନୁସନ୍ଧାନ ପରେ ନେତାଜୀଙ୍କ ସମ୍ବନ୍ଧେ ଗୁପ୍ତ ରିପୋର୍ଟ ଦେଇଛନ୍ତି ଯେ "ସୁଭାଷ ଚନ୍ଦ୍ର ବୋଷ କୌଣସିମତେ ଖସି ଚାଲିଯାଇଛନ୍ତି । ବିମାନ ଦୁର୍ଘଟଣାରେ ତାଙ୍କର ମୃତ୍ୟୁ ସମ୍ବାଦ କେବଳ ମନଗଢ଼ା କଥା ଏବଂ ତାହା ପ୍ରଚାର ପାଇଁ ଉଦ୍ଦିଷ୍ଟ ମାତ୍ର । ନେତାଜୀ ପଳେଇଯିବା କଥା ନୂଆଦିଲ୍ଲୀ ଓ ଲଣ୍ଡନରେ ବ୍ରିଟିଶ କର୍ତ୍ତୃପକ୍ଷଙ୍କୁ ନିଶ୍ଚିତ ଭାବେ ଜଣାଥିଲା । ସେମାନେ ଏହା ମଧ୍ୟ ଜାଣିଥିଲେ ଯେ ସେ ଯାଇ କେଉଁଠି ଅଛନ୍ତି । ମାନବ ଜାତିର ଇତିହାସରେ ଏହା ଏକ ବଡ଼ ରହସ୍ୟ ଉଦ୍‌ଘାଟନ କରିବା ହେଉଛି ସବାପେକ୍ଷା ଆଶ୍ଚର୍ଯ୍ୟ ଜନକ ଘଟଣା । ନେତାଜୀ ଖସି ଚାଲିଯିବା ସୂଚନା ମିଳିବାପରେ ବ୍ରିଟିଶ କର୍ତ୍ତୃପକ୍ଷଙ୍କ ମନରେ ଘୋର ଦୁଶ୍ଚିନ୍ତା ହେଲା ଯେ, ତାଙ୍କ ସହିତ କିପରି ବ୍ୟବହାର କରାଯିବ । ପରିସ୍ଥିତି ବିଶ୍ଳେଷଣ କଲାପରେ ସେମାନେ ଏହି ନିଷ୍ପତ୍ତିରେ ପହଞ୍ଚିଲେ । "ସୁଭାଷ ଚନ୍ଦ୍ର ଯେଉଁଠାରେ ଅଛନ୍ତି ତାଙ୍କୁ ସେହିଠାରେ ହିଁ ରହିବାକୁ ଦିଆଯାଉ ।"

ଉପରୋକ୍ତ ନିଷ୍ପତ୍ତି ଅବଶ୍ୟ ଇଂରେଜ ସାମ୍ରାଜ୍ୟବାଦୀ ସ୍ୱାର୍ଥପାଇଁ ଇଂରେଜମାନେ କରିଥିବେ । କିନ୍ତୁ ସ୍ୱାଧୀନ ଭାରତର ପ୍ରଥମ ସରକାର କଣ କଲେ ? ସେ କଣ ଜାଣିନଥିଲେ ନେତାଜୀଙ୍କୁ ବନ୍ଦୀକରି କେଉଁଠି ରଖାଯାଇଥିଲା ? ଅବଶ୍ୟ ଜାଣିଥିଲେ । ଏଣୁ ଭାରତ ସରକାରଙ୍କ ପ୍ରଥମ କର୍ତ୍ତବ୍ୟ ଥିଲା, ନେତାଜୀ ଯେଉଁଠି ବନ୍ଦୀ ଅବସ୍ଥାରେ ଅଛନ୍ତି ତାଙ୍କୁ ଉଦ୍ଧାରକରି ଆଣିବା । ତାହା ନକରି ବିମାନ ଦୁର୍ଘଟଣାରେ ସେ ମୃତ କି ଜୀବିତ ପ୍ରମାଣ କରିବାପାଇଁ ଯେପରି ତଦନ୍ତ କମିଶନ ନିଯୁକ୍ତ କରାଗଲା ସେହିପରି ଖୋଜ ଖବର କରିବାପାଇଁ ଗୋଟିଏ ଅନୁସନ୍ଧାନ କମିଟି କାହିଁକି ନିଯୁକ୍ତ କରାନଗଲା ? ତତ୍‌କାଳୀନ ଭାରତ ସରକାର ବ୍ରିଟିଶ ନୀତି ଅନୁସରଣ କରି ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ସର୍ବଶ୍ରେଷ୍ଠ ବିପ୍ଳବୀ ନେତାଙ୍କ ପ୍ରତି କପଟ ଆଚରଣ

କରିନାହାନ୍ତି କି ? ଭାରତ ସରକାର ସେହି ମହାନ କ୍ରାନ୍ତିକାରୀ ପାଇଁ କିଛି କଲେ ନାହିଁ, ଯିଏକି ନିଜର ଚିନ୍ତା ନକରି ଦେଶର ସ୍ୱତନ୍ତ୍ରତାର ନବଯୁଗ ଆଣିବାପାଇଁ ଜୀବନର ସର୍ବସ୍ୱ ତ୍ୟାଗ କଲେ । ଦ୍ୱିତୀୟ ବିଶ୍ୱ ଯୁଦ୍ଧରେ ନେତାଜୀଙ୍କ ନେତୃତ୍ୱରେ ଯଦି ଆଜାଦହିନ୍ଦ ଫୌଜ ବ୍ରିଟିଶ ସାମ୍ରାଜ୍ୟକୁ 'ଠକ୍କର' ଦେଇ ନ ଦୋହଲେଇ ପାରିଥାନ୍ତା ତାହେଲେ ଭାରତ ବର୍ଷ କ'ଣ ଏତେ ଶୀଘ୍ର ସ୍ୱତନ୍ତ୍ର ପାଇପାଇଥାନ୍ତା ? କଦାପି ନୁହେଁ ।

୧୯୪୫ରେ କଂଗ୍ରେସର ରାଜନୈତିକ ଭବିଷ୍ୟରେ ଭଟ୍ଟା ପଡ଼ିଯାଇଥିଲା । ଯୁଦ୍ଧରେ ଇଂରେଜ ଜୟ ଲାଭକରି ଭାରତୀୟ ସ୍ୱାଧୀନତା ଆନ୍ଦୋଳନକୁ ନିସ୍ତ୍ରିୟ କରିଦେବାପାଇଁ ସଙ୍କଳ୍ପ ବଦ୍ଧ ଥିଲା । ଏପରି ମହତ୍ତ୍ୱପୂର୍ଣ୍ଣ ସଙ୍କଟ ସମୟରେ ନେତାଜୀଙ୍କ ଆଜାଦହିନ୍ଦ ସୈନ୍ୟ ବାହିନୀର ଅପୂର୍ବ କୀର୍ତ୍ତିକଳାପ ଶୁଣି ସାରା ଭାରତରେ ଚାଞ୍ଚଲ୍ୟ ସୃଷ୍ଟି ହେଲା । ଯାହାର ଫଳେ ବ୍ରିଟିଶ ଭାରତୀୟ ସଶସ୍ତ୍ର ସେନାବାହିନୀର, ରୟାଲ ଇଣ୍ଡିୟାନ ନେଭି, ଜାଠ ଓ ଶିଖ୍ ରେଜିମେଣ୍ଟ, ପ୍ରଭୃତି ମିଳି ସ୍ୱତନ୍ତ୍ରତା ସୈନିକ ସଙ୍ଗେ କାନ୍ଧକୁ କାନ୍ଧ ମିଶାଇ ବିପ୍ଳବ ଆରମ୍ଭ କଲେ । ୧୮୫୭ ପରଠାରୁ ଏଭଳି ବିପ୍ଳବ ଦେଶରେ କେବେ ହୋଇନଥିଲା । ଜନତା ଏବଂ ସେନା ସ୍ୱାଧୀନତା ଯୁଦ୍ଧରେ ଏକ ସଙ୍ଗେ ପାଦକୁ ପାଦ ମିଶାଇ ଚାଲିଲେ । ହିନ୍ଦୁ, ମୁସଲମାନ, ଶିଖ··· ସମସ୍ତେ ଏହି ମହାନ କ୍ରାନ୍ତି ମନ୍ତ୍ରରେ ଦୀକ୍ଷିତ ହେବା ଫଳରେ ଭାରତ ବର୍ଷର ହଜାର ସ୍ୱତନ୍ତ୍ରତାର ବିପ୍ଳବ ବହ୍ନି ଜଳିଉଠିଲା । ଏଥିରେ ଏକମାତ୍ର ନେତାଜୀଙ୍କ ଆଜାଦହିନ୍ଦ ଫୌଜର ଗରିମାମୟ ବୀରତ୍ୱ କାହାଣୀ ସେମାନଙ୍କୁ ପ୍ରେରଣା ଯୋଗାଇଥିଲା ।

ନେତାଜୀଙ୍କର ବିଚକ୍ଷଣ ରାଜନୈତିକ ଦୂର ଦୃଷ୍ଟି ଥିଲା । ଜାପାନ ଆତ୍ମସମର୍ପଣ କଲାପରେ ସେ ନିଜର ମହତ୍ତ୍ୱପୂର୍ଣ୍ଣ ପ୍ରସାରଣରେ ଭାରତୀୟ ଜନତାକୁ ଆଶ୍ୱାସନା ଦେଇ କହିଥିଲେ— "ଯୁଦ୍ଧ ପରେ ଦେଶ ଭିତରେ ମହାନ ବିପ୍ଳବ ସଙ୍ଘଟିତ ହେବ ।" ସେତେବେଳେ କଂଗ୍ରେସୀ ନେତାମାନେ ଜନତାର ବିପ୍ଳବ ମୁଖୀ ମନୋଭାବକୁ ବୁଝିପାରିଲେ ନାହିଁ, କିନ୍ତୁ ବ୍ରିଟିଶ ଅଧିକାରୀ ବର୍ଗ ନଭେମ୍ବର ୧୯୪୫ ଠାରୁ ୧୯୪୬ ଫେବୃୟାରୀ ପର୍ଯ୍ୟନ୍ତ ଗଣ ବିପ୍ଳବୀର ମହତ୍ତ୍ୱକୁ ବୁଝିପାରିଥିଲେ । ପ୍ରଥମରେ ବ୍ରିଟିଶ୍ ଶାସନକୁ ନିଷ୍କ୍ରିୟ କରିଦେବା ପାଇଁ ଜନତା ପକ୍ଷରୁ ଅସହଯୋଗ ଆନ୍ଦୋଳନ ହେଲା । ସେଥିରେ ସେନାବାହିନୀ ଯୋଗ ଦେଇନଥିଲେ । ଇଂରେଜ ପ୍ରତି ଭାରତୀୟ ସେନାଙ୍କ ଯେପରି ପ୍ରଗାଢ଼ ଭକ୍ତି ଓ ନିଷ୍ଠା ଥିଲା, ତାର କୌଣସି ବ୍ୟତିକ୍ରମ ହୋଇନଥିଲା । ଶେଷକୁ ନେତାଜୀ ଏବଂ ଆଜାଦହିନ୍ଦ୍ ଫୌଜର ଦିବ୍ୟ ତ୍ୟାଗପୂତ କାହାଣୀ, ଭାରତୀୟ ସେନାଙ୍କ ସେହି ପାରମ୍ପାରିକ ନିଷ୍ଠାକୁ ଭାଙ୍ଗି-ଦେଇଥିଲା । ବର୍ତ୍ତମାନ ବ୍ରିଟିଶ୍ ଆଗରେ ବଡ଼ ଭୟଙ୍କର ପରିସ୍ଥିତି ଥିଲା, ହୁଏତ ସେମାନେ ୧୮୫୭ ମସିହା ଅପେକ୍ଷା ବହୁଗୁଣରେ ରକ୍ତନଦୀ ବୁହାଇବାକୁ ଚେଷ୍ଟା

କରନ୍ତେ, ନଚେତ ଘର-ପାଟ ଛାଡ଼ି କାନମୁଣ୍ଡ ଆଉଁଷି ଚୁପ୍‌ଚାପ୍ ଭାବେ ଘରକୁ ଚାଲିଯାଇଥାନ୍ତେ । କିନ୍ତୁ ଚତୁର ଇଂରେଜ ତାହା ନକରି ଅନ୍ୟ ପଥ ବାଛିଲେ ।

ମହାତ୍ମା ଗାନ୍ଧୀ ପରାଧୀନତା ଜଡ଼ରେ ଶୋଇଥିବା ଭାରତୀୟ ଚେତନାକୁ ଜାଗ୍ରତ କରାଇଥିଲେ । କିନ୍ତୁ ନେତାଜୀ ବ୍ରିଟିଶ୍ ଶାସନର ମୂଳ ଭିତ୍ତିକୁ ଦୋହଲାଇ ଦେଇଥିଲେ । ତାଙ୍କର ହାନ୍ତକାଣ୍ଡ ପ୍ରେରଣାରେ ଭାରତୀୟ ସେନାଙ୍କ ଦୃଷ୍ଟି କୋଣକୁ ପରିବର୍ତ୍ତନ କରିଥିଲା । ୧୯୪୭ରେ ବ୍ରିଟିଶ୍ ପ୍ରଭୁତ୍ୱର ଏହି ଅନ୍ତିମ ଦୁର୍ଗ ଭାଙ୍ଗିଗଲା । ଭାରତୀୟ ସେନା ଉପରେ ଯଦି ଆଜାଦହିନ୍ଦ୍ ଫୌଜର ହାନ୍ତକାଣ୍ଡ ବଳିଷ୍ଠ ପ୍ରଭାବ ନ ପଡ଼ିଥାନ୍ତା, ତା ହେଲେ ଇଂରେଜମାନେ ଭାରତ ଛାଡ଼ି କଦାପି ଯାଇନଥାନ୍ତେ ।

ଭାରତର ସ୍ୱାଧୀନତା ପାଇଁ ନେତାଜୀଙ୍କର ଯେତିକି ଅବଦାନ, ଗାନ୍ଧିଜୀଙ୍କର ମଧ୍ୟ ସେତିକି ଅବଦାନ । ଭାରତୀୟମାନେ ନେତାଜୀଙ୍କର ନିକଟରେ ଯେତିକି ଋଣୀ, ଗାନ୍ଧିଜୀଙ୍କ ନିକଟରେ ମଧ୍ୟ ସେତିକି ଋଣୀ । ଗାନ୍ଧିଜୀ ଭାରତର ସ୍ୱାଧୀନତା ପୃଷ୍ଠଭୂମି ତିଆରି କରିଥିଲେ, କିନ୍ତୁ ନେତାଜୀ ଇଂରେଜମାନଙ୍କୁ ଦେଶ ଛାଡ଼ି ଚାଲିଯିବା ପାଇଁ ବାଧ୍ୟ କରିଥିଲେ । ସ୍ୱାଧୀନତା ପରେ ଯେତେବେଳେ ଲର୍ଡ ଏଟେଲି ଜଣେ ସାଧାରଣ ନାଗରିକ ଭାବେ ଭାରତକୁ ଆସିଲେ, ବଙ୍ଗଳାର ରାଜ୍ୟପାଳ ତାଙ୍କୁ ପଚାରିଥିଲେ ଯେ, ଯୁଦ୍ଧରେ ବିଜୟୀ ହେବା ପରେ ଇଂରେଜମାନେ ଭାରତକୁ କାହିଁକି ଛାଡ଼ିଦେଲେ ? ଇଂଲଣ୍ଡର ଭୂତପୂର୍ବ ପ୍ରଧାନ ମନ୍ତ୍ରୀ, ଯିଏକି ହାଉସ୍ ଅଫ କମନ୍‌ସର, ଇଣ୍ଡିଆନ ଇଣ୍ଡିପେଣ୍ଡେନ୍‌ସ ବିଲ୍‌ର କର୍ଣ୍ଣଧାର ଥିଲେ ସେ ଉତ୍ତର ଦେଇଥିଲେ, "ସୁଭାଷ ଚନ୍ଦ୍ର ବୋଷ ଯୋଗୁଁ" ।

କିନ୍ତୁ ଭାରତର ନେତା ତାଙ୍କ ପ୍ରତି କେତେବଡ଼ ଅକୃତଜ୍ଞ ହେଲେ ! ବର୍ତ୍ତମାନ ରାଷ୍ଟ୍ର କଣ କରିବ ? ଅତି ଗୋପନୀୟ ଦଲିଲ ପତ୍ର ପ୍ରକାଶ ପରେ ଯେଉଁ ରହସ୍ୟୋଦ୍‌ଘାଟନ ହେଲା, ତାର କି ପ୍ରତିକ୍ରିୟା ହେବ ? ଭାରତ ସରକାର ଏହି ମହାନ ରାଷ୍ଟ୍ରୀୟ ନେତାଙ୍କ ସମ୍ବନ୍ଧିତ ରହସ୍ୟକୁ ଜାଣିବା ପାଇଁ କ'ଣ ପ୍ରାଣ ପଣେ ପ୍ରଯତ୍ନ କରିବେ ? ଯଦି ଆମେ ଏହା ନ କରୁଛେ ତା ହେଲେ ଭବିଷ୍ୟତ ବଂଶଧର ଆମକୁ କେବେହେଁ କ୍ଷମା ଦେବେ ନାହିଁ । ଜୟହିନ୍ଦ୍

ଇନକିଲାବ—ଜିନ୍ଦାବାଦ ! ଆଜାଦହିନ୍ଦ୍—ଜିନ୍ଦାବାଦ ! ନେତାଜୀ—ଜିନ୍ଦାବାଦ !

# ବ୍ୟାଙ୍କକ୍‌ଠାରେ ୧୯୪୩, ଅକ୍ଟୋବର ୨, ମହାତ୍ମା ଗାନ୍ଧିଜୀଙ୍କ ୭୫ତମ ଜୟନ୍ତୀ ଅବସରରେ ନେତାଜୀଙ୍କ ଭାଷଣର ସଂକ୍ଷିପ୍ତ ମନ୍ତବ୍ୟ

## ମହାତ୍ମାଜୀଙ୍କ ସ୍ଥାନ କେଉଁଠି ?

ଭାରତର ଜନ ସାଧାରଣ ମହାତ୍ମାଜୀଙ୍କ ଜୀବନ କଥା ଓ ତାଙ୍କର କାର୍ଯ୍ୟାବଳୀ ସଙ୍ଗରେ ଏତେ ସୁପରିଚିତ ଯେ, ମୋତେ ତାଙ୍କ ଜୀବନର ଘଟଣାବଳୀ କଥା ପୁଣି ଯଦି କହିବାକୁ ହୁଏ, ତେବେ ତାଙ୍କ ଅଭିଜ୍ଞତାର ଅବମାନନା ହିଁ କରାଯିବ । ତା'ପରିବର୍ତ୍ତେ ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ମହାତ୍ମାଜୀଙ୍କର ସ୍ଥାନ କେଉଁଠି, ମୁଁ କେବଳ ସେହି କଥା ହିଁ ଆଲୋଚନା କରିବି । ଭାରତର ସେବାରେ ଏବଂ ସ୍ୱାଧୀନତା ଲାଭ ପ୍ରଚେଷ୍ଟାରେ ମହାତ୍ମା ଗାନ୍ଧିଙ୍କର ଅବଦାନ ଏତେ ଅସାମାନ୍ୟ ଓ ଅନୁପମ ଯେ ସେଥି ନିମନ୍ତେ ତାଙ୍କର ନାମ ଆମ୍ଭମାନଙ୍କ ଜାତୀୟ ଇତିହାସରେ ସବୁ ଯୁଗରେ ସ୍ୱର୍ଣ୍ଣାକ୍ଷରେ ଲିପିବଦ୍ଧ ହୋଇ ରହିବ ।

ଜାଲିଆନାୱାଲାବାଗର ଶୋଚନୀୟ ଘଟଣାପରେ ଭାରତର ଜନସାଧାରଣ ସାମୟିକ ଭାବରେ ହତବୁଦ୍ଧି ଓ ନିଷ୍କ୍ରିୟ ହୋଇ ପଡ଼ିଥିଲେ । ସ୍ୱାଧୀନତା ଅର୍ଜନର ସମସ୍ତ ଚେଷ୍ଟା ଇଂରେଜ ସରକାର ତାର ସଶସ୍ତ୍ର ବାହିନୀ ସାହାଯ୍ୟରେ ନିର୍ମମଭାବରେ ଚୂର୍ଣ୍ଣ କରିବାକୁ ଉଦ୍ୟମ କରୁଥିଲେ । ଠିକ୍ ଏହି ସଙ୍କଟ ଜନକ ମୁହୂର୍ତ୍ତରେ ମହାତ୍ମାଗାନ୍ଧି ତାଙ୍କର ଅସହଯୋଗ ସତ୍ୟାଗ୍ରହ ଅଥବା ଆଇନ ଅମାନ୍ୟ ଆନ୍ଦୋଳନର ଅଭିନବ ପଦ୍ଧତି ନେଇ ସଂଗ୍ରାମରେ ଅବତୀର୍ଣ୍ଣ ହେଲେ । ମନେହେଲା ସ୍ୱାଧୀନତାର ପଥ ପ୍ରଦର୍ଶନ ନିମନ୍ତେ ସ୍ୱୟଂ ଈଶ୍ୱର ଯେପରି ତାଙ୍କୁ ପଠାଇଦେଲେ । ସ୍ୱତଃ ପ୍ରଣୋଦିତ ହୋଇ ସମଗ୍ର ଜାତି ତାଙ୍କ ପତାକା ତଳେ ସମବେତ ହେଲେ । ସଂଗ୍ରାମର ନୂତନ ପଥପାଇଁ ଭାରତବାସୀ ଯେପରି ବଞ୍ଚିଗଲେ । ପ୍ରତ୍ୟେକଙ୍କ ମୁଖମଣ୍ଡଳ ଆଶା ଓ ବିଶ୍ୱାସ ଆଲୋକରେ ଉଦ୍ଦୀପ୍ତ ହୋଇ ଉଠିଲା । ପୁଣି ମନେହେଲା, ଭାରତର ଜୟ ସୁନିଶ୍ଚିତ ।

୧୯୨୦ ଖ୍ରୀଷ୍ଟାବ୍ଦରେ ସେ ସ୍ୱାଧୀନତା ସଂଗ୍ରାମର ନୂତନ ଅହିଂସା ଅସ୍ତ୍ର ଯେନ ଯଦି ଆବିଷ୍କୃତ ହୋଇନଥାନ୍ତେ ତା ହେଲେ ଭାରତକୁ ଆଜି ହୁଏତ ଅବସାଦଗ୍ରସ୍ତ ହୋଇ ରହିବାକୁ ପଡ଼ିଥାନ୍ତା । ଏ କଥାରେ ଟିକିଏ ହେଲେ ଅତିରଞ୍ଜନ ନାହିଁ ।

ଭାରତର ସ୍ୱାଧୀନତା ସଂଗ୍ରାମରେ ତାଙ୍କର ଅବଦାନ ଅପୂର୍ବ, ଅତୁଳନୀୟ । କୌଣସି ଏକକ ବ୍ୟକ୍ତି ଏହିପରି ଅବସ୍ଥାରେ ଏହା ଅପେକ୍ଷା ବେଶି କିଛି କଦାପି କରିପାରିବ ନାହିଁ । ନେତାଜୀ ଭାଷଣ ପ୍ରସଙ୍ଗରେ କହିଲେ ଯେ, ଭାରତୀୟ ଜନସାଧାରଣ ମହାତ୍ମାଗାନ୍ଧିଙ୍କ ନିକଟରୁ ଦୁଇଟି ଜିନିଷ ଶିକ୍ଷା କରିଛନ୍ତି, ଯାହାକି ସ୍ୱାଧୀନତା ସଂଗ୍ରାମରେ ଅପରିହାର୍ଯ୍ୟ । ପ୍ରଥମତଃ ଜାତୀୟ ସମ୍ମାନ ଓ ଆତ୍ମପ୍ରତ୍ୟୟ ଶିକ୍ଷା, ଯାହା ଫଳରେ ଭାରତୀୟଙ୍କ ହୃଦୟରେ ବର୍ତ୍ତମାନ ବିପ୍ଳବର ଅନୁପ୍ରେରଣା ଜାଗ୍ରତ ହୋଇ ଉଠିଛି । ଦ୍ୱିତୀୟତଃ ସେମାନେ ଏପରି ଗୋଟିଏ ପ୍ରତିଷ୍ଠାନ ଲାଭ କରିଛନ୍ତି, ଯାହାର ପ୍ରଭାବ ଭାରତ ସୁଦୂର ପ୍ରାନ୍ତପଲ୍ଲୀରେ ଯାଇ ପହଞ୍ଚିଛି । ସ୍ୱାଧୀନତାର ବାଣୀ ସମସ୍ତ ଭାରତବାସୀଙ୍କ ହୃଦୟରେ ପ୍ରବେଶ କରିବାରେ ସମଗ୍ର ଜାତିର ପ୍ରତିନିଧିମୂଳକ ଗୋଟିଏ ଜାତୀୟ ମହା ସଙ୍ଗଠିତ ରାଜନୈତିକ ପ୍ରତିଷ୍ଠାନ ପାଇଛନ୍ତି । ଆଜି ସ୍ୱାଧୀନତା ନିମନ୍ତେ ଚରମ ମୁକ୍ତି ସଂଗ୍ରାମର କ୍ଷେତ୍ର ପ୍ରସ୍ତୁତ ।



ତା ୨୯-୧-୮୮ ନୂଆଦିଲ୍ଲୀରୁ ପ୍ରକାଶିତ ଦୈନିକ ନବଭାରତ ଟାଇମସ୍ ହିନ୍ଦୀ ସମ୍ବାଦ ପତ୍ରରେ, ନୂଆଦିଲ୍ଲୀସ୍ଥ ୧୨୧ ସାଉଥ୍ ଏଭେନ୍ୟୁ ନିବାସୀ ଶ୍ରୀ ମହେନ୍ଦ୍ର ଓଁକାର ନାମକ ଜଣେ ପତ୍ର ପ୍ରେରକ ହିନ୍ଦୀରେ "ନେତାଜୀ ପର୍ ଲଗା ଯୁଦ୍ଧ ଅପରାଧ କଲଙ୍କ ମିଟାଇଏ" ଶୀର୍ଷକ ହିନ୍ଦୀ ଲେଖାର ଓଡ଼ିଆ ଅନୁବାଦ ନିମ୍ନ ପ୍ରକାରେ ।

ଭାରତ ପୁତ୍ର ନେତାଜୀ ସୁଭାଷଚନ୍ଦ୍ରଙ୍କର ସତ୍ୟତା ଜାଣିବା ପାଇଁ କେବେ କେବେ ଟିକାଟିପ୍ପଣୀ ମାନ ହୋଇଥାଉଛି । କିନ୍ତୁ ଆଜପର୍ଯ୍ୟନ୍ତ କେହିହେଲେ ପ୍ରମାଣ କରିପାରିଲେ ନାହିଁ ଯେ, ସେ ମରିଗଲେ କି ବଞ୍ଚିଗଲେ ? ଯଦି ଆମ ସରକାରଙ୍କ ନିକଟରେ ସମସ୍ତ ପ୍ରମାଣ ରହିଛି ଯେ ସେ ମରିଯାଇଥିଲେ ତେବେ ତାଙ୍କର ସ୍ମୃତି ନିମନ୍ତେ କାହିଁକି ସମାଧି କରାଯାଉନାହିଁ ? କ'ଣ ଏଥିପାଇଁ ଯେ ସେ ଅନ୍ତର୍ଜାତୀୟ ଯୁଦ୍ଧ ଅପରାଧୀ ଅଟନ୍ତି ? ତାଙ୍କୁ କାହିଁକି ଅନ୍ତର୍ଜାତୀୟ ଯୁଦ୍ଧ ଅପରାଧୀ କରାଗଲା ? କ'ଣ ଆମେ ମଧ୍ୟ ତାଙ୍କୁ ଯୁଦ୍ଧ ଅପରାଧୀ ମାନୁଅଛେ, ଆଉ କିଛି ନାହିଁ ? କ'ଣ ୧୮ ଅଗଷ୍ଟ ୧୯୪୫ ଦିନ ଫରମୋସାରେ କୌଣସି ବିମାନ ଦୁର୍ଘଟଣା ହୋଇଥିଲା ? ଯଦି ବିମାନ ଦୁର୍ଘଟଣା ହୋଇନଥିଲା । ତେବେ ନେତାଜୀ କୁଆଡ଼େ (ଗାଏବ୍) ହଜିଗଲେ ? କ'ଣ ଆଜି ସେ ଏହି ସଂସାରରେ ଅଛନ୍ତି ? ଯଦି ଅଛନ୍ତି ତେବେ ସେ ପ୍ରକଟ ହେବାରେ କ'ଣ କଷ୍ଟକର (କଠିନାଇସ୍) ଅଛି ? ମୋର ବିଚାରରେ ଅନ୍ତର୍ଜାତୀୟ ଯୁଦ୍ଧ ଅପରାଧୀ ହେବାହିଁ ସବୁଠାରୁ ଅଧିକ କଠିନତା ଅଟେ । ଯଦି ତାଙ୍କ ଉପରୁ ଆଜି ଏହି ଲାଞ୍ଛନା ଲିଭା ଦିଆଯିବ ସମ୍ଭବତଃ ସେ ପୁଣି ଏହି ଦେଶକୁ ମାର୍ଗଦର୍ଶନ କରିପାରନ୍ତେ । ଆଜି ସେ ଜୀବିତ କି ମୃତ, ତାଙ୍କ ଉପରେ ଲାଗିଥିବା କଳଙ୍କ ଘୋଷିଦେବା ଉଚିତ୍ ହେବ ।

## ନେତାଜୀ ଜୀବନୀର ୨ୟ ପୃଷ୍ଠାର ତୃତୀୟ ପରିଚ୍ଛେଦ

ଜାନକୀବାବୁଙ୍କର ପୁତ୍ର ଓ କନ୍ୟା ମିଶି ମୋଟ ୧୪ ଜଣ । ଶୈଶବାବସ୍ଥାରେ ୬ ଜଣଙ୍କର ମୃତ୍ୟୁ ଘଟିଥିଲା । ବାକି ୮ ଜଣ ଜୀବିତ ଥିଲେ । ସେଥିମଧ୍ୟରୁ ଜ୍ୟେଷ୍ଠପୁତ୍ର ୬ ସତୀଶ୍ ଚନ୍ଦ୍ର ବସୁ (ବାରିଷ୍ଟର, ତତ୍କାଳୀନ ବଙ୍ଗୀୟ ଆଇନ ପରିଷଦର ସଭ୍ୟ) ୨ୟ ପୁତ୍ର ୬ ଶରତ ଚନ୍ଦ୍ର ବସୁ, (ବାରିଷ୍ଟର, ବଳିଷ୍ଠ ଜନନାୟକ, ଭାରତୀୟ ଜାତୀୟ କଂଗ୍ରେସର ସଭାପତି, ୧୯୫୭ରେ ଭାରତ ସରକାରଙ୍କ ଅସ୍ଥାୟୀ ମନ୍ତ୍ରୀମଣ୍ଡଳର ସଦସ୍ୟ) ୩ୟ ପୁତ୍ର ୬ ସୁରେଶ ଚନ୍ଦ୍ର ବସୁ

(ବାରିଷ୍ଟର, ଡେପୁଟି ମ୍ୟାଜିଷ୍ଟ୍ରେଟ୍, ତତ୍କାଳୀନ କଲିକତା ଇମ୍ପ୍ରୁଭ୍‌ମେଣ୍ଟ ଟ୍ରଷ୍ଟର ଅଫିସର୍) ୪ର୍ଥ ପୁତ୍ର ୰ ସୁଧୀର ଚନ୍ଦ୍ର ବସୁ, (ଜାମ୍‌ସେଦପୁର କୋଇଲା ଖଣିର ତତ୍କାଳୀନ ଜଣେ ବଡ଼ ଅଫିସର) ୫ମ ପୁତ୍ର ୰ ସୁରମଲ ବସୁ, (ପ୍ରସିଦ୍ଧ ଶଲ୍ୟ ଚିକିତ୍ସକ ଓ ହୃଦ୍‌ରୋଗ ବିଶେଷଜ୍ଞ) ୬ଷ୍ଠ ପୁତ୍ର ଦେଶନାୟକ ନେତାଜୀ ସୁଭାଷ ଚନ୍ଦ୍ର ବସୁ,) ୭ମ ପୁତ୍ର ୰ ଶୈଳେଶ ଚନ୍ଦ୍ର ବସୁ, (୧୯୨୧ର ସ୍ୱାଧୀନତା ଆନ୍ଦୋଳନର ସଂଗ୍ରାମୀ ଓ ପରେ ବମ୍ବେ କଟନମିଲର ଜଣେ ବିଶେଷଜ୍ଞ) କନିଷ୍ଠ ପୁତ୍ରଙ୍କ ନାମ ଥିଲା ୰ ସନ୍ତୋଷ ଚନ୍ଦ୍ର ବସୁ ।





**ଲାଲବାହାଦୁର ଶାସ୍ତ୍ରୀ**

ସ୍ୱାଧୀନତା ସଂଗ୍ରାମର ମହାରଥୀ, ଭାରତର ପୂର୍ବତନ ପ୍ରଧାନ ମନ୍ତ୍ରୀ, ଶାନ୍ତି ତଥା କ୍ରାନ୍ତିର ଅଗ୍ରଦୂତ ଓ ଜୟ ଜଓ୍ୱାନ-ଜୟ କିଶାନ ଧ୍ୱନିର ପ୍ରବର୍ତ୍ତକ ।

**ପଣ୍ଡିତ ଜବାହାରଲାଲ ନେହେରୁ**

ସ୍ୱାଧୀନତା ସଂଗ୍ରାମର ମହାରଥ, ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନ ମନ୍ତ୍ରୀ ତଥା ଭାରତର ନବନିର୍ମାତା ଭାରତରତ୍ନ ।



**ଇନ୍ଦିରା ଗାନ୍ଧୀ**

ପୃଥିବୀ ବିଖ୍ୟାତ ରାଜନୀତି ବିଶାରଦା, ଅବାଲ୍ୟ ସ୍ୱାଧୀନତା ସଂଗ୍ରାମୀ ପ୍ରିୟଦର୍ଶିନୀ, ସ୍ୱତନ୍ତ୍ରତା ସୈନିକ ସମ୍ମାନଭତ୍ତା ପ୍ରବର୍ତ୍ତିକା, ସମାଜବାଦର ପଥପ୍ରଦର୍ଶିକା ତଥା ଭାରତର ପ୍ରାକ୍ତନ ପ୍ରଧାନ ମନ୍ତ୍ରୀ, ଭାରତର ରତ୍ନ ।



**ନବକୃଷ୍ଣ ଚୌଧୁରୀ**

ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ, ଓଡ଼ିଶାର ପ୍ରାକ୍ତନ ମୁଖ୍ୟମନ୍ତ୍ରୀ, ସମାଜବାଦୀ ଓ ଭୂଦାନ ଆନ୍ଦୋଳନର ଅନ୍ୟତମ ନେତା, ଗାନ୍ଧିବାଦୀ, ବରିଷ୍ଠ ସମ୍ପାଦକ ।





## ମୋହନଲାଲ କରମଚନ୍ଦ ଗାନ୍ଧୀ

ଜାତିର ଜନକ, ମହାମାନବ ଅହିଂସାର ମୂର୍ତ୍ତିମନ୍ତ ପ୍ରତୀକ ତଥା ସ୍ୱାଧୀନତା ସଂଗ୍ରାମର କର୍ଣ୍ଣଧାର ।

## ଉତ୍କଳମଣି ଗୋପବନ୍ଧୁ ଦାଶ

ଓଡ଼ିଶାରେ ଜାତୀୟ କଂଗ୍ରେସ ଓ ସ୍ୱାଧୀନତା ସଂଗ୍ରାମର ପ୍ରବର୍ତ୍ତକ, କବି, ସାହିତ୍ୟିକ, ସାମ୍ବାଦିକ, ସମାଜସେବୀ ତଥା ତ୍ୟାଗ ବୀର



## ବିଶ୍ୱନାଥ ଦାସ

ଓଡ଼ିଶାର କଂଗ୍ରେସୀ ପ୍ରଥମ ପ୍ରଧାନ ମନ୍ତ୍ରୀ, ଉତ୍ତର ପ୍ରଦେଶର ପୂର୍ବତନ ରାଜ୍ୟପାଳ, ତରୁଙ୍ଗିମ ବେଦଭବନର ପ୍ରତିଷ୍ଠାତା, ଲୋକ ସେବକ ମଣ୍ଡଳର ପ୍ରାକ୍ତନ ସଭାପତି, ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ



**ପଣ୍ଡିତ ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀଶର୍ମା**

ଉତ୍କଳ ଆୟୁର୍ବେଦ ସମବାୟ ଫାର୍ମାସୀ, ଚଳଚିତ୍ର ପ୍ରତିଷ୍ଠାନ, ଅନାଥ ଅନ୍ନଦାନ କେନ୍ଦ୍ର ଓ ଦାତବ୍ୟ ଚିକିତ୍ସାଳୟର ପ୍ରତିଷ୍ଠାତା, ଗାନ୍ଧିବାଦୀ, ଦେଶପ୍ରେମୀ, ଦୀନଜନ ସେବକ, ବିଦଗ୍ଧ ଚିକିତ୍ସକ, ପ୍ରାକ୍ତନ ଅଧ୍ୟାପକ ତଥା ବିଶିଷ୍ଟ ସମାଜ ସେବୀ ।



**ଶ୍ରୀ ରାମଚନ୍ଦ୍ର ଦାଶ**

ବ୍ରହ୍ମଦେଶସ୍ଥ 'ବର୍ମା ଓଡ଼ିଆ' ପତ୍ରିକାର ପ୍ରାକ୍ତନ ସମ୍ପାଦକ, ଆଜାଦହିନ୍ଦ୍ ଫୌଜର ହିତାକାଂକ୍ଷୀ ବିଶିଷ୍ଟ ସାମ୍ବାଦିକ ତଥା ଗାନ୍ଧିବାଦୀ ।



**ଶ୍ରୀ ବାଞ୍ଛାନିଧି ପଟ୍ଟନାୟକ**

ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ, ଆଜାଦ୍ ହିନ୍ଦ୍ ଫୌଜର ସହାୟକ, ବିଭିନ୍ନ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠାର ମୁଖ୍ୟ ଉଦ୍ୟୋକ୍ତା, ଗାନ୍ଧିବାଦୀ, ସଞ୍ଚାଳକ ଓ ତ୍ୟାଗୀ ।



**ଶ୍ରୀ ମାଗୁଣି ଦାଶ**

ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ, ଗଞ୍ଜାମ ଜିଲ୍ଲା ଲୋକସମ୍ପର୍କ ବିଭାଗର ପୂର୍ବତନ ଅଫିସର, ଲେଖକ, ଐତିହାସିକ ତଥା ସାମ୍ବାଦିକ ।



**ଶ୍ରୀ ଭାମନା ପଣ୍ଡା**

ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ, ଆଜାଦ୍ ହିନ୍ଦ୍ ଫୌଜର ସହାୟକ ତଥା ସୁଦକ୍ଷ ହୋମିଓପ୍ୟାଥ୍ ଚିକିତ୍ସକ ।



**ଶ୍ରୀ ଶ୍ୟାମସୁନ୍ଦର ପାତ୍ର**

ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ, ବଟ୍ଟଳା, ଆଜାଦ୍-ହିନ୍ଦ୍ ଫୌଜର ହିତାକାଂକ୍ଷୀ ।

## ବ୍ରହ୍ମଦେଶରେ ଉତ୍କଳୀୟଙ୍କର
## ପୂର୍ବ ଓ ପରବର୍ତ୍ତୀ ଅବସ୍ଥାନ ତଥା ସ୍ୱାଧୀନତା ସଂଗ୍ରାମକୁ ଅବଦାନ

•

ଇତିହାସର ଧାରାବାହିକ ବିବରଣୀ ପ୍ରକାରେ ବ୍ରିଟିଶ ଆଗମନ ବହୁ ବର୍ଷ ପୂର୍ବରୁ କଳିଙ୍ଗର ନରପତିମାନେ ପ୍ରାଚ୍ୟ ଭୂଖଣ୍ଡରେ ନିଜର ପ୍ରଭୁତ୍ୱ ବିସ୍ତାରକରି ଶାସନ କରିଥିବା କଥା ପାଲି ଭାଷାରେ ଲିପିବଦ୍ଧ ହୋଇ ଜ୍ୱଳନ୍ତ ପ୍ରମାଣ ରହିଛି । ଓଡ଼ିଶାର ତାମ୍ରଲିପ୍ତ ତାରାପିଠ, ଗୋପାଳ ପୁର, ଋଷିକୁଲ୍ୟା ନଦୀ ଓ ପ୍ରାଚୀ ନଦୀ ମୁହାଣରୁ ଓଡ଼ିଆ ସାଧବ ପୁଅମାନେ ଅତୀତ କାଳରେ ସୁଦୂର ଜାଭା, ବୋର୍ଣ୍ଣିଓ, ବାଲି, ଶ୍ୟାମ ଓ ସୁମାତ୍ରା ଦ୍ୱୀପ ପୁଞ୍ଜରେ ନୌବାଣିଜ୍ୟ ବିସ୍ତାରକରି ଓଡ଼ିଶାକୁ ସମୃଦ୍ଧିଶାଳୀ କରିଥିବା କଥା ଇତିହାସରେ ଉଲ୍ଲେଖ ରହିଛି । ଖାଲି ସେତିକି ନୁହେଁ, ଏବେ ମଧ୍ୟ ପ୍ରାଚ୍ୟ ଭୂ-ଖଣ୍ଡରେ କଳିଙ୍ଗର ସ୍ଥାପତ୍ୟ, କଳା-ସଂସ୍କୃତି, ଭାସ୍କର୍ଯ୍ୟ ପ୍ରଭୃତି କ୍ଷେତ୍ରରେ ଦେଖିବାକୁ ମିଳୁଛି । ଏପରିକି ସର୍ବ ପ୍ରଥମେ କଳିଙ୍ଗର ବୌଦ୍ଧ ଭିକ୍ଷୁମାନେ ଯଥାକ୍ରମେ-ଶୋଣ, ଉତ୍ତର, ଗଂପତି ଓ ଆନନ୍ଦ ପ୍ରମୁଖ ବ୍ରହ୍ମଦେଶ, ଶ୍ୟାମ, କାମ୍ବୋଡିଆକୁ ଯାଇ ବୌଦ୍ଧ ଧର୍ମ ପ୍ରଚାର କରିଥିବା କଥା ସ୍ପଷ୍ଟଭାବେ ଉଲ୍ଲେଖ ରହିଛି । ବର୍ମାର ହେନ୍ଥାଡା ଜିଲ୍ଲାରେ ଅଦ୍ୟାବଧି କଳିଙ୍ଗର ଭଗ୍ନାବଶେଷ ମନ୍ଦିର ଇତ୍ୟାଦି ଦେଖିବାକୁ ମିଳେ । ହେନ୍ଥାଡାର ତତ୍କାଳୀନ ରାଜା ତମଳ (କମଳ ଶବ୍ଦର ଅପଭ୍ରଂଶ) ରାଜାଙ୍କର ପୁତ୍ରମାନଙ୍କୁ ଶିକ୍ଷା ଦେବାପାଇଁ ସେଉ୍ ରଥ ନାମକ ଜଣେ ଗୃହ ଶିକ୍ଷକ ନିଯୁକ୍ତ ପାଇଥିବା କଥା ବ୍ରହ୍ମଦେଶର ଇତିହାସରେ ଲିପିବଦ୍ଧ ହୋଇ ରହିଛି । ସେଠାକାର ରାଜଉପାଧି ପ୍ରଭୃତି ଓଡ଼ିଶା ରାଜାମାନଙ୍କ ପରି ବିକ୍ରମ ଦେବ ବର୍ମନ ମହାରଥୀ, ନରତମ ଦେବ ସିଂହ ନାୟକ ଓ ନରସିଂହ ଦେବ ଗଡ଼ନାୟକ ଉପାଧିମାନ ବହନକରି ଆସୁଛନ୍ତି । ତତ୍କାଳୀନ ଉତ୍କଳୀୟ ଶାସକମାନେ କୀର୍ତ୍ତି ଉଦ୍ଦେଶ୍ୟରେ ପ୍ରାଚ୍ୟ ଭୂ-ଖଣ୍ଡ ତଥା ବ୍ରହ୍ମ ଦେଶର ବହୁ ସ୍ଥାନରେ ନିଜର ସ୍ମୃତି ସ୍ଥାପନ କରିଥିଲେ ଯଥା—"ନିକୁମ୍ଭ ନଗର, ନିକୁମ୍ଭ ପଲ୍ଲୀ, ଶ୍ରୀରାମ ନଗର, ମହାନଦୀ ଓ ବୈତରଣୀ ପ୍ରଭୃତି ।" ଦୁଃଖର କଥା କାଳକ୍ରମେ ସେ ଗୁଡିକ ଅପଭ୍ରଂଶ ହୋଇ କେଲବସ୍ତି, ଶିରିପୂମ, ଟିପାଲ୍ଲୀ, ମାନଦୀ ଓ ବୋଡାମଙ୍ଗରେ ପରିଣତ ହୋଇଛି । କରଣ ଓ କଳିଙ୍ଗ ଜାତି ବାଚକ ଶବ୍ଦ ଅପଭ୍ରଂଶ ହୋଇ ଯଥାକ୍ରମେ କେରେନ୍ ଓ କ୍ଲିଂ (କାଲା) ଜାତିରେ ପରିଣତ ହୋଇଥିବା କଥା ସ୍ପଷ୍ଟଭାବେ ପ୍ରମାଣ ରହିଛି ।

ଷୋଡ଼ଶ ଶତାବ୍ଦୀର ପ୍ରଥମ ଭାଗରେ ଇଂରେଜ ବଣିକମାନେ ବାଣିଜ୍ୟ ସୂତ୍ରରେ ଭାରତକୁ ଆସି ଧିରେ ଧିରେ ତାଙ୍କର ଉପନିବେଶବାଦ ଶାସନ ବିସ୍ତାର

କରିବାରେ ବ୍ରତକାର୍ଯ୍ୟ ହୋଇଥିଲେ । ତାହାର କିଛିଦିନ ପରେ ସେମାନେ ବ୍ରହ୍ମଦେଶକୁ ଆକ୍ରମଣ କରି ମଧ୍ୟ ଦଖଲ କରିଥିଲେ । ସେହି ସମୟରେ ବ୍ରହ୍ମଦେଶର ଆଭ୍ୟନ୍ତରୀଣ ପରିସ୍ଥିତି ବଡ଼ ଅଗମ୍ୟ ଓ ଘଞ୍ଚ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ଚତୁର ଇଂରେଜମାନେ ଓଡ଼ିଶାରୁ ବହୁସଂଖ୍ୟକ ଶ୍ରମିକ ବ୍ରହ୍ମଦେଶକୁ ନେଇ ବିଭିନ୍ନ ପ୍ରକାର ସଫାସୁତୁରା ଓ ନିର୍ମାଣ କାର୍ଯ୍ୟରେ ନିଯୁକ୍ତ କଲେ । ବିଶେଷ କରି ବଣ, ଜଙ୍ଗଲ, ପାହାଡ଼ କାଟି ପକ୍କା ସଡ଼କ ଓ ରେଲ୍‌ଲାଇନ୍ ତିଆରି କରିବା, ନାମଟୁ, ଇନାଜାଙ୍ଗ, ସାନ୍‌ଷ୍ଟେଟ୍ ପ୍ରଭୃତିରେ ସୀସା, ପେଟ୍ରୋଲ୍, ସୁନାଖଣି ଖୋଳାଇବା ଏବଂ ତାଗୀ ଓ କମାଇଟ୍‌ରେ କୃତ୍ରିମ ହ୍ରଦ, ନଦୀର ଦୁଇପଟରେ ବଡ଼ ବଡ଼ ବାହନ (ବନ୍ଧ) ପକାଇବା, ବଳକାଡ଼ ସମତଳରେ ପରିଣତ କରିବା, ଏପରିକି ସମଗ୍ର ବ୍ରହ୍ମଦେଶରେ ଯେଉଁ ସବୁ ଖଣିମାନ ଖୋଳାଯାଇଛି ଓ ବଡ଼ ବଡ଼ ନଦୀ ବ୍ରିଜ୍ ତିଆରି ହୋଇଛି, ଧାନ ମିଲ ବସିଛି, ସହର ଗଢ଼ି ଉଠିଛି, ରେଙ୍ଗୁନ ସହରରେ ପାଣି ପାଇପ୍ ଓ ଟ୍ରାମ ଲାଇନ ବସିଛି, ହଜାର ହଜାର ମାଇଲ ବ୍ୟାପି ଇନାଜାଙ୍ଗ ଠାରୁ ଶିରିୟମ୍ ପର୍ଯ୍ୟନ୍ତ ନଦୀ ଗର୍ଭରେ ପେଟ୍ରୋଲ ପାଇପ ପଡ଼ିଛି ଓ ମାଟିର ସଡ଼କ ତିଆରି ହୋଇଛି, ବିଭିନ୍ନ ଜାଗାରେ ରବର ବଗିଚା ସୃଷ୍ଟି ହୋଇଛି, ସେ ସବୁ କେବଳ ଓଡ଼ିଆ ଶ୍ରମିକର କଠୋର ପରିଶ୍ରମର ଫଳ ଓ ନିଶ୍ଚିତ ଭାବରେ ଅବଦାନ କହିଲେ ଚଳେ ।

ପରବର୍ତ୍ତୀକାଳେ ଭାରତର ବିଭିନ୍ନ ଅଂଶରୁ ଭାରତୀୟମାନେ ନିଜର-ଜୀବିକାର୍ଜନପାଇଁ ବ୍ୟକ୍ତିଗତ ଉଦ୍ଦେଶ୍ୟରେ ଓ ବାଣିଜ୍ୟ ସୂତ୍ରରେ ବ୍ରହ୍ମଦେଶକୁ ଯାଇଥିଲେ । ତନ୍ମଧ୍ୟରୁ ଓଡ଼ିଆ ସଂଖ୍ୟା ଲକ୍ଷାଧିକ ହେଲେ ହେଁ, ଅଧିକାଂଶ ଲୋକ ଗଞ୍ଜାମ ଜିଲ୍ଲାର ଅଧିବାସୀ ଥିଲେ । ତାହାର ମୁଖ୍ୟ କାରଣ ସେତେବେଳେ ଗଞ୍ଜାମର ଗୋପାଳପୁର ବନ୍ଦରଠାରୁ ପ୍ରତି ସପ୍ତାହରେ ଦୁଇ ଥର ପାଣି ଜାହାଜ ରେଙ୍ଗୁନକୁ ଯିବା ଆସିବା କରୁଥିଲା । ସାଧାରଣଭାବେ ଓଡ଼ିଆ ଲୋକେ ଜମି ଚାଷଠାରୁ ଆରମ୍ଭକରି କଳ କାରଖାନା, ଖଣି, କର୍ପୋରେସନ, ପ୍ଲାମ୍ବର, ଠିକାଦାର, ଧାନ ଓ କାଠ ମିଲ୍, ଏସବାଡ଼ ଜାହାଜ କମ୍ପାନୀ, ବନ୍ଦର, ବର୍ମା ଆଇଲ କମ୍ପାନୀ, ଟ୍ରାମ କମ୍ପାନୀ, ଇଲେକ୍ଟ୍ରିକ୍ ଲାଇନ, ବସ ଓ ଟ୍ରାମ ଡ୍ରାଇଭର, ମିସ୍ତ୍ରୀ, ବଗିଚା ମାଳି, ରେଲୱେ, ପ୍ରଭୃତି ବିଭିନ୍ନ କ୍ଷେତ୍ରରେ ନିଯୁକ୍ତିପାଇଁ କାର୍ଯ୍ୟ କରୁଥିଲେ । ଏପରିକି ଆର୍. ଇ. ଟି. (ରେଙ୍ଗୁନ ଇଲେକ୍‌ଟ୍ରିକ୍ ଟ୍ରାମ କମ୍ପାନୀ) ପାରଳାଖେମୁଣ୍ଡି ଓଡ଼ିଆଙ୍କର ଏକଚାଟିଆ ଅଧିକାର ଥିଲା କହିଲେ ଚଳେ । ସେଠାରେ ଭାରତୀୟ ମଠ ମନ୍ଦିର ଶତାଧିକ ଥିଲେ ମଧ୍ୟ କେବଳ ଓଡ଼ିଆ ଜାତିର ନିଜସ୍ୱ ମଠ ମନ୍ଦିର ଅର୍ଦ୍ଧଶତାଧିକ ଥିଲା । ସେଥି ମଧ୍ୟରୁ ମୁଖ୍ୟତଃ ରେଙ୍ଗୁନ ସହରର ଆଲୋନସ୍ଥିତ ଶ୍ରୀ ଜଗନ୍ନାଥ ମନ୍ଦିର, ଶିରିୟମ ସ୍ଥିତ ଜଗନ୍ନାଥ ମନ୍ଦିର ଚମଗୁଇଁରେ ଶ୍ରୀ ରଘୁନାଥ ମନ୍ଦିର, ଇନାଜାଙ୍ଗରେ ଶ୍ରୀ ଜଗନ୍ନାଥ ମନ୍ଦିର, ବ୍ରୁଇଁକ୍‌ରେ ସଦଜୀବନ ହରି ଠାକୁର ମନ୍ଦିର,

ନ୍ଦରସ୍ଥିତ ଶ୍ରୀ ରାମଚନ୍ଦ୍ର ମନ୍ଦିର, ମୌଲମେଞ୍ଚରେ ଶ୍ରୀ ରାଧାକୃଷ୍ଣ ମନ୍ଦିର, ବୋଗ୍‌ଲରେ ଶ୍ରୀ ଶିବପାର୍ବତୀ ମନ୍ଦିର ପ୍ରଭୃତି ଉଲ୍ଲେଖଯୋଗ୍ୟ । ଏହି ସବୁ ମନ୍ଦିରମାନଙ୍କରେ ହିନ୍ଦୁ ମତାନୁସାରେ ବିଧିବଦ୍ଧ ଭାବେ ଭୋଗରାଗ ଓ ଅଭ୍ୟାଗତ ଖଞ୍ଜାଯାଇଥିଲା । ବାର ମାସରେ ତେର ଯାତ୍ରା ଓ ପର୍ବପର୍ବାଣୀ ମଧ୍ୟ ପାଳନ ହେଉଥିଲା । ବର୍ତ୍ତମାନ ଜଣାଯାଉଛି ଆହ୍ଲୋନସ୍ଥିତ ଶ୍ରୀ ଜଗନ୍ନାଥ ମନ୍ଦିର ରେଜିଷ୍ଟ୍ରିଭୁକ୍ତ ହୋଇଥିବା ଯୋଗୁଁ ବିଧିବଦ୍ଧ ଭାବରେ ଚାଲିଛି । ଅନ୍ୟ ସମସ୍ତ ମନ୍ଦିରର ଅବସ୍ଥା କ'ଣ ହୋଇଛି ଜଣା ଯାଉନାହିଁ ।

ବିଂଶ ଶତାବ୍ଦୀର ପ୍ରଥମ ଭାଗରେ କେତେକ ଶିକ୍ଷିତ ଓଡ଼ିଆ ବୁଦ୍ଧିଜୀବୀଙ୍କର ବ୍ରହ୍ମଦେଶକୁ ଆଗମନ ହେଲା । ସେମାନେ ବିଭିନ୍ନ ପ୍ରକାର ସଂଗଠନ ଓ ଗଠନମୂଳକ କାର୍ଯ୍ୟ କରିବାକୁ ଆଗ୍ରହୀ ହୋଇ "ରେଙ୍ଗୁନ ଓଡ଼ିଆ ଯୁବକ ସଂଘ" ଗଠନ କଲେ । ସେଥିରେ ସର୍ବଶ୍ରୀ—ଯୋଗେଶ ଚନ୍ଦ୍ର ସ୍ଲେଟରାୟ, କାମଦେବ ପରିଡ଼ା, ବଳଭଦ୍ର ତ୍ରିପାଠୀ, ବୈଷ୍ଣବ ଚରଣ ପଟ୍ଟନାୟକ ଓ ସାମ୍ବାଦିକ ରାମଚନ୍ଦ୍ର ଦାଶ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ । ଓଡ଼ିଆଙ୍କ ଭିତରେ ଜାତୀୟତା ମନୋଭାବ ଜାଗ୍ରତ କରିବା ପାଇଁ ଓଡ଼ିଆ ଭାଷାରେ କିଛି ପତ୍ର ପତ୍ରିକା ପ୍ରକାଶ କରିବା ନିମନ୍ତେ ଚେଷ୍ଟା କରି ସର୍ବପ୍ରଥମେ ଗଞ୍ଜାମ ଜିଲ୍ଲା ବ୍ରାହ୍ମଣଗ୍ରାଇ ଗ୍ରାମର ୰ ମଧୁସୂଦନ ମହାପାତ୍ର ଓ ପାଇକ ଯମୁନାର ଶ୍ରୀ ହରିହର ପଟ୍ଟନାୟକ ରେଙ୍ଗୁନ ସହରରେ ଦୁଇଟି ଛାପାଖାନା ପ୍ରତିଷ୍ଠା କଲେ । ଏହାପରେ ସାପ୍ତାହିକ "ବର୍ମା ଓଡ଼ିଆ" "ପ୍ରଭାତ" ଓ "ଲୋକ ଶିକ୍ଷା" ନାମକ ୩ ଗୋଟି ସମ୍ବାଦପତ୍ର ଯଥାକ୍ରମେ— ଶ୍ରୀ ରାମଚନ୍ଦ୍ର ଦାଶ (ସାମ୍ବାଦିକ) ଶ୍ରୀ ହରିହର ପଟ୍ଟନାୟକ ଓ କଙ୍କୋରଡ଼ା ଗ୍ରାମର ୰ ଖଲ ପାତ୍ରୀଙ୍କ ସମ୍ପାଦନାରେ ପ୍ରକାଶ ପାଇଥିଲା । ସେତେବେଳେ ବ୍ରହ୍ମଦେଶରେ ଓଡ଼ିଆ ଶ୍ରମିକ, କୃଷୀ ଓ କାରିଗରମାନଙ୍କୁ ଅଣ ଓଡ଼ିଆ ଅଫିସର ଓ ଠିକାଦାରମାନେ ବିନଗତ ଖଟାଇ ଯେପରି ଅମାନୁଷିକଭାବେ କଷଣ ଓ ଶୋଷଣ କରୁଥିଲେ, ସେହି ସବୁ ଅନ୍ୟାୟ ବିରୁଦ୍ଧରେ ସ୍ୱରତ୍ତୋଳନ କରି ଉପରୋକ୍ତ ସମ୍ବାଦ ପତ୍ର ଗୁଡ଼ିକ ସରକାରଙ୍କ ନିକଟରେ ଘୋର ପ୍ରତିବାଦ କରି ଓଡ଼ିଆ ଲୋକଙ୍କର ସ୍ୱାର୍ଥ ରକ୍ଷା କରିବାକୁ ସକ୍ଷମ ହେଉଥିଲେ । ସମ୍ବାଦ ପତ୍ରକୁ କେନ୍ଦ୍ରକରି ବ୍ରହ୍ମଦେଶର ପୁର-ପଲ୍ଲୀ ତଥା ସହରମାନଙ୍କରେ ଓଡ଼ିଆ ଜାତିର ବହୁବିଧ ଧାର୍ମିକ ଓ ସାଂସ୍କୃତିକ ଅନୁଷ୍ଠାନ-ମାନ ଗଢ଼ି ଉଠିଥିଲା ଯଥା-- ପୂର୍ଣ୍ଣାନନ୍ଦ ଧର୍ମ, ରାମାନନ୍ଦୀ ଧର୍ମ, ମହିମା ଧର୍ମ, ଅଲେଖ ଧର୍ମ, ଉତ୍କଳ ସଂଘ, ପାଠାଗାର, କଳା ପରିଷଦ, ଯୁବକ ସଂଘ, ଯାତ୍ରାଦଳ, ନାଟ୍ୟ ସଂଘ, କୀର୍ତ୍ତନ ଦଳ, ଭାରତ ଲୀଳା, ଦଣ୍ଡନାଚ, ସଖୀନାଚ, ଦାଣ୍ଡକାଠିଆ, ପ୍ରହ୍ଲାଦ ନାଟକ ତଥା "ବର୍ମା-ଓଡ଼ିଆ ରସ ସମିତି" ପ୍ରଭୃତି ଅଜସ୍ର ସଂସ୍ଥା ।

ଏଠାରେ ବର୍ମା-ଓଡ଼ିଆ ରସ ସମିତିର କାର୍ଯ୍ୟକଳାପ ବିଶେଷ ଭାବେ ଉଲ୍ଲେଖ ଯୋଗ୍ୟ । ଏହି ସଂସ୍ଥାର ଉଦ୍ୟୋକ୍ତା ଥିଲେ ପିତଳ ଗ୍ରାମର ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ

ଓ ୰ ଗଣେଶ ରଥ । ସେମାନେ ପ୍ରଥମେ ଗୋଟିଏ ସଖୀନାଚ ଦଳ ଗଠନକରି ବ୍ରହ୍ମଦେଶକୁ ଯାଇ ସୁନାମ ଅର୍ଜନ କରିଥିଲେ । ପରବର୍ତ୍ତୀକାଳେ ତଳ ବର୍ମାର ଓଡ଼ିଆ ବସ୍ତି ବହୁଳାଞ୍ଚଳ 'ବୋଗଲେ' ଠାରେ ପ୍ରାୟ ୫୦ ଜଣ କିଶୋର ଓ ଅବିବାହିତ ଯୁବକଙ୍କୁ ନେଇ ଉକ୍ତ 'ସମିତି' ଗଠନ କରିଥିଲେ । ସେଥିରେ ବାପ ଓଡ଼ିଆ ଓ ମା' ବର୍ମାଣୀଠାରୁ ସମ୍ଭୂତ ଦଶ ଜଣ କିଶୋର ମଧ୍ୟ ଥିଲେ । 'ସମିତି'ର ଆଦର୍ଶ ଓ ଉଦ୍ଦେଶ୍ୟ ଅତ୍ୟନ୍ତ ମହାନ ଥିଲା ଯଥା— ବର୍ମାସ୍ଥ ଓଡ଼ିଆମାନଙ୍କ ମଧ୍ୟରେ ସ୍ୱାଧୀନତା ଚେତା ଓ ରାଜନୈତିକ ଜାଗରଣ ଆଣିବା । ଏଣୁ ନାଚ, ଗୀତ, ଥିଏଟର, କୀର୍ତ୍ତନ ତଥା ଜାତୀୟ ସଙ୍ଗୀତ ମାଧ୍ୟମରେ ଦେଶାତ୍ମବୋଧ ଓ ଜାତୀୟ ସଂସ୍କୃତି ବ୍ରହ୍ମଦେଶର ପ୍ରତି ପଲ୍ଲୀରେ ଥିବା ଓଡ଼ିଆଙ୍କ ଭିତରେ ପ୍ରଚାର କରାଯାଉଥିଲା । ଗାନ୍ଧୀ, ଗୋପବନ୍ଧୁ ଓ ନେତାଜୀ ପ୍ରମୁଖ ଜାତୀୟ ନେତା ଓ ମହାପୁରୁଷମାନଙ୍କ ଚିତ୍ରପଟ ସହ ତ୍ରିରଙ୍ଗା ପତାକା ତଳେ ଯଥାବିଧିଭାବେ ଜୟନ୍ତୀ ଦିବସ ପାଳନ ପୂର୍ବକ ସଭାର ଆୟୋଜନ କରି, ଦେଶାତ୍ମବୋଧ ଭାଷଣ ଜରିଆରେ ସେମାନଙ୍କୁ ଅନୁପ୍ରାଣିତ କରାଯାଉଥିଲା । ଗୋଟିଏ ଖଟୁଲିରେ 'ସମିତି'ର ଆରାଧ୍ୟ ଦେବତା ଯୁଗଳ ମୂର୍ତ୍ତି ଶ୍ରୀ ରାଧା କୃଷ୍ଣଙ୍କୁ ପ୍ରତିଷ୍ଠା କରାଯାଇଥିଲା । ଦୁଇବେଳା ନିୟମିତଭାବେ ସଙ୍କୀର୍ତ୍ତନ ହେବାପରେ ତାଙ୍କ ନିକଟେ ଭୋଗ ଲାଗୁଥିଲା । ଏହାପରେ ସମସ୍ତେ ଏକତ୍ରିତ ବସି ଭୋଜନ କରୁଥିଲେ । ଘରର ଘରଧେୟ ଓ ଖାଦ୍ୟ ସାମଗ୍ରୀ ଅତି ସରଳଭାବେ ଖଦଡ଼ ଓ ନିରାମିଷ ହେଉଥିଲା । ଅଣ୍ଡତର ଭାରତୀୟ ଗୁରୁକୁଳାଶ୍ରମକୁ ଭିତ୍ତିକରି 'ସମିତି'ର ଏକ ମଠ ବା ମଣ୍ଡ, ନିୟମ ପ୍ରଣୟନ ହୋଇଥିଲେ ମଧ୍ୟ, ମୁଖ୍ୟତଃ ସେଥିରେ ଆଧ୍ୟାତ୍ମିକ ଭାବ, ରାଜନୈତିକ ଚେତନା ଓ ସମାଜ ସେବା ଶିକ୍ଷାକୁ ଅଗ୍ରାଧିକାର ଦିଆଯାଉଥିଲା । ଏଥିରେ ବିଶିଷ୍ଟ ଧର୍ମ ପ୍ରଚାରକ ବାବାଜୀ ଶ୍ରୀ ବୃନ୍ଦାବନ ପଣ୍ଡା, ସଂସ୍କୃତ ପଣ୍ଡିତ ୰ ରାମଚନ୍ଦ୍ର କର ତଥା ଓଡ଼ିଶାର ପ୍ରଖ୍ୟାତ ସଙ୍ଗୀତଜ୍ଞ ବୀଣା ବିଶାରଦ ଅଧ୍ୟାପକ ୰ ତାରିଣୀ ଚରଣ ପାତ୍ର ପ୍ରମୁଖ ଯୋଗ ଦେଇଥିଲେ । 'ସମିତି'ର ୧୭ ଜଣିଆ ବିଶିଷ୍ଟ ଗୋଟିଏ ପରିଚାଳନା କମିଟି ଥିଲା । ଯେଉଁଥିରେ କ ୰ କୃଷ୍ଣ ମିଶ୍ର, ୰ ଗଣେଶ ରଥ, ଶ୍ରୀ କୃଷ୍ଣ ଚନ୍ଦ୍ର ତ୍ରିପାଠୀ, ୰ ଦଣ୍ଡପାଣି ପଣ୍ଡା, ଗୋପିନାଥ ବେହେରା, ୰ ରାମଚନ୍ଦ୍ର ବିଶ୍ୱାଳ, ଏବଂ ଶ୍ରୀ ବୃନ୍ଦାବନ ପଣ୍ଡା, ଉଦ୍ଧବାନନ୍ଦ ପ୍ରଧାନ, ମଦନ ମୋହନ ତ୍ରିପାଠୀ, ସୋମନାଥ ପାଣିଗ୍ରାହୀ, ଭଗିରଥି ପଣ୍ଡା, ଲକ୍ଷ୍ମଣ ବିଶ୍ୱାଳ, ଭରତ ବିଶ୍ୱାଳ, ୰ ପୀତବାସ ପାଣିଗ୍ରାହୀ, ଶ୍ରୀ କହ୍ନ ପ୍ରଧାନ ଓ ଶ୍ରୀ ମୋହନ ପ୍ରଧାନ ପ୍ରମୁଖ ସଭ୍ୟ ଥିଲେ । ପରାମର୍ଶଦାତା ଭାବେ ସାମ୍ବାଦିକ ଶ୍ରୀ ରାମଚନ୍ଦ୍ର ଦାଶ, ଶ୍ରୀ ହରିହର ପଟ୍ଟନାୟକ, ସାମ୍ବାଦିକ ୰ ଖଲି ପାଢ଼ୀ, ବିଶିଷ୍ଟ ଲେଖକ ୰ ରାଧାକୃଷ୍ଣ ପ୍ରଧାନ ପ୍ରମୁଖ ଥିଲେ । ଏକାଧାରରେ "ଓଡ଼ିଆ ଯୁବ ସମିତି" ବ୍ରହ୍ମଦେଶରେ ଜାତୀୟ ସଂସ୍କୃତି ଓ ସ୍ୱାଧୀନତା ଆନ୍ଦୋଳନର ବାର୍ତ୍ତାବହ ତଥା ପ୍ରେରଣାର ଉତ୍ସ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏହି 'ସମିତି' ମାଧ୍ୟମରେ "ବର୍ମା-ଓଡ଼ିଆ ମୈତ୍ରୀ ସଂଘ" ଗଢ଼ାଯାଇଥିଲା, ଯେଉଁଥିରେ କି ସର୍ବଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ, ହରିହର ପଟ୍ଟନାୟକ, ସିଂହାଦ୍ରି ପଟ୍ଟନାୟକ, ବାମଦେବ ବଡ଼ସେନା ଓ ରାଧାକୃଷ୍ଣ ପ୍ରଧାନ ପ୍ରମୁଖ ସଭ୍ୟ ଥିଲେ। ବର୍ମା-ଓଡ଼ିଆଙ୍କ ଭିତରେ ଭେଦା ଭେଦ ଭୁଲି, ପରସ୍ପର ମଧ୍ୟେ ସଦ୍‌ଭାବ ରକ୍ଷି ନିଜ ନିଜର ସାହିତ୍ୟ ସଂସ୍କୃତି ଆଦାନ ପ୍ରଦାନ କରିବା ଉଦ୍ଦେଶ୍ୟରେ ଉକ୍ତ ସଂଘ ବହୁ ସମୟରେ ସ୍ଥାନୀୟ ଓଡ଼ିଆ ଓ ବର୍ମୀଜ୍ ନେତାମାନଙ୍କୁ ଏକତ୍ରିତ କରି ସଭା ସମିତି ଜରିଆରେ ଆଲାପ-ଆଲୋଚନା କରୁଥିଲେ।

ଆସନ୍ନ ନିକଟ ଭବିଷ୍ୟ ବିଶ୍ୱ-ଯୁଦ୍ଧ ପୂର୍ବରୁ 'ସମିତି'ର ସଦସ୍ୟମାନେ ବିଭିନ୍ନ ଯାଗାକୁ ଯାଇ ପ୍ରବାସୀ ଓଡ଼ିଆମାନଙ୍କ ମଧ୍ୟରେ ଭବିଷ୍ୟତ ଯୁଦ୍ଧର ଭୟାବହତା ସମ୍ବନ୍ଧେ ସୂଚନା ଦେଇ ସେମାନଙ୍କୁ ସତର୍କ ବାଣୀ ଶୁଣାଇଥିଲେ ଯେ, "ଯୁଦ୍ଧ ଲାଗିଲେ ରିକ୍ତ-ହସ୍ତ ହୋଇ ଚାଲିଯିବା ଅପେକ୍ଷା, ଯିଏ ଯେଉଁଠି ଅଛନ୍ତି, ସ୍ଥାନୀୟ ବର୍ମୀଜ ଭାଇଙ୍କ ସଙ୍ଗେ ମିଳିମିଶି ନିଜର ଧନ ଜୀବନ ରକ୍ଷାକରି ନିରାପଦରେ ରହିବାକୁ ଚେଷ୍ଟା କରିବ।" ବ୍ରହ୍ମଦେଶର ପୁର-ପଲ୍ଲୀରେ ଏପରି କୌଣସି ଯାଗା ବାକି ନଥିଲା, ଯେଉଁଠାରେ କି ଓଡ଼ିଆ ଲୋକ ନଥିଲେ। କିନ୍ତୁ ସେହିସବୁ କ୍ଷେତ୍ରରେ କେବଳ ମାତ୍ର ଓଡ଼ିଆ ଯୁବ ସମିତିର ସଦସ୍ୟମାନେ ଯୋଗସୂତ୍ର ରକ୍ଷା କରିବାରେ ସକ୍ଷମ ହୋଇଥିଲେ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ୧୯୪୧ ଡିସେମ୍ବର ୭ ତାରିଖ ଦିନ ଜାପାନ ପକ୍ଷରୁ ବ୍ରିଟିଶ ବିରୁଦ୍ଧରେ ଯୁଦ୍ଧ ଘୋଷଣା ହେବା ସଙ୍ଗେ ସଙ୍ଗେ ରେଙ୍ଗୁନ ସହର ଓ କଳକାରଖାନା ଉପରେ ପ୍ରବଳ ବୋମା ବର୍ଷଣ ହେବା ଯୋଗୁଁ, ବହୁଲୋକ ହତାହତ ହେଲେ। ବାକି ଅନ୍ୟମାନେ ଭୟରେ ଘର ଦ୍ୱାର, ସମସ୍ତ ଛାଡ଼ି ସହର ତ୍ୟାଗ ପୂର୍ବକ ମଫସଲକୁ ଚାଲିଗଲେ। ଥୋକାଏ ସହରସ୍ଥ ଓଡ଼ିଆ ଲୋକ ପଦବ୍ରଜରେ ସ୍ୱଦେଶାଭିମୁଖେ ଚାଲି ଚାଲି ବାଟରେ ରୋଗ ଶୋକ ଦ୍ୱାରା ସର୍ବସ୍ୱାନ୍ତ ହୋଇ ଭୋକ ଉପାସରେ ମଲେ। ଆଉ କେତେକ ଦୀର୍ଘ ବନପଥର ଆରକାନ୍ ଓ ଆସାମ ରାସ୍ତାରେ ଚାଲି ଚାଲି ବଙ୍ଗଳାରେ ପହଞ୍ଚି, ସେଠାରୁ କୌଣସିମତେ ନିଜ ଗ୍ରାମକୁ ଆସି ରୋଗାକ୍ରାନ୍ତ ହୋଇ ଶେଷ ନିଶ୍ୱାସ ତ୍ୟାଗ କଲେ।

ଠିକ୍ ସେତିକିବେଳେ ଦକ୍ଷିଣପୂର୍ବ ଏସିଆରେ ଜାପାନର ଚରମ ଆଘାତ ସହ୍ୟ କରିନ'ପାରି ଇଂରେଜମାନେ ନିଜର ଧନ ଜୀବନ ଧରି ପ୍ରାଣ ବିକଳରେ କୌଣସିମତେ ପ୍ରାଚ୍ୟ-ଭୂଖଣ୍ଡ ଛାଡ଼ି ଚାଲିଯିବାକୁ ନିଷ୍ପତ୍ତି କଲେ। ତଦନୁସାରେ ୧୯୪୨ ମସିହା ପ୍ରାରମ୍ଭରେ ସେମାନେ ନିଜର ବୁଜୁଳା ପଟା ବାନ୍ଧି ବିଭିନ୍ନ ଯାନ-ବାହାନରେ ଚଢ଼ି, ଇଂଲଣ୍ଡ ତଥା ଭାରତ ବର୍ଷକୁ ପଳାଇ ଆସିଲେ। ବାକି ସେଠାରେ ପଡ଼ି ରହିଥିଲେ

କେବଳ ପ୍ରବାସୀ ଭାରତୀୟଗଣ, ସେମାନଙ୍କ ପାଇଁ ଆସିଥିବା ପଥ ବନ୍ଦ ହୋଇଗଲା । ସେତେବେଳେ ବ୍ରହ୍ମଦେଶର ବିଭିନ୍ନ ଜେଲଖାନାରେ ଯେଉଁ ସବୁ ଘୋର ଡକାୟତ, ଗୁଣ୍ଡାମାନେ ଆବଦ୍ଧ ଥିଲେ, ସେମାନଙ୍କୁ ବ୍ରିଟିଶ ଚାଲିଆସିବା ସମୟରେ ମୁକ୍ତକରି ଘାଟ, ପୋର୍ଟ, ଥାନା ଯେତେକ ଆଇନ ସଂସ୍ଥା ସବୁ ଉଚ୍ଛେଦ କରି ଦେଇଥିଲେ । ଫଳରେ ସେହି ସବୁ ଦୁର୍ଦ୍ଧର୍ଷ ଗୁଣ୍ଡାମାନେ ପୂର୍ବ କଳ୍ପିତ ଯୋଜନାନୁଯାୟୀ ଗତ ୧୯୪୨ ମସିହାର ଠିକ୍ ଦୋଳପୂର୍ଣ୍ଣିମା ଦିନ ସମଗ୍ର ବ୍ରହ୍ମଦେଶରେ ଗଣବିପ୍ଳବ ବା (ସିଭିଲ ୱାର୍) ଆରମ୍ଭ କଲେ । ଯେଉଁଥିରେ କି ପ୍ରବାସୀ ଭାରତୀୟଙ୍କର ଧନ ସମ୍ପତ୍ତି ଲୁଟି, ଘରଦ୍ୱାର ପୋଡ଼ି, ହଜାର ହଜାର ଲୋକଙ୍କୁ ନାରକୀୟଭାବେ ହତ୍ୟା କରାଗଲା । ବିଶେଷକରି ନିରକ୍ଷର ଓଡ଼ିଆ ଶ୍ରମିକଙ୍କର ଏଥିରେ ବିପୁଳ ପରିମାଣରେ ଧନ ଜୀବନ କ୍ଷତି ଘଟିଥିଲା । ପ୍ରାୟ ୩ ମାସ ଧରି ଏହିପରି ଅମାନୁଷିକ ବିଭତ୍ସ କାଣ୍ଡ ତଥା ଅରାଜକତା ଚାଲିବାପରେ ପରିଶେଷରେ ଜାପାନୀମାନେ ପହଞ୍ଚି ମିଲିଟାରୀ ଶାସନ ପ୍ରବର୍ତ୍ତନକରି ଶାନ୍ତି ଶୃଙ୍ଖଳା ଫେରାଇ ଆଣିଥିଲେ । ଅବଶ୍ୟ ଏହା ପୂର୍ବରୁ ଗଣ୍ଡଗୋଳରେ କଷ୍ଟପାଇଥିବା ଓଡ଼ିଆମାନେ ଉପରେ ମଫସଲ ଗ୍ରାମରୁ ବଡ଼ ବଡ଼ ସହରକୁ ଆସି ଆଶ୍ରୟ ନେଇଥିଲେ । 'ଓଡ଼ିଆ ସେବା ସମିତି' ତଳ ବର୍ମାର ମ୍ୟାଙ୍ଗ୍ ମିଆଁ ସହରଠାରେ ଡକାୟତମାନଙ୍କ ଦ୍ୱାରା ସମସ୍ତ ସମ୍ପତ୍ତି ହରାଇ ଜଳ ପଥରେ ଆସି ରେଙ୍ଗୁନ ସହରସ୍ଥ ମହାନ୍ତଶାନ ଭଗବାନ ଦାଶ ବଗିଚାରେ ଆଶ୍ରୟ ନେଇଥିଲେ । ଜାପାନ ଅଧିକାର ପରେ ବ୍ରହ୍ମଦେଶରେ ପୂର୍ବପରି ଶୃଙ୍ଖଳାଗତ ଶାସନ ଚାଲିଲା । ଓଡ଼ିଆମାନେ ନିଜର ଜୀବିକାର୍ଜନପାଇଁ ଜାପାନ ଅଧୀନରେ ବିଭିନ୍ନ କ୍ଷେତ୍ରରେ କାର୍ଯ୍ୟ ଆରମ୍ଭ କଲେ ।

ଏହାବସରରେ ଭାରତୀୟ ସ୍ୱାଧୀନତା ସଂଗ୍ରାମର ବିପ୍ଳବୀ ରାସବିହାରୀ ବୋଷଙ୍କ ନେତୃତ୍ୱରେ 'ଭାରତୀୟ ସ୍ୱାଧୀନତା ସଂଘ' (Indian Independence League) ପ୍ରଥମେ ସିଙ୍ଗାପୁରଠାରେ ପ୍ରତିଷ୍ଠା ହୋଇ, ତାର ଶାଖା ପ୍ରଶାଖା ସମଗ୍ର ଦକ୍ଷିଣ ପୂର୍ବ ଏସିଆର ବଡ଼ ବଡ଼ ସହର ମାନଙ୍କରେ ଖୋଲାଗଲା । ଦେଶର ସ୍ୱାଧୀନତାପାଇଁ ସ୍ୱେଚ୍ଛା-ସେବକ ଭାବେ "ଭାରତୀୟ ସ୍ୱାଧୀନତା ସଂଘ"ରେ ଯୋଗ ଦେବାକୁ, ସଂଘ ପକ୍ଷରୁ ପ୍ରବାସୀ ଭାରତୀୟଙ୍କୁ ଅନୁରୋଧ କରାଗଲା । ସେତେବେଳେ ଓଡ଼ିଆ ସେବା ସମିତିର ଅଧ୍ୟକ୍ଷ ଶ୍ରୀ କୃଷ୍ଣ ଚନ୍ଦ୍ର ତ୍ରିପାଠୀଙ୍କ ପ୍ରସ୍ତାବ ଅନୁସାରେ ସମିତିର ସମସ୍ତ ସଦସ୍ୟ ଉକ୍ତ ସଂଘରେ ଯୋଗ ଦେବା କଥା ସ୍ଥିର ହେଲା । ତଦାନୁସାରେ ୧୯୪୨ ଅକ୍ଟୋବର ୧୫ ତାରିଖଦିନ ସମିତିର ସଦସ୍ୟମାନେ 'ଭାରତୀୟ ସ୍ୱାଧୀନତା ସଂଘ'ରେ ଯୋଗଦେଇ ସ୍ୱେଚ୍ଛା-ସେବକ ରୂପେ କାର୍ଯ୍ୟ କଲେ । ସେତେବେଳେ ଭାରତୀୟଙ୍କ ଭିତରେ ସ୍ୱତଃ ଜାତୀୟଜାଗରଣ ଆସିଥିଲା । ସଂଘ ପରିଚାଳନାଧୀନ ଜେନେରାଲ୍ ମୋହନ ସିଂହଙ୍କ ନେତୃତ୍ୱରେ ଆଜାଦହିନ୍ଦ୍ ସେନା ବାହିନୀ ମଧ୍ୟ ଗଢ଼ିଉଠିଲା ।

ଅଥଚ କନ୍ଫରେନ୍ସ ପରେ ଜାପାନୀ କର୍ତ୍ତୃପକ୍ଷଙ୍କ ସଙ୍ଗେ ମୋହନ ସିଂହଙ୍କର ମତାନ୍ତର ଘଟିବା ଯୋଗୁଁ ସୈନିକ ସଂସ୍ଥା ପ୍ରଗତିରେ ବାଧା ପଡ଼ିଲା । କିନ୍ତୁ ସ୍ୱାଧୀନତା ସଂଘ କାର୍ଯ୍ୟ ଚାଲିଥିଲା । ସୈନିକ ସଂସ୍ଥା ବନ୍ଦ ହେବା ଦେଖି,ରାସବିହାରୀ ବୋଷ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ନିକଟକୁ ଶୀଘ୍ର ପ୍ରାଚ୍ୟଭୂଖଣ୍ଡକୁ ଆସିବାପାଇଁ ନିମନ୍ତ୍ରଣ ପଠାଇଲେ । ୧୯୪୩ ଫେବୃଆରୀ ମାସରେ ନେତାଜୀ ଜର୍ମାନୀରୁ ବୁଡ଼ାଜାହାଜ ଯୋଗେ ଆସି ୧୯୪୩ ମଇ ମାସ ଶେଷକୁ ପୂର୍ବ ଏସିଆରେ ପହଞ୍ଚିଥିଲେ । ଟୋକିଓଠାରେ କନ୍ଫରେନ୍ସ ପରେ, ସେ ୧୯୪୩ ଜୁନ୍ ୨ ତାରିଖ ଦିନ ସିଙ୍ଗାପୁରରେ ପହଞ୍ଚି, ରାସ ବିହାରୀ ବୋଷଙ୍କ ନିକଟରୁ ଭାରତୀୟ ସ୍ୱାଧୀନତା ସଂଘର ଦାୟିତ୍ୱଭାର ଗ୍ରହଣ କରିଥିଲେ । ୧୯୪୩ ଜୁନ୍ ୫ ତାରିଖ ଦିନ ନେତାଜୀ ଜାତୀୟ ସଂଘ ପୁନର୍ଗଠନ କରି, ଆଜାଦହିନ୍ଦ ଗଭର୍ଣ୍ଣମେଣ୍ଟ ଓ ଜାତୀୟ ଫୌଜ ପରିବର୍ତ୍ତେ "ଆଜାଦହିନ୍ଦ ଫୌଜ" ନାମ ରଖି, ପ୍ରବାସି ଭାରତୀୟଙ୍କୁ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବା ପାଇଁ ଆହ୍ୱାନ ଜଣାଇଥିଲେ ।

ଏଠାରେ ଓଡ଼ିଆ ରାସ ସମିତିର ଦୂରଦୃଷ୍ଟି ସମ୍ପନ୍ନ ଦେଶାତ୍ମବୋଧ କାର୍ଯ୍ୟ ଉଲ୍ଲେଖନୀୟ ଯେ,ନେତାଜୀ ଜର୍ମାନୀରୁ ପ୍ରାଚ୍ୟକୁ ଆସି ଆଜାଦହିନ୍ଦ ସରକାର ପ୍ରତିଷ୍ଠା କରିବା ଦଶମାସ ପୂର୍ବରୁ ସମିତିର ୪୫ ଜଣ ସଭ୍ୟ ଦଳବଦ୍ଧଭାବେ ସର୍ବ ପ୍ରଥମେ ଜାତୀୟ ସଂଘରେ ଯୋଗଦେଇ ସ୍ୱେଚ୍ଛା-ସେବକ ଭାବେ କାର୍ଯ୍ୟ କରୁଥିଲେ । ସେମାନେ ହେଲେ ସର୍ବ ଶ୍ରୀ କୃଷ୍ଣ ଚନ୍ଦ୍ର ତ୍ରିପାଠୀ, ବୃନ୍ଦାବନ ପଣ୍ଡା, ଉତ୍ସବାନନ୍ଦ-ପ୍ରଧାନ, ମଦନ ମୋହନ ତ୍ରିପାଠୀ, ସୋମନାଥ ପାଣିଗ୍ରାହୀ, ଭଗିରଥି ପଣ୍ଡା, କିଶୋର ଚନ୍ଦ୍ର ମିଶ୍ର, ନାରାୟଣ ପୃଷ୍ଟି, ମୋହନ ପ୍ରଧାନ, ବୀରଭଦ୍ର କରଣ, ହରିବନ୍ଧୁ କରଣ, କାଳୁପାଣି ପ୍ରଧାନ, ଭବାନୀ ମହାପାତ୍ର, ବସ୍ତ୍ର ପାତ୍ର, ମାଧବ ମହାରଣା, ଦଣ୍ଡପାଣି ମହାରଣା ବୁଦ୍ଧି ବେହେରା, ବୃନ୍ଦାବନ ବେହେରା, ଦୁଃଖୀକୃଷ୍ଣ ଚୌଧୁରୀ, ସୋମବାର ନାହକ, କହ୍ନ ଦଳାଇ, ଝିଣା ସେଠୀ ଅର୍ଜୁନ ପ୍ରଧାନ, ବିନାୟକ ମିଶ୍ର, ଉଦୟନାଥ ପ୍ରଧାନ, କୃଷ୍ଣ ସେନା,ରଙ୍କ ପ୍ରଧାନ, ଆନନ୍ଦ ବଣ୍ଟାଳ, ବନମାଳୀ ସେଠୀ, ନଟବର ଚୌଧୁରୀ, ଅର୍ଜୁନ ଗୌଡ଼, ରଘୁ ବେହେରା, ଅରକ୍ଷିତ ଭୂୟାଁ, ବୁଦ୍ଧି ନାୟକ ତଥା ମୃତ ବ୍ୟକ୍ତିଙ୍କ ମଧ୍ୟରୁ ୮ ଶ୍ରୀଧର ସ୍ୱାଇଁ, ପୀତବାସ ପାଣିଗ୍ରାହୀ, ଗଣେଶ୍ୟ ରଥ, ଖଗେଶ୍ୱର ପଣ୍ଡା, ହରି ପାତ୍ର, ପଣ୍ଡିତ ରାମଚନ୍ଦ୍ର କର, ଶିବରାମ ମହାପାତ୍ର, ଭବାନୀ ଭଣା, ମଧୁସୂଦନ ବେହେରା ଓ ଗୋବିନ୍ଦ ରାମ ପୃଷ୍ଟି ପ୍ରଭୃତି ।

ନେତାଜୀଙ୍କ ଦ୍ୱାରା ଯେତେବେଳେ ବିଧିବଦ୍ଧ ଭାବେ ଆଜାଦହିନ୍ଦ୍ ସରକାର ପ୍ରତିଷ୍ଠିତ ହେଲା, ସେତେବେଳେ ଉପରୋକ୍ତ ବ୍ୟକ୍ତିମାନେ ସ୍ୱେଚ୍ଛା-ସେବକରୁ ଅବ୍ୟାହତି ନେଇ ଆଜାଦହିନ୍ଦ୍ ଫୌଜର ବିଧିବଦ୍ଧ ତାଲିମ୍ କେନ୍ଦ୍ରରେ ଅସ୍ତ୍ରଶସ୍ତ୍ର ଓ

ଯୁଦ୍ଧବିଦ୍ୟା ଶିଖି, ଯୁଦ୍ଧ କ୍ଷେତ୍ରକୁ ଯାଇ ନିଜର କର୍ତ୍ତବ୍ୟ ପାଳନ କରିଥିଲେ । ଓଡ଼ିଆ ସଂଘ ସମିତିରେ ଲକ୍ଷ୍ମୀ ଓ ନକୁଳ ନାମକ ଭାଇ ଭଉଣୀ ଦୁଇଜଣ ସ୍କୁଲପିଲା ଥିଲେ, ନକୁଳ ବାଲ୍ ସେନାରେ ଏବଂ ଲକ୍ଷ୍ମୀଙ୍କୁ ଝାନ୍ସୀରାଣୀ ରେଜିମେଣ୍ଟରେ ଭର୍ତ୍ତି କରାଯାଇଥିଲା । ଏଠାରେ ପ୍ରକାଶ ଥାଉକି— ଆଜାଦହିନ୍ଦ ଫୌଜରେ ବାଲ୍ ସେନା ଓ ଝାନ୍ସୀ ରେଜିମେଣ୍ଟରେ ଓଡ଼ିଆ ଭାବେ କେବଳ ମାତ୍ର ଏହି ଦୁଇଜଣ ପିଲା ଥିଲେ ।

୧୯୪୩ ଜୁଲାଇ ମାସ ମଧ୍ୟ ଭାଗରେ ନେତାଜୀ ରେଙ୍ଗୁନରେ ପହଞ୍ଚିଲେ, ଭାରତୀୟଙ୍କ ପକ୍ଷରୁ ବିପୁଳ ସମ୍ବର୍ଦ୍ଧନା ଦିଆଗଲା । ସେତେବେଳେ ଓଡ଼ିଆ ସଂଘ ସମିତି ଉଦ୍ୟମରେ ରେଙ୍ଗୁନ ଓଡ଼ିଆଙ୍କ ପକ୍ଷରୁ ଆନୁଷ୍ଠାନିକ ଭାବେ ଟ ୨୧,୧୧୧-୦୦ ର ଏକ ଥଳି ନେତାଜୀଙ୍କୁ ଭେଟି ଦିଆଯାଇଥିଲା । ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ ନେତାଜୀଙ୍କ ବ୍ୟକ୍ତିଗତ ସମ୍ପର୍କରେ ଆସି ସବୁ ପ୍ରଥମେ ଆଜାଦହିନ୍ଦ ଫୌଜର ଲୋକ ସଂଗ୍ରହ ପ୍ରଚାର ବିଭାଗ ଅଫିସର ରୂପେ ନିଯୁକ୍ତି ପାଇଥିଲେ । ପରବର୍ତ୍ତୀକାଳେ ଶ୍ରୀ ତ୍ରିପାଠୀ ବ୍ରହ୍ମଦେଶସ୍ଥ ଓଡ଼ିଆଙ୍କ ସମ୍ବନ୍ଧରେ ନେତାଜୀଙ୍କ ଦୃଷ୍ଟି ଆକର୍ଷଣକରି ଅନୁରୋଧ କରିଥିଲେ ଯେ, "ଅଧିକାଂଶ ଓଡ଼ିଆ ଲୋକ କୃଷି ଓ ଶ୍ରମିକ ଶ୍ରେଣୀର, ସେମାନଙ୍କ ମଧ୍ୟରେ ଶିକ୍ଷାଗତ ଯୋଗ୍ୟତା ଅଭାବ । ତେଣୁ ସ୍ୱତନ୍ତ୍ରଭାବେ ଗୋଟିଏ ଓଡ଼ିଆ ତାଲିମ କେନ୍ଦ୍ର ସ୍ଥାପନପାଇଁ ପ୍ରସ୍ତାବ ଦେଇଥିଲେ ।" ଏଥିରେ ନେତାଜୀ ବାସ୍ତବତାକୁ ହୃଦୟଙ୍ଗମକରି ପୃଥକ ଓଡ଼ିଆ ତାଲିମ କେନ୍ଦ୍ର ତାହାକୁ ଅନୁମୋଦନ କରିଥିଲେ । କିଛି ଦିନପରେ ରେଙ୍ଗୁନ ନିକଟ ମଯ୍ୟାଗାଉଁଠାରେ ସ୍ୱତନ୍ତ୍ର ଓଡ଼ିଆ ତାଲିମ କେନ୍ଦ୍ର ସ୍ଥାପିତ ହୋଇ, ଓଡ଼ିଆ ଅଫିସରଙ୍କ ପରିଚାଳନାରେ ଓଡ଼ିଆ ଲୋକେ ଯୁଦ୍ଧ ବିଦ୍ୟା ତାଲିମ ପାଇଥିଲେ । ଏହାଛଡ଼ା ଆଜାଦହିନ୍ଦ ଫୌଜର ଅନ୍ୟାନ୍ୟ ତାଲିମ କେନ୍ଦ୍ରରେ ବହୁ ଓଡ଼ିଆ ଯୁବକ ଯୁଦ୍ଧ ତାଲିମ ସଙ୍ଗେ ସ୍ୱତନ୍ତ୍ରଭାବେ ଇନଷ୍ଟ୍ରକ୍ଟର ଓ ଅଫିସର ତାଲିମ ମଧ୍ୟ ପାଉଥିଲେ । ଆଜାଦହିନ୍ଦ ଫୌଜରେ ଓଡ଼ିଆ ଲୋକଙ୍କର ସଂଖ୍ୟା ପ୍ରାୟ ତିନିଶହ ପଚାଶ (୩୫୦) । ସେଥି ମଧ୍ୟରୁ କେବଳ ଗଞ୍ଜାମ ଜିଲ୍ଲାର ଲୋକେ ଅର୍ଦ୍ଧାଧିକରୁ ବେଶି ଥିଲେ । ଆନୁପାତିକ ଓଡ଼ିଆ ସଂଖ୍ୟା ନ୍ୟୂନ ହେଲେ ମଧ୍ୟ ସବୁ ଭାରତୀୟ ସ୍ତରରେ ସେମାନେ ପ୍ରତି କ୍ଷେତ୍ରରେ ସମତା ରକ୍ଷାକରି ନିଜର ବିଶ୍ୱସ୍ତତା ସେବା ମନୋଭାବ, ସାହସ, ଶୃଙ୍ଖଳା ତଥା ଦକ୍ଷତାର ପରିଚୟ ଦେବା ସଙ୍ଗେ ସଙ୍ଗେ ଯୁଦ୍ଧ କ୍ଷେତ୍ରରେ ଓଡ଼ିଆ ଜାତିର ଅତୀତ ଗୌରବପୂର୍ଣ୍ଣ ଭୂମିକାକୁ ପ୍ରତିପାଦିତ କରିଛନ୍ତି । ଆଜାଦହିନ୍ଦ ଫୌଜରେ ସର୍ବୋଚ୍ଚ ଓଡ଼ିଆ ଅଫିସର ଭାବେ କର୍ଣ୍ଣେଲ ବ୍ରଜମୋହନ ପଟ୍ଟନାୟକ, ସବ ଶ୍ରୀ ଡା. ଗୌରକିଶୋର ଭୂୟାଁ, ଲେଫ୍ଟନାଣ୍ଟ ନୃସିଂହ ଚରଣ ଦାଶ, କୃଷ୍ଣଚନ୍ଦ୍ର ତ୍ରିପାଠୀ, ଦାମୋଦର ପଣ୍ଡା, ଗଦାଧର ମହାପାତ୍ର, ଅଗାଧୁ ସାମନ୍ତରା ଓ ରଘୁନାଥ ବେହେରା ପ୍ରମୁଖଙ୍କ କାର୍ଯ୍ୟକଳାପ ଓ ଦକ୍ଷତା ଉଲ୍ଲେଖଯୋଗ୍ୟ ।

ଦେଶ ସ୍ୱାଧୀନତା ହେବା ୪ ବର୍ଷ ପୂର୍ବରୁ ଭାରତ ବାହାରେ ପ୍ରବାସୀ ଭାରତୀୟଙ୍କୁ ନେଇ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ୧୯୪୩ ଅକ୍ଟୋବର ୨୧ ତାରିଖ ଦିନ, ପୃଥିବୀର ୧୪ଟି ରାଷ୍ଟ୍ରର ଅନୁମୋଦନ କ୍ରମେ, ସିଙ୍ଗାପୁରଠାରେ ଯେଉଁ ସ୍ୱାଧୀନ ଭାରତ ସରକାର ପ୍ରତିଷ୍ଠାକରି, ଇଂରେଜ ଆମେରିକା ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମ ଘୋଷଣା କରିଥିଲେ, ଏହା ଥିଲା ଭାରତର ଶେଷ ସ୍ୱାଧୀନତା ସଂଗ୍ରାମ । ଏଥିରେ ପ୍ରବାସୀ ଓଡ଼ିଆମାନଙ୍କର ତ୍ୟାଗ ଓ ବଳିଦାନ ସବୁ ଭାରତୀୟ ସ୍ତରରେ ବିଚାର କଲେ, ଅନ୍ୟମାନଙ୍କ ଅପେକ୍ଷା କୌଣସି ଗୁଣରେ କମ୍ ନଥିଲା ।

ନେତାଜୀଙ୍କର ବଳିଷ୍ଠ ନେତୃତ୍ୱ ଓ ଆଜାଦହିନ୍ଦ୍ ଫୌଜର ସ୍ୱାଧୀନତା ସଂଗ୍ରାମ ସମ୍ବନ୍ଧେ ବିସ୍ତୃତ ବିବରଣୀ ଲେଖିବାକୁ ଗଲେ, ତାହା ଗୋଟିଏ ଦ୍ୱିତୀୟ ମହାଭାରତରେ ପରିଣତ ହେବ । ଅତଏବ ସେହି ମହାନ୍ ଇତିହାସର କିଛି ଅଂଶ ମାତ୍ର ଏଠାରେ ସଂକ୍ଷେପରେ ଉଦ୍ଧୃତ କରାଯାଇଛି । ସ୍ମରଣିକାରେ ଯେଉଁମାନଙ୍କର ସଂକ୍ଷିପ୍ତ ଜୀବନୀ ଦିଆଯାଇଛି, ଅବଶ୍ୟ ସେଥିରୁ ଜାତୀୟବାହିନୀର ତ୍ୟାଗ ଓ ସଂଗ୍ରାମ ବିଷୟରେ କିଛି କିଛି ଆଭାସ ପାଇପାରିବ । କିନ୍ତୁ ଦକ୍ଷିଣ ପୂର୍ବ ଏସିଆର ୩୦ ଲକ୍ଷ ପ୍ରବାସୀ ଭାରତୀୟ ଭାଇ ଭଉଣୀ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ଏହି ସଂଗ୍ରାମରେ ଭାଗ ନେଇଥିଲେ । ଏଣୁ ଭାରତବର୍ଷର ସ୍ୱାଧୀନତାପାଇଁ ସେ ସମସ୍ତେ ଜାତିର ଚିର ନମସ୍ୟ ଅଟନ୍ତି ।

ନେତାଜୀ ସୁଭାଷ ଚନ୍ଦ୍ର ତଥା ଓଡ଼ିଶା ଆଜାଦହିନ୍ଦ୍ ଫୌଜ ଜୀବନୀ ସ୍ମରଣିକା ପ୍ରକାଶ କରିବାପାଇଁ ବହୁ ବାଧାବିଘ୍ନ ଭିତରେ ଗତିକରିବାକୁ ପଡିଛି । ଏଥିରେ ନେତାଜୀ ଆଜାଦହିନ୍ଦ୍ ସଂଗ୍ରାମୀ ତଥା ଅନ୍ୟାନ୍ୟ ନେତୃସ୍ଥାନୀୟ ସଂଗ୍ରାମୀଙ୍କ ଫଟୋ, ଜୀବନୀ ଓ ବ୍ଲକ୍ ତିଆରି ଇତ୍ୟାଦିରେ ବହୁ ସମୟ ଅତିବାହିତ ହୋଇଗଲା । ତଥାପି ଏ ସବୁ ଅସୁବିଧା ଅତିକ୍ରମ କରି ସଂଘର ସାଧାରଣ ସମ୍ପାଦକ ଶ୍ରୀ ଭଗବାନନ୍ଦ ପ୍ରଧାନ ଓ ସଭାପତି ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ଅକ୍ଳାନ୍ତ ପରିଶ୍ରମ ଓ ହାର୍ଦ୍ଦିକ ସହଯୋଗରେ ସ୍ମରଣିକାଟି ଯଥାଶୀଘ୍ର ପ୍ରକାଶ ପାଇବା ସମ୍ଭବ ହୋଇପାରିଛି । ଏଥିପାଇଁ ସେ ଉଭୟଙ୍କ ନିକଟରେ ଆମେ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛୁ ।

କାର୍ଯ୍ୟକାରୀ କମିଟି
"ଓଡ଼ିଶା ଆଜାଦହିନ୍ଦ୍ ଫୌଜ ସଂଘ",
ନେତାଜୀମାର୍ଗ, ବୁଂକଲବାଟୁ, ଗଞ୍ଜାମ

———

# ଉପକ୍ରମଣିକା

•

ନେତାଜୀ ସୁଭାଷ ଚନ୍ଦ୍ର ବୋଷ ତଥା ଓଡ଼ିଶା ଆଜାଦହିନ୍ଦ୍ ଫୌଜର ସଂକ୍ଷିପ୍ତ ଜୀବନୀ ସମ୍ବଳିତ ସ୍ମରଣିକା ପ୍ରକାଶ କରିବାପାଇଁ ବହୁତ ଦିନରୁ ପରିକଳ୍ପନା ଥିଲେ ମଧ୍ୟ କେତେକ ଅନିବାର୍ଯ୍ୟ କାରଣ ଯୋଗୁଁ ତାହା ସମ୍ଭବପର ହୋଇନଥିଲା । ପ୍ରଥମେ ଶ୍ରୀ ଉତ୍ସବାନନ୍ଦ ପ୍ରଧାନ, ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ ଓ ୰ ଶ୍ରୀନିବାସ ପାଣିଗ୍ରାହୀ ପ୍ରମୁଖ ପଣ୍ଡିତମାନଙ୍କ ଆଇ. ଏନ. ଏ. ଏସୋସିଏସନ୍ କାର୍ଯ୍ୟକାରୀ କମିଟିର ସଦସ୍ୟ ଥିବାବେଳେ, ଓଡ଼ିଶାରେ ଅନୁରୂପ ଗୋଟିଏ ସଂଘ ଗଠନ କରିବାପାଇଁ ମନସ୍ଥ କଲେ । ତା ୧୮-୯-୭୧ରେ ଭାରତ ସରକାର ଦୁସ୍ଥ ରାଜନୈତିକ ଭତ୍ତା ଦେବା କଥା ଘୋଷଣା କଲେ । ସେତେବେଳେ ଉକ୍ତ ବ୍ୟକ୍ତିମାନେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ତଥା ଗୃହ ମନ୍ତ୍ରୀଙ୍କ ନିକଟକୁ ତା ୧୬-୧୨-୭୧ ରିଖରେ ଭତ୍ତା ସକାଶେ ଦରଖାସ୍ତ କରିଥିଲେ । ଏହାପରେ ସେମାନେ ୧୯୭୨ ରେ ଓଡ଼ିଶାକୁ ଆସି ଗଞ୍ଜାମ ଜିଲ୍ଲାର ହିଞ୍ଜିଳିକାଟୁଠାରେ କେତେଜଣ ଆଇ. ଏନ. ଏ ବ୍ୟକ୍ତିଙ୍କୁ ଏକତ୍ରିତ କରି, 'ଓଡ଼ିଶା ଆଇ. ଏନ. ଏ. ଏସୋସିଏସନ' ନାମରେ ଗୋଟିଏ ସଂସ୍ଥା ଗଠନ କଲେ । ଜାତି ଧର୍ମ ନିର୍ବିଶେଷରେ ଗୋଟିଏ ଆଇ. ଏନ. ଏ. କଲୋନୀ ସ୍ଥାପନ କରିବାପାଇଁ, କବିସୂର୍ଯ୍ୟ ନଗର ନିକଟ ବୋରିଙ୍ଗ୍ ହିଲ୍ଠାରେ ପ୍ରାୟ ୩୭ ଏକର ଜମି ଦେବା ସକାଶେ, ତତ୍କାଳୀନ ଗଞ୍ଜାମ ଜିଲ୍ଲାପାଳଙ୍କ ନିକଟରେ ଲିଖିତାକାରେ ଦାବି ଉପସ୍ଥାପନ କରିଥିଲେ । ତାହା ମଧ୍ୟ ମଞ୍ଜୁର ହୋଇଥିଲା । କିନ୍ତୁ ଆଇ. ଏନ. ଏ. ବନ୍ଧୁମାନେ ସେଠାରେ ବସତି ରହିବାପାଇଁ ଇଚ୍ଛା କରିନଥିଲେ, ଫଳରେ ଉକ୍ତ ଜାଗାଟି ହାତଛଡ଼ା ହୋଇଗଲା ।

ପରବର୍ତ୍ତିକାଳେ ସଂଘର ପ୍ରସାର ଉଦ୍ଦେଶ୍ୟରେ ୧୯୫୭ରେ ଗଠିତ ଆଇ. ଏନ. ଏ. ରିଲିଫ୍ କମିଟିର ତାଲିକାନୁଯାୟୀ ଓଡ଼ିଶାର ସମସ୍ତ ଆଇ. ଏନ. ଏ. ମାନଙ୍କୁ ପତ୍ର ଦେଇ ୧୯୭୫ ମାର୍ଚ୍ଚ ମାସରେ ଆଠଗଡ଼ ପାଟଣା ଠାରେ ଗୋଟିଏ ସମ୍ମିଳନୀ ଆହୂତ ହେଲା । ସେତେବେଳେ ସଂଘକୁ ପୁନର୍ଗଠନ କରି 'ଓଡ଼ିଶା ଆଜାଦହିନ୍ଦ୍ ଫୌଜ ସଂଘ' ରଖାଗଲା । ଏହି ସଂଘ ଦୀର୍ଘ ୨୫ ବର୍ଷ ହେଲା ଆଇ. ଏନ. ଏ. ସାଥୀମାନଙ୍କର ସେବା କରିବା ସଙ୍ଗେ ସଙ୍ଗେ ଜିଲ୍ଲାର ବିଭିନ୍ନ ଅଂଶରେ, ନେତାଜୀ ଜୟନ୍ତୀ, ଆଜାଦହିନ୍ଦ୍ ଦିବସ ତଥା ସମସ୍ତ ଜାତୀୟ ଦିବସ ପ୍ରଭୃତି ପାଳନ କରି ଆସୁଅଛି । ଏଥିରେ ଓଡ଼ିଶାର ଲୋକପ୍ରିୟ ନେତୃବୃନ୍ଦ ଯଥା —୰ ଦିବାକର ପଟ୍ଟନାୟକ, ୰ ବିନାୟକ ଆଚାର୍ଯ୍ୟ, ୰ ଗୋବିନ୍ଦ ପ୍ରଧାନ, ଶ୍ରୀ ବନମାଳୀ ମହାରଣା, ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ, ଶ୍ରୀ ସୋମନାଥ ରଥ,

ଶ୍ରୀ ଦୁଃଖକୃଷ୍ଣ ପଣ୍ଡା, ଶ୍ରୀ ବାଞ୍ଛାନିଧି ପଟ୍ଟନାୟକ, ଶ୍ରୀ ବଳରାମ ପଣ୍ଡା, ଶ୍ରୀ ଜଗନ୍ନାଥ ମିଶ୍ର ( ନଇବନ୍ଧ ), ଶ୍ରୀ ଜାମନା ପଣ୍ଡା, ୰ ମଧୁସୂଦନ ମହାପାତ୍ର, ୰ ବୃନ୍ଦାବନ ନାୟକ, ୰ ମଦନମୋହନ ପଟ୍ଟନାୟକ ତଥା ଶ୍ରୀ ଉଦୟ ପ୍ରତାପ ସିଂହ ଦେବ (ଶରଦୁର୍ଗ ରାଜାସାହେବ) ପ୍ରମୁଖ ଯୋଗ ଦେଇ ଆମକୁ ତଥା ସଂଘକୁ ବହୁତ ଉତ୍ସାହ ପ୍ରଦାନ କରିଛନ୍ତି ।

ତା ୨୧-୧୦-୮୫ ରିଖରେ 'ଆଜାଦହିନ୍ଦ ଫୌଜ ସଂଘ'ର ନବଗଠିତ କାର୍ଯ୍ୟକାରୀ କମିଟି, ଆସିକା ଚତୁର୍ଭୁଜ ଭବନଠାରେ ଗତ ତା ୬-୧-୮୬ ରିଖ ଦିନ ବସି ନିଷ୍ପତ୍ତି କଲେ ଯେ, —"ନେତାଜୀ ଓ 'ଓଡ଼ିଶା ଆଜାଦହିନ୍ଦ ଫୌଜ'ର ଗୋଟିଏ ଜୀବନୀ ସ୍ମରଣିକା ପ୍ରକାଶ କରିବା ସଙ୍ଗେ ସଙ୍ଗେ ନେତାଜୀଙ୍କର ପୂର୍ଣ୍ଣ ଅବୟବ ତୈଳଚିତ୍ର ତଥା ବ୍ରୋଞ୍ଜମୂର୍ତ୍ତି ଜିଲ୍ଲାର ଯେକୌଣସି କେନ୍ଦ୍ର ସ୍ଥଳରେ ସ୍ଥାପନ କରାଯିବ ।" ଏଥିପାଇଁ ଯେଉଁ ଅର୍ଥ ବ୍ୟୟ ହେବ, ସେ ସବୁ ସଂଘର ସଭ୍ୟମାନେ ବହନ କରିବା ସ୍ଥିରହୋଇ ସର୍ବସମ୍ମତି କ୍ରମେ ସ୍ମରଣିକା ପ୍ରକାଶ କରିବା ଭାର ମୋ ଉପରେ ନ୍ୟସ୍ତ କଲେ ।

ନେତାଜୀଙ୍କର ମହାନ୍ ବ୍ୟକ୍ତିତ୍ୱ ଓ ଜୀବନୀ ସମ୍ବନ୍ଧେ ବହୁ ବିଶିଷ୍ଟ ଲେଖକଙ୍କ ଲେଖା ପ୍ରକାଶ ପାଇଛି । କିନ୍ତୁ ସେହି ସବୁ ବହିରେ କେତେକ ବାସ୍ତବ ଘଟଣା ଉଲ୍ଲେଖ ନଥିବା ଯୋଗୁଁ ତାହା ନେତାଜୀ ଜୀବନୀ ସ୍ମରଣିକାରେ ଆମେ ପ୍ରକାଶ କରିବାକୁ ବାଧ୍ୟ ହେଲୁ । ବିଶେଷକରି ଭାରତ ବାହାରେ ଯଥା—ଜର୍ମାନୀ, ଇଟାଲୀ ଓ ଦକ୍ଷିଣପୂର୍ବ ଏସିଆରେ ନେତାଜୀ ଯେଉଁ ଅସ୍ଥାୟୀ 'ସ୍ୱାଧୀନ ଭାରତ ସରକାର' ପ୍ରତିଷ୍ଠାକରି ଇଂରେଜ ଆମେରିକା ବିରୁଦ୍ଧରେ ବଧିବଦ୍ଧ ଭାବେ ଯୁଦ୍ଧ ଘୋଷଣା କରି ଲଢ଼େଇ କଲେ, ତାହାର ସଂକ୍ଷିପ୍ତ ଘଟଣାବଳୀ ଏଥିରେ ସନ୍ନିବେଶିତ କରାଯାଇଛି । ଏହା କୌଣସି କାଳ୍ପନିକ କଥା ବସ୍ତୁ ଉପରେ ଆଧାରିତ ନୁହେଁ । କିନ୍ତୁ ନେତାଜୀ ଭାରତବର୍ଷ ତ୍ୟାଗ ପୂର୍ବରୁ ତାଙ୍କ ନିଜ ଗୃହରେ ନଜରବନ୍ଦୀ ଥିବାବେଳେ ଛଦ୍ମବେଶରେ ପଳାୟନ କାହାଣୀ ତାଙ୍କର ଭ୍ରାତୃପୁତ୍ର ଡା. ଶିଶିର କୁମାର ବୋଷଙ୍କ ମହା ନିଷ୍କ୍ରମଣକୁ ଭିତ୍ତିକରି ଲେଖାଯାଇଛି । ଏଣୁ ସେ ମହାଶୟଙ୍କ ନିକଟରେ ମୁଁ ଚିର କୃତଜ୍ଞ ।

ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ପଣ୍ଡିତ ଶ୍ରୀ ଯୁଗଳକିଶୋର ପାଣିଗ୍ରାହୀଙ୍କ ଲିଖିତ 'ସୁଭାଷଚନ୍ଦ୍ର'ରୁ କେତେକାଂଶ ସଂଗ୍ରହକରି ଏହି ବହିରେ ଉଦ୍ଧୃତ କରିଥିବା ଯୋଗୁଁ ସେ ମହାଶୟଙ୍କ ନିକଟରେ ମୁଁ ଚିର କୃତଜ୍ଞତା ଜଣାଉଛି ।

ସ୍ମରଣିକାଟି ପ୍ରକାଶ କରିବାପାଇଁ ଆମକୁ ଅନେକ ପରିଶ୍ରମ କରିବାକୁ ହୋଇଛି । ଏଥିରେ ସ୍ୱାଧୀନତା ସଂଗ୍ରାମୀ ତଥା ନେତାଜୀଙ୍କର କେତେକ ଫଟୋ

ସଂଗ୍ରହ ଓ ବ୍ଲକ ତିଆରି କାର୍ଯ୍ୟରେ ପାଖ ଅଠର ମାସ ବିତିଗଲା । ବାରମ୍ବାର ଚିଠିପତ୍ର ଲେଖି ଅନୁରୋଧ ଜଣାଇଲେ ମଧ୍ୟ ଆଜାଦହିନ୍ଦ ଫୌଜର ବହୁଲୋକ ନିଜନିଜର ଜୀବନୀ ଓ ଫଟୋ ପଠାଇନାହାନ୍ତି । ଏପରିକି ବିଭିନ୍ନ ଖବର କାଗଜରେ ଏକାଧିକବାର ଆବେଦନ କରିବା ସତ୍ତ୍ୱେ ସେମାନେ ଜାଣିଶୁଣି ନୀରବ ରହିଲେ । ସ୍ମରଣିକାରେ ସେହି ସବୁ ସାଥୀମାନଙ୍କର ଜୀବନୀ ପ୍ରକାଶ ନ'ହୋଇ ପାରିଥିବା ଯୋଗୁଁ ଆମେ ଦୁଃଖିତ, ଯେଉଁ ସାଥୀମାନେ ଜୀବନୀ ପଠାଇନାହାନ୍ତି ବା ମୃତ୍ୟୁବରଣ କରିଛନ୍ତି, ସେମାନଙ୍କର ତାଲିକା ବହିରେ ଦିଆଯାଇଛି । ଏହା ଛଡ଼ା ଆଜାଦହିନ୍ଦ ଫୌଜର ସଂକ୍ଷିପ୍ତ ଜୀବନୀ ସମ୍ବନ୍ଧ 'ଗଞ୍ଜାମ ସ୍ୱାଧୀନତା ସଂଗ୍ରାମୀ ଜୀବନୀ ସ୍ମରଣିକା' ବହିରେ ଯେଉଁ ପ୍ରିଣ୍ଟିଂ ପ୍ରମାଦ ଥିଲା, ସେ ସବୁ ଏଥିରେ ସଂଶୋଧନ କରାଯାଇଛି ।

ଯେତିକି ସଂଗୃହିତ ଅର୍ଥରେ ସ୍ମରଣିକାଟି ପ୍ରକାଶ ହୋଇପାରିବ ବୋଲି ଭାବିଥିଲୁ, ତାହା ସମ୍ଭବ ହେଲା ନାହିଁ । କାରଣ ଏଥିରେ ଫଟୋ ଓ ବ୍ଲକ୍ ତିଆରିରେ ସଂଗୃହିତ ଅର୍ଥର ଅଧେ ଟଙ୍କା ସରିଗଲା । ଫଳରେ ସ୍ମରଣିକା ପ୍ରକାଶନ ପାଇଁ ଘୋର ଆର୍ଥିକ ସଙ୍କଟର ସମ୍ମୁଖୀନ ହେବାକୁ ହେଲା । ପରିଶେଷରେ ପରମେଶ୍ୱରଙ୍କ ଅପାର ଦୟାରୁ ସମସ୍ତ ବାଧା ବିଘ୍ନ ଦୂରହୋଇ କୌଣସିମତେ ସୁରୁଖୁରୁରେ ସ୍ମରଣିକାଟି ପ୍ରକାଶ ପାଇଲା ।

ସ୍ମରଣିକା ପ୍ରକାଶ ପାଇଁ ଯେଉଁ ବନ୍ଧୁମାନେ ସାହାଯ୍ୟ ଓ ସହାନୁଭୂତି ଦେଖାଇଛନ୍ତି, ସଂଘ ପକ୍ଷରୁ ଓ ମୋ ନିଜ ପକ୍ଷରୁ ସେମାନଙ୍କୁ ଅନ୍ତରର ସହିତ କୃତଜ୍ଞତା ଜଣାଉଅଛୁ । ବିନୟ

—ଜୟହିନ୍ଦ—

୨୧ ଅକ୍ଟୋବର, ୧୯୮୭ — ଶ୍ରୀ ଉଦ୍ଧବାନନ୍ଦ ପ୍ରଧାନ, ଆଇ. ଏନ୍. ଏ,

୪୫ ତମ ଆଜାଦହିନ୍ଦ ଦିବସ — ସମ୍ପାଦକ

ଓଡ଼ିଶା ଆଜାଦହିନ୍ଦ ଫୌଜ ସଂଘ



## —ନେତାଜୀ—

ଶ୍ରୀରାମଚନ୍ଦ୍ର ଦାସ (ସମ୍ପାଦକ)

ମହାପୁରୁଷମାନଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କ ସମସ୍ତଙ୍କର ରହିପାରେ ନାହିଁ ଅଥଚ ସେମାନଙ୍କ ସମ୍ପର୍କରେ ଲୋକ ମୁଖରୁ ଶୁଣି କିମ୍ବା ପୋଥି ପତ୍ରରୁ ପଢ଼ି ସେମାନଙ୍କ ବିଷୟରେ କିଛି ଲେଖାଯାଇପାରେ । ଅତଏବ ମୋର ଏ ଆଲୋଚନା ଠିକ୍ ସେହି ଶୁଣାଶୁଣି ପଢ଼ାପଢ଼ି ଅନୁଭୂତି ଉପରେ ହିଁ ଆଧାରିତ । ନେତାଜୀ ସୁଭାଷଚନ୍ଦ୍ରଙ୍କ ସଙ୍ଗେ ମୋର କେବେ ଦେଖାସାକ୍ଷାତ ହୋଇନାହିଁ । ମାତ୍ର ତାଙ୍କ ଜୀବନୀ ସମ୍ପର୍କରେ ଅନେକ କଥା ଶୁଣିଛି ଏବଂ ତାଙ୍କ ଐତିହାସିକ କାର୍ଯ୍ୟକଳାପ ସମ୍ପର୍କରେ ପରବର୍ତ୍ତୀ କାଳରେ ବହୁ ବିଷୟ ପଢ଼ିଛି । ସେଥିରୁ ମୋର ଯାହା ଧାରଣା ଜନ୍ମିଛି ସେ ବିଷୟରେ ସମ୍ୟକ ଆଲୋଚନା କରିବାକୁ ଯାଉଛି ।

ସୁଭାଷ ବୋଷଙ୍କ ଜନ୍ମ କଟକ ଓଡ଼ିଆ ବଜାରସ୍ଥିତ ଜାନକୀନାଥ ଭବନ (ବର୍ତ୍ତମାନ ନେତାଜୀ ସେବାସଦନ)ରେ ହୋଇଥିଲା । ତେଣୁ ତାଙ୍କର ବାଲ୍ୟକାଳର କେତେକ ଘଟଣା ସ୍ଥାନୀୟ ବୟୋବୃଦ୍ଧ ଓ ବୃଦ୍ଧାମାନଙ୍କ କଥନରୁ ଶୁଣିବାକୁ ମିଳିଛି । ସେମାନଙ୍କ ପ୍ରତ୍ୟକ୍ଷ ସମ୍ପର୍କ ସୁଭାଷଙ୍କ ପିତା ୰ ଜାନକୀନାଥ ବୋଷଙ୍କ ପରିବାର ସହିତ ଥିଲା । ସେମାନେ କହନ୍ତି ଯେ ବାଲ୍ୟାବସ୍ଥାରେ ସୁଭାଷଚନ୍ଦ୍ର କଲେଜିଏଟ୍ ସ୍କୁଲର ଛାତ୍ର ଥିବାବେଳେ କଟକର ସାହି ବସ୍ତିର ଗରିବ ଲୋକଙ୍କ ସେବା ଓ ରୋଗୀଙ୍କ ଚିକିତ୍ସା କରିବାରେ ବରାବର ନିଷ୍ଠାର ସହିତ କାର୍ଯ୍ୟ କରୁଥିଲେ । ଅର୍ଥାତ୍ ବାଲ୍ୟକାଳରୁ ସେବା ଧର୍ମରେ ନିଜକୁ ନିୟୋଜିତ କରି ସହରବାସୀଙ୍କ ପ୍ରିୟପାତ୍ର ହୋଇପାରିଥିଲେ । ବୋଷ ପରିବାରର ସୁଖ୍ୟାତି କେବଳ ଓଡ଼ିଶାରେ ନୁହେଁ ବଙ୍ଗ ପ୍ରଦେଶରେ ମଧ୍ୟ ପରିବ୍ୟାପ୍ତ ଥିଲା । କଲିକତାରେ ଯୁବକ ସୁଭାଷଚନ୍ଦ୍ର କଲେଜରେ ଅଧ୍ୟୟନ କରୁଥିବାବେଳେ ତାଙ୍କର ଜାତୀୟ-ସ୍ୱାଭିମାନର ପରିଚୟ ଦେବା ସଙ୍ଗେସଙ୍ଗେ ତତ୍କାଳୀନ ଗୋରା ଅଧ୍ୟାପକଙ୍କ ଅନ୍ୟାୟ ନିର୍ଦ୍ଦେଶ ବିରୁଦ୍ଧରେ ଦୃଢ଼ ପ୍ରତିବାଦ କରି ଦଣ୍ଡିତ ହୋଇଥିଲେ ସୁଦ୍ଧା ଅନ୍ୟାୟ ଆଗରେ ମୁଣ୍ଡ ନୁଆଇଁ ନଥିଲେ । ସେହିଦିନୁ ଗୋରାମାନଙ୍କର ଭାରତୀୟଙ୍କ ପ୍ରତି ହେୟ ଭାବର ମୁକାବିଲା କରିବାରେ ସେ କେବେ ପଛଘୁଞ୍ଚା ଦେଇନଥିଲେ । ତାହା ଏବେ ଇତିହାସର ବସ୍ତୁ ।

ଇଂରେଜ ଶାସନ କାଳରେ ଭାରତରେ ଇଂରେଜୀ ଶିକ୍ଷା ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଥିଲା । ଉଚ୍ଚ ଶିକ୍ଷିତ ଯୁବକମାନେ ସରକାରୀ ଚାକିରୀ ସହଜରେ

ଯାଉଥିଲେ । ଚାକିରି ଜୀବନକୁ ସେତେବେଳେ ସୁଖମୟ ଜୀବନ ବୋଲି ଧରାଯାଉଥିଲା । ମାତ୍ର ଚାକିରି ଜୀବନର ପ୍ରଲୋଭନକୁ ତୁଚ୍ଛକରି ଯେଉଁ କେତେକ ସ୍ୱଦେଶାଭିମାନୀ ଯୁବକ ଇଂରେଜ ଶାସନ ବିରୁଦ୍ଧରେ ସ୍ୱରାଜଆନ୍ଦୋଳନ କରି ମାତୃଭୂମିକୁ ବିଦେଶୀ ଶାସନ ଶୃଙ୍ଖଳରୁ ମୁକ୍ତ କରିବାପାଇଁ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ ସେମାନଙ୍କ ମଧ୍ୟରେ ସୁଭାଷ ଚନ୍ଦ୍ର ବୋଷଙ୍କ ନାମ ବିଶେଷ ଉଲ୍ଲେଖନୀୟ । ବିଲାତରେ I. C. S . (ଇଣ୍ଡିୟାନ ସିଭିଲ୍ ସର୍ଭିସ୍) ସେତେବେଳର ସର୍ବୋଚ୍ଚ ଇଂରେଜ ଶିକ୍ଷା, ତାହାକୁ ଅତି ମର୍ଯ୍ୟାଦାପୂର୍ଣ୍ଣ ଶିକ୍ଷାରୂପେ ଗ୍ରହଣ କରାଯାଉଥିଲା । ବହୁ ସଂଖ୍ୟାରେ ଗୋରା ସାହେବ ଏ ଶିକ୍ଷାପାଇଁ ଆସି ଭାରତ, ବର୍ମା ଓ ସିଂହଳରେ ଶାସନ ପରିଚାଳନା କରୁଥିଲେ । ଭାରତୀୟମାନଙ୍କ ଭାଗ୍ୟରେ ଏ ଶିକ୍ଷା ଦୁର୍ଲଭ ଥିଲା, ଯେଉଁ ସ୍ୱଳ୍ପ ସଂଖ୍ୟକ ଭାଗ୍ୟବାନ ଭାରତୀୟ ଏ ଶିକ୍ଷା ପାଇବାକୁ ବିଲାତ ଯାଉଥିଲେ ସେମାନେ ଶିକ୍ଷା ଶେଷରେ ଆସି ବଡ଼ବଡ଼ ଅଫିସର ହେଉଥିଲେ । କିନ୍ତୁ ଏ ସମ୍ମାନଜନକ ଶିକ୍ଷା ତାଲିମରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହେଲାପରେ ବିଦେଶୀ ଶାସନ ଅଧୀନରେ ଚାକିରି କରିବେ ନାହିଁ ବୋଲି ସ୍ଥିରକରି ଅକୁଣ୍ଠ ଚିତ୍ତରେ ଏ ପଦବୀକୁ ପ୍ରତ୍ୟାଖ୍ୟାନ କରିଥିଲେ ବିପ୍ଳବୀ ସୁଭାଷଚନ୍ଦ୍ର ବୋଷ, ବିଭିନ୍ନ ପ୍ରଦେଶରେ ମଧ୍ୟ ବହୁ ଉତ୍ସାହୀ ଯୁବକ ସେ ସମୟରେ ସ୍କୁଲ କଲେଜ ଶିକ୍ଷା ପରିତ୍ୟାଗ କରି ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାଶଙ୍କ ଭଳି ଦେଶଭକ୍ତମାନେ ମୁକ୍ତି ସଂଗ୍ରାମରେ ଯୋଗଦେବା ସଙ୍ଗେସଙ୍ଗେ ଓଡ଼ିଶାରେ ଜାତୀୟ ଶିକ୍ଷା ପ୍ରଚଳନ ଓ ବିଭିନ୍ନ ଗଠନାତ୍ମକ କାର୍ଯ୍ୟକ୍ରମ ହାତକୁ ନେଇ ଜାତି ଗଠନ କ୍ଷେତ୍ରରେ ନିଜ ନିଜକୁ ନିୟୋଜିତ କରିଥିଲେ । ସେଥିପାଇଁ ସେମାନଙ୍କୁ ଚରମ ତ୍ୟାଗ ଏପରିକି ଦୁଃଖ ଦୁର୍ଦ୍ଦଶା ମଧ୍ୟ ଭୋଗିବାକୁ ପଡ଼ିଥିଲା ।

ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଦେଶର ବ୍ରିଟିଶ ଶାସନ ବିରୁଦ୍ଧରେ ସ୍ୱାଧୀନତା ସଂଗ୍ରାମର ବିଭିନ୍ନ ପର୍ଯ୍ୟାୟରେ ଦେଶବାସୀଙ୍କୁ ସଂଗଠିତକରି ଜାତୀୟ ପତାକା ତଳେ ସେମାନଙ୍କୁ ଏକଜୁଟ କରାଇବାରେ ଦେଶର ଯେଉଁ କେତେକ ଅଗ୍ରଣୀ ଜନନାୟକ ସକ୍ରିୟ ଅଂଶ ଗ୍ରହଣ କରିଥିଲେ, ସେମାନଙ୍କ ମଧ୍ୟରେ ତରୁଣ ନେତା ସୁଭାଷ ବୋଷଙ୍କ ସ୍ଥାନ ଖୁବ ଉଚ୍ଚରେ । କଲିକତା କର୍ପୋରେସନର ସୁଯୋଗ୍ୟ ମେୟର ରୂପେ ସୁନାମ ଅର୍ଜନ କରିଥିବା ସୁଭାଷ ବୋଷ ପ୍ରଥମେ ଜାତୀୟ କଂଗ୍ରେସ ସେବାଦଳର ନେତୃତ୍ୱ ଗ୍ରହଣକରି ଓ ପରେ ଜାତୀୟ କଂଗ୍ରେସର ଜଣେ ମୁଖ୍ୟ କର୍ମକର୍ତ୍ତା ଓ ପରିଶେଷରେ ଜାତୀୟ କଂଗ୍ରେସର ସଭାପତି ଆସନର ଅଧିକାରୀ ହୋଇଥିଲେ । ଦ୍ୱିତୀୟଥରପାଇଁ ସଭାପତି ନିର୍ବାଚନରେ ଡ଼ଃ. ପଟ୍ଟାଭି ସୀତାରାମେୟାଙ୍କୁ ପରାଜିତ କଲାପରେ ମହାତ୍ମାଗାନ୍ଧୀଙ୍କ ବିରାଗଭାଜନ ହୋଇ ସେ କଂଗ୍ରେସ ଅନୁଷ୍ଠାନ ଛାଡ଼ି ଫରୱାର୍ଡ଼ ବ୍ଲକ ଗଠନକରି ସ୍ୱାଧୀନତା ସଂଗ୍ରାମ ପୂର୍ବପରି ଜାରି ରଖିଥିଲେ ।

ସ୍ୱାଧୀନତା ସଂଗ୍ରାମ ବନାଗ୍ନି ପରି ଦେଶର କୋଣେ କୋଣେ ବ୍ୟାପିବା ସଙ୍ଗେ ସଙ୍ଗେ ଇଂରେଜ ଶାସନ କର୍ତ୍ତାମାନଙ୍କ ଦମନଲୀଳା ମଧ୍ୟ ସେତିକି ପ୍ରଚଣ୍ଡ ଓ ବ୍ୟାପକତର ହୋଇ ଉଠିଲା । ପରିଶେଷରେ ମହାତ୍ମାଗାନ୍ଧୀ ୧୯୪୨ ଅଗଷ୍ଟ ୮ ତାରିଖରେ କଂଗ୍ରେସର ବମ୍ବେ ଅଧିବେଶନରେ ଇଂରେଜ ସରକାରକୁ ଚରମ ଚେତାବନୀ "ଭାରତ ଛାଡ଼" ଡାକରା ଦେଲେ । ଦେଶରେ ସେତେବେଳେ ସରକାର ସମସ୍ତ ନେତା ଓ କର୍ମୀମାନଙ୍କୁ ଜେଲରେ ଅଟକ ରଖିଲେ ଓ ଆଖିବୁଜା ଦମନ ଚଳାଇଲେ । ସେତେବେଳକୁ ଅସୁସ୍ଥ ଅବସ୍ଥାରେ ସୁଭାଷ ବାବୁ କଲିକତାରେ ନିଜ ବାସଭବନରେ ଅଟକ ବନ୍ଦୀରୂପେ ଜୀବନ ଯାପନ କରୁଥିଲେ । ଠିକ୍ ସେହି ସମୟରେ ସ୍ୱାଧୀନତା ଲଢ଼େଇର ସଫଳ ରୂପାୟନ ଲାଗି ସେ ଯେଉଁ ଅଭିନବ ପନ୍ଥା ଗ୍ରହଣ କଲେ ସେଥିଲାଗି ବିଶ୍ୱ ଇତିହାସରେ ତାଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

ସୁଭାଷ ବାବୁ ଦେଖିଲେ ଯେ ବ୍ରିଟିଶ ସରକାରକୁ ଦେଶରୁ ହଟାଇବାକୁ ହେଲେ କେବଳ ଅହିଂସା ଆନ୍ଦୋଳନ ଯଥେଷ୍ଟ ନୁହେଁ । ତେଣୁ ଏ ସରକାରକୁ ଉପଯୁକ୍ତ ଶିକ୍ଷା ଦେବାପାଇଁ ଅସ୍ତ୍ରଶସ୍ତ୍ରର ସାହାଯ୍ୟ ନେବାକୁ ହେବ । ଏଥିଲାଗି ଇଂରେଜ ସରକାରର ଶତ୍ରୁ ଇଟାଲୀ, ଜର୍ମାନୀ ଓ ଜାପାନ ରାଷ୍ଟ୍ରଗୁଡ଼ିକର ସହଯୋଗ ଲାଭ କରିବାପାଇଁ ସେ ନିଜ ବାସଭବନରୁ ଇଂରେଜ ଜଗୁଆଳମାନଙ୍କ ଆଖିରେ ଧୂଳି ଦେଇ ଗୋପନରେ ଆଫଗାନିସ୍ଥାନ ବାଟେ ଇଟାଲୀକୁ ଯାଇ ସେଠାରୁ ଜର୍ମାନୀରେ ପହଞ୍ଚି ଭାରତର ସ୍ୱାଧୀନତା ସଂଗ୍ରାମରେ ସେ ସବୁ ରାଷ୍ଟ୍ରର ସହଯୋଗ ଲାଭ କରିଥିଲେ । କିଛି କାଳପରେ ସେ ସୁଦୂର ପ୍ରାଚ୍ୟ ଜାପାନ ଯାଇ ସେଠାରେ ଜାପାନ ସରକାରଙ୍କ ସହଯୋଗରେ ସିଙ୍ଗାପୁରରେ ସୁଦୂର ପ୍ରାଚ୍ୟ ରାଜ୍ୟମାନଙ୍କରେ କାର୍ଯ୍ୟ କରୁଥିବା ସୈନ୍ୟମାନଙ୍କୁ ସଂଗଠିତକରି "ଆଜାଦହିନ୍ଦ ଫୌଜ" (I.N A.) ଓ ସେ ସବୁ ରାଜ୍ୟର ଲକ୍ଷାଧିକ ଭାରତୀୟ ଅଧିବାସୀଙ୍କ ଅକୁଣ୍ଠ ଓ ସ୍ୱତଃସ୍ଫୂର୍ତ୍ତ ସହଯୋଗରେ ଆଜାଦହିନ୍ଦ ସରକାର ପ୍ରତିଷ୍ଠାକରି ଭାରତର ସ୍ୱାଧୀନତା ସଂଗ୍ରାମକୁ ଏକ ନୂଆ ରୂପ ପ୍ରଦାନ କରିଥିଲେ । ସେହିଦିନ ତାଙ୍କୁ ଲୋକେ "ନେତାଜୀ" ରୂପେ ସମ୍ବୋଧନ କରିବାକୁ ଲାଗିଲେ । ବ୍ରହ୍ମଦେଶ ସୀମାନ୍ତରୁ ଇଂରେଜ ସରକାର ବିରୁଦ୍ଧରେ ସଶସ୍ତ୍ର ଆକ୍ରମଣ ଚଳାଇ ଭାରତର ମଣିପୁର ପର୍ଯ୍ୟନ୍ତ ବ୍ରିଟିଶ ବାହିନୀକୁ ବିତାଡ଼ନ କରି ଆଣିଥିଲେ । ପଶ୍ଚିମ ପଟେ ଇଂଲଣ୍ଡ ଉପରେ ଜର୍ମାନର ନିର୍ମମ ବୋମା ମାଡ଼ ଏଣେ ପୂର୍ବ ପଟେ ଭାରତରେ ବିଦ୍ରୋହ ସାଙ୍ଗକୁ ବ୍ରହ୍ମଦେଶ ପଟୁ ଆଇ. ଏନ୍. ଏ. ବାହିନୀର ପ୍ରଚଣ୍ଡ ଆକ୍ରମଣ ଯୋଗୁଁ ଇଂରେଜ ସରକାର ଭାରତକୁ ସ୍ୱାଧୀନତା ଦେବାକୁ ବାଧ୍ୟ ହେଲେ । ଭାରତ ପରାଧୀନତା ପାଶରୁ ମୁକ୍ତ ହେଲା । ଏହା ସଙ୍ଗେ ସଙ୍ଗେ ବ୍ରିଟିଶ ସାମ୍ରାଜ୍ୟର ପତନ ପର୍ଯ୍ୟାୟ ମଧ୍ୟ ଆରମ୍ଭ ହୋଇଗଲା । ଦେଶର

ସ୍ୱାଧୀନତା ପ୍ରାପ୍ତି ଲାଗି ଗାନ୍ଧିଜୀଙ୍କ ଅହିଂସ ସଂଗ୍ରାମ ସାଙ୍ଗକୁ ନେତାଜୀଙ୍କ ଆଇ· ଏନ· ଏ·ର ସଶସ୍ତ୍ର ଆକ୍ରମଣ ଭାରତର ସ୍ୱାଧୀନତାକୁ କେବଳ ସଫଳ ନୁହେଁ ତ୍ୱରାନ୍ୱିତ ମଧ୍ୟ କରିଥିଲା ଏଥିରେ ସନ୍ଦେହ ନାହିଁ । ତେଣୁ ନେତାଜୀ ଆମ ମହାନ ଜାତିର ସଦାସ୍ମରଣୀୟ ।

ନେତାଜୀଙ୍କ ଜୀବନୀ ସମ୍ପର୍କରେ ମୁଖ୍ୟତଃ ଦୁଇଟି ଘଟଣା ବିଷୟରେ ବିଶେଷ ଆଲୋଚନା କରାଯାଉଛି । ଏଥିରୁ ଗୋଟିଏ ହେଲା ହିଂସା ଓ ଅହିଂସା ନେଇ ମହାତ୍ମା ଗାନ୍ଧୀଙ୍କ ସହ ନେତାଜୀଙ୍କ ମତଭେଦ । ଏହା ସତ୍ୟ ହେଲେ ମଧ୍ୟ ଦେଶର ସ୍ୱାଧୀନତା ହାସଲ କରିବାରେ ଉଭୟଙ୍କ ଲକ୍ଷ ଭିନ୍ନ ନଥିଲା । ଏପରିକି ଯୁଦ୍ଧ ଚାଲିଥିବାବେଳେ ନେତାଜୀ ସିଙ୍ଗାପୁରରୁ ତାଙ୍କ ବେତାର ଭାଷଣରେ ମହାତ୍ମା ଗାନ୍ଧୀଙ୍କ ପ୍ରତି ଗଭୀର ଶ୍ରଦ୍ଧା ଓ ସମ୍ମାନ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଆଇ. ଏନ· ଏ. ଭାରତରୁ ବ୍ରିଟିଶ ସରକାରକୁ ହଟାଇ ଦେବାପରେ ଦେଶର ଶାସନଭାର ଜାତୀୟ କଂଗ୍ରେସ ହାତରେ ଅର୍ପଣ କରିଦେବେ ବୋଲି ଘୋଷଣା କରିଥିଲେ । ସତକୁ ସତ ଶେଷରେ ବ୍ରିଟିଶ ସରକାର ଜାତୀୟ କଂଗ୍ରେସ ହାତରେ ଭାରତର ଶାସନଭାର ଅର୍ପଣ କଲେ । ମାତ୍ର ତା ପୂର୍ବରୁ ମୁସଲିମଲିଗ୍‌ର ସାମ୍ପ୍ରଦାୟିକ ଦାବୀ ଏବଂ ବ୍ରିଟିଶ କୂଟନୀତି ଫଳରେ ଦେଶର ବିଭାଜନ ହୋଇ ପାକିସ୍ଥାନ ସୃଷ୍ଟି କରାଗଲା ଏବଂ ଫଳରେ ଉଭୟ ଦେଶ ବାସୀଙ୍କର ବହୁଳ ଧନ ଜୀବନ ନଷ୍ଟ ହେଲା ।

ଦ୍ୱିତୀୟ ବିଷୟଟି ହେଲା ନେତାଜୀ ଜୀବିତ ନା ମୃତ । ଏହା ଏକ ରହସ୍ୟାବୃତ ହୋଇ ରହିଛି । ମାତ୍ର ଏକଥା ସର୍ବବାଦୀ ସମ୍ମତ ଯେ ମହାପୁରୁଷମାନଙ୍କ ସ୍ମୃତି ଜନମାନସରେ ସତତ ଜାଗ୍ରତ ରହେ ଏବଂ ସେହି ସ୍ମୃତି ହିଁ ଜନ ସମାଜକୁ ଯୁଗେ ଯୁଗେ ପ୍ରେରଣା ଦେଇ ଆସିଛି । ଉଦାହରଣ ସ୍ୱରୂପ ଯୁଗପୁରୁଷ ବୁଦ୍ଧ, ଗାନ୍ଧୀ ଓ ନେତାଜୀଙ୍କ ବାଣୀ ଜାତିକୁ ଉଦ୍‌ବୁଦ୍ଧ କରି ଆସିଛି । ତେଣୁ ସେମାନେ ଚିର ଅମର ହୋଇ ରହିଛନ୍ତି ଓ ରହିଥିବେ ମଧ୍ୟ । ସେମାନଙ୍କ ଜୀବନାଦର୍ଶ ଆମର ସର୍ବଦା ଅନୁକରଣୀୟ ହେଉ ଏହାହିଁ କାମନା ।



# ମୋତେ ରକ୍ତ ଦିଅ
# ମୁଁ ତୁମକୁ ସ୍ୱାଧୀନତା ଦେବି

**ଶ୍ରୀ ମାଗୁଣୀ ଦାଶ**

ଭାରତବାସୀଙ୍କୁ ଏଇକଥା ବଜ୍ର ଗମ୍ଭୀର କଣ୍ଠରେ କହୁଥିଲେ ନେତାଜୀ ସୁଭାଷ ଚନ୍ଦ୍ର ବୋଷ । ସେ କହୁଥିଲେ ଆମର ଏକମାତ୍ର ପତାକା ହେଉଛି ତ୍ରିରଙ୍ଗ ପତାକା ଏବଂ ଆମର ଏକ ମାତ୍ର ଶତ୍ରୁ ହେଉଛି ବ୍ରିଟେନ୍ । ଏହି ଉକ୍ତି ମୂଳରେ ଭରି ରହିଥିଲା ତାଙ୍କର ସ୍ୱଦେଶ ପ୍ରେମର ଅପୂର୍ବ ଭାବଧାରା । ହଜାର ହଜାର ଭାରତୀୟ ତାଙ୍କର ଅପୂର୍ବ ଉତ୍ସାହ ଓ ପ୍ରେରଣାରେ ଅନୁପ୍ରାଣିତ ହୋଇ ସଂଗ୍ରାମରେ ଝାସ ଦେଇଥିଲେ ।

ଆବାଲ୍ୟରୁ ସୁଭାଷ ବୋଷଙ୍କର ପ୍ରତିଭାର ଉନ୍ମେଷ ଘଟିଥିଲା । କଟକ ଓଡ଼ିଆ ବଜାରର ଜାନକୀନାଥ ବୋଷଙ୍କ ଔରସରେ ୧୮୯୭ ମସିହା ଜାନୁୟାରୀ ମାସ ୨୩ ତାରିଖରେ ସେ ଜନ୍ମ ଲାଭ କରିଥିଲେ ।

ପ୍ରାଥମିକ ଶିକ୍ଷା ସମାପ୍ତ ପରେ ସେ କଟକ ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ପଢୁଥିବା ବେଳେ କଟକ ଦରିଦ୍ର ଜନ ସମାଜର ସେବା କରି ସେମାନଙ୍କୁ ମୃତ୍ୟୁ ମୁଖରୁ ରକ୍ଷା କରିଥିଲେ । ଯେତେବେଳେ ସମଗ୍ର କଟକ ସହରରେ ହଇଜାର ପ୍ରାଦୁର୍ଭାବ ଦେଖା ଦେଇଥିଲା, ସୁଭାଷ ବୋଷ ନିଜର ସାଙ୍ଗସାଥି ମାନଙ୍କୁ ଧରି ଘରଘର ବୁଲି ରୋଗିମାନଙ୍କର ସେବା କରିବା ସଙ୍ଗେ ସଙ୍ଗେ ମୃତ୍ୟୁବରଣ କରୁଥିବା ରୋଗିମାନଙ୍କର ଶବ ସତ୍କାର କରିଥିଲେ ।

ଛାତ୍ର ଜୀବନରେ ସେ ଅତ୍ୟନ୍ତ ମେଧାବୀ ଥିଲେ । ସବୁବେଳେ ଭାରତ ଜାତୀୟତାର ସମ୍ମାନ ରକ୍ଷା କରିବା ପାଇଁ ସେ ଚେଷ୍ଟା କରୁଥିଲେ । ଅନେକ ସମୟରେ ସେ ଯୁବ ଆନ୍ଦୋଳନର ନେତୃତ୍ୱ ନେଇ ଦକ୍ଷତାର ସହ କାର୍ଯ୍ୟ କରୁଥିଲେ । ଜଣେ ବଳିଷ୍ଠ ଛାତ୍ର ନେତା ଓ ଯୁବ ନେତା ଭାବରେ ସେବା ଓ ସହଯୋଗ ଦ୍ୱାରା ସେ ବହୁ ଉନ୍ନତି ସାଧନ କରିଥିଲେ । ୧୯୧୯ ମସିହାରେ ସେ କୃତିତ୍ୱ ସହିତ ବି. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ୧୯୨୦ ମସିହାରେ ଆଇ. ସି. ଏସ୍. ପରୀକ୍ଷାରେ ଚତୁର୍ଥ ସ୍ଥାନ ଅଧିକାର କରି ପାସ କରିଥିଲେ । ହେଲେ କ'ଣ ହେବ । କ୍ଷମତାର ମୋହ ତାଙ୍କର ଦେଶସେବା ମନରେ ଆଲୋଡ଼ନ ସୃଷ୍ଟି କରିପାରିନଥିଲା । ସେଥିପାଇଁ ସେ

ଆଇ. ସି. ଏସ. ପଦବୀକୁ ତ୍ୟାଗ କରିଥିଲେ । ବିଲାତରେ ଅଧ୍ୟୟନ କରୁଥିବାବେଳେ ମଧ୍ୟ ସେ ପରାଧୀନ ଭାରତର ଦୁଃଖ ଦୁର୍ଦ୍ଦଶା କଥା ସର୍ବଦା ଚିନ୍ତା କରୁଥିଲେ । ସାମ୍ରାଜ୍ୟବାଦୀ ବ୍ରିଟିଶ ଶାସନ ବିରୁଦ୍ଧରେ ତାଙ୍କର ଆନ୍ଦୋଳନ ଭାରତୀୟଙ୍କ ପ୍ରାଣରେ ଉଦ୍ଦୀପନା ସୃଷ୍ଟି କରିଥିଲା ।

ଜାତିର ପିତା ମହାତ୍ମା ଗାନ୍ଧୀ ସୁଭାଷ ବୋଷଙ୍କର ଦେଶଭକ୍ତି ଓ ବୈପ୍ଳବିକ ଚିନ୍ତାଧାରାର ଭୂୟସୀ ପ୍ରଶଂସା କରୁଥିଲେ । ଗାନ୍ଧିଜୀଙ୍କୁ ଛାଡ଼ିଦେଲେ ଆଉ ଯିଏ କେହି ଭାରତର ମୁକ୍ତି ସଂଗ୍ରାମରେ ବଳିଷ୍ଠତର ଭୂମିକା ଗ୍ରହଣ କରିଥାନ୍ତି ସେ ହେଉଛନ୍ତି ସୁଭାଷ ଚନ୍ଦ୍ର ବୋଷ ।

୧୯୩୮-୧୯୩୯ ମସିହାରେ ସେ ଏକାଦିକ୍ରମେ ଦୁଇ ଥର ଭାରତୀୟ ଜାତୀୟ କଂଗ୍ରେସର ସଭାପତି ନିର୍ବାଚିତ ହୋଇଥିଲେ ସତ ମାତ୍ର ସ୍ୱାଧୀନତା ଲାଭପାଇଁ ଗାନ୍ଧିଜୀଙ୍କର ପ୍ରଦର୍ଶିତ ପନ୍ଥାକୁ ସେ ଗ୍ରହଣ କରିପାରିନଥିଲେ । ଭାରତରୁ ବ୍ରିଟିଶ ସାମ୍ରାଜ୍ୟବାଦର ମୂଳୋତ୍ପାଟନ କରିବା ଉଦ୍ଦେଶ୍ୟରେ ବ୍ରିଟିଶ ସରକାରଙ୍କ ଶତ୍ରୁ ପକ୍ଷ ସହିତ ଯୋଗ ଦେଇ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ସଂଗ୍ରାମ କରିବା ଥିଲା ତାଙ୍କର ମୂଳ ଉଦ୍ଦେଶ୍ୟ । ସେ ବୁଝିପାରିଲେ ବୈଦେଶିକ ଶକ୍ତିର ସାହାଯ୍ୟ ବିନା ଭାରତରେ ଇଂରେଜଙ୍କ କବଳରୁ ମୁକ୍ତି ଲାଭ କଲାଭଳି ଏକ ବିପ୍ଳବ ସମ୍ଭବ ନୁହେଁ । ପୁଣି ବାହାର ବନ୍ଧୁଙ୍କ ସହାୟତାରେ ବହିରାକ୍ରମଣ କରିପାରିଲେ ବ୍ରିଟିଶ ସରକାର ଉପସ୍ଥିତରୂପେ ଅନ୍ତର୍ବିପ୍ଳବ ତାଡ଼ନାରେ ଭାରତର ସ୍ୱାଧୀନତା ଦେଇ ଚାଲି ଯିବାକୁ ବାଧ୍ୟ ହେବ ।

୧୯୩୯ ମସିହାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଯାଇଥାଏ । ବ୍ରିଟେନ ଯୁଦ୍ଧରେ ରତ ଥିବା ସମୟରେ ହିଁ ଆନ୍ଦୋଳନର ମାହେନ୍ଦ୍ର ମୁହୂର୍ତ୍ତ, ଏବଂ ବ୍ରିଟେନର ଅସୁବିଧା ହିଁ ଭାରତର ସୁଯୋଗ ବୋଲି ଭାବି ସେ ୧୯୪୧ ମସିହା ଜାନୁୟାରୀ ୧୫ ତାରିଖରେ ବ୍ରିଟିଶ ସରକାରଙ୍କ ଆଖିରେ ଧୂଳି ଦେଇ ଭାରତରୁ ଅନ୍ତର୍ଦ୍ଧାନ ହୋଇ ଯାଇଥିଲେ ।

ଜାନୁୟାରୀ ୨୬ ତାରିଖରେ ଯେତେବେଳେ ତାଙ୍କର ପଳାୟନ ଖବର ପ୍ରଚାରିତ ହେଲା, ସେତେବେଳେ ସମଗ୍ର ବିଶ୍ୱ ବିସ୍ମିତ ହୋଇପଡିଥିଲା । ସେ ପାଦରେ ଚାଲି ଚାଲି ଦୁର୍ଗମ ଗିରିପଥ, ବନ୍ୟ ଜନ୍ତୁ ସଙ୍କୁଳ ଘନ ଅରଣ୍ୟ, ନଦନଦୀ ଅତିକ୍ରମ କରି ଆଫଗାନ ସୀମାନ୍ତ ପାରହୋଇ ୟୁରୋପରେ ଯାଇ ପହଞ୍ଚିଥିଲେ । ମାର୍ଚ୍ଚ ୨୮ ତାରିଖରେ ସେ ମସ୍କୋରୁ ବର୍ଲିନ ଯାତ୍ରା କରି ସେଠାରେ ହିଟଲରଙ୍କ ସହିତ ସାକ୍ଷାତ କରିଥିଲେ ।

୧୯୪୨ ମସିହାରେ ମହାତ୍ମାଗାନ୍ଧି ଯେତେବେଳେ 'ଭାରତ ଛାଡ଼' ଆନ୍ଦୋଳନ ଆରମ୍ଭ କଲେ, ସେତେବେଳେ ସୁଭାଷ ବୋଷ ଜର୍ମାନୀରେ ରହି ଏକ ନୂତନ ଆନ୍ଦୋଳନ ଚଳାଇବା ନିମନ୍ତେ 'ଆଜାଦହିନ୍ଦ ଫୌଜ' ଗଠନ କରିଥିଲେ । ଦକ୍ଷିଣ ପୂର୍ବ ଏସିଆରେ ଏକ ବୈପ୍ଳବିକ ପଦକ୍ଷେପ ନେଇ ସେ ଏହି ସେନା ଗଠନ କରିଥିଲେ । ହିଟଲରଙ୍କ ପରାମର୍ଶ ଓ ସହାୟତାରେ ସେବୁଡ଼ା ଜାହାଜ ଯୋଗେ ଟୋକିଓ ଯାତ୍ରାକରି ସେଠାରେ ନିଜର ପରିଚୟ ଦେଇଥିଲେ । ସେଠାରେ ମଧ୍ୟ ରାସବିହାରୀ ବୋଷଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା ।

୧୯୪୩ ଅକ୍ଟୋବର ୨୧ ତାରିଖରେ ଆଜାଦହିନ୍ଦ ସରକାର ପ୍ରତିଷ୍ଠା ଲାଭ କଲା, ଯାହାକୁ ପୃଥିବୀର ୨୪ଟି ରାଷ୍ଟ୍ର ସ୍ୱୀକୃତି ପ୍ରଦାନ କରିଥିଲେ । ଜାପାନ ଅଧିକାର କରିଥିବା ଆଣ୍ଡାମାନ ଦ୍ୱୀପପୁଞ୍ଜ ଆଜାଦହିନ୍ଦ ସରକାରଙ୍କୁ ହସ୍ତାନ୍ତରିତ ହେଲା । ନେତାଜୀ ଇଂଲଣ୍ଡ ଓ ଆମେରିକା ବିରୁଦ୍ଧରେ ଯୁଦ୍ଧ ଆରମ୍ଭ କରିଦେଲେ । ଆଜାଦହିନ୍ଦ ଫୌଜର ପ୍ରବଳ ଆକ୍ରମଣରେ ଇଂଲଣ୍ଡ ଓ ଆମେରିକାର ସୈନ୍ୟମାନେ କୋହିମା-ଇମ୍ଫାଲ ରଣକ୍ଷେତ୍ରରେ ଛତ୍ରଭଙ୍ଗ ହେଲେ । ୱାର ବର୍ମାରେ ଆଜାଦହିନ୍ଦ ସୈନ୍ୟମାନେ ବ୍ରିଟିଶ ସୈନ୍ୟମାନଙ୍କୁ ତଡ଼ାଇ ଦେଇ ପ୍ରଥମ ଥର ଭାରତ ମାଟିରେ ପାଦ ଦେଲେ । ଆଜାଦହିନ୍ଦ ଫୌଜ ପ୍ରବଳ ଉତ୍ସାହରେ ମଣିପୁର ରାଜଧାନୀ ଇମ୍ଫାଲ ଅବରୁଦ୍ଧକରି ଭୀଷଣ ଯୁଦ୍ଧ ଚଳାଇଲେ । କିନ୍ତୁ ଦୁର୍ଯୋଗକୁ ଇମ୍ଫାଲ ରଣାଙ୍ଗନରେ ଯୁଦ୍ଧ ସାମଗ୍ରୀର ଗୁରୁତର ଅଭାବ ଯୋଗୁଁ ଆଜାଦହିନ୍ଦ ଫୌଜ ପଛକୁ ହଟିବାକୁ ବାଧ୍ୟ ହେଲେ । ଏଣେ ମିତ୍ରଶକ୍ତି ଜାପାନର ହିରୋସିମା ଓ ନାଗାସାକି ଉପରେ ଅଣୁ ବୋମା ପକାଇ ଧ୍ୱଂସ ସାଧନ କରିବାରୁ ଜାପାନ ଅଗତ୍ୟା ଅଗଷ୍ଟ ୧୫ ତାରିଖରେ ଆତ୍ମ ସମର୍ପଣ କଲା । ଆଜାଦହିନ୍ଦ ସରକାରର ସୈନ୍ୟମାନେ ବ୍ରିଟିଶ ସରକାରଙ୍କ ଦ୍ୱାରା ବନ୍ଦୀ ହେଲେ । ତାପରେ ଲାଲକିଲ୍ଲାରେ ସେମାନଙ୍କର ବିଚାର ହୋଇଥିଲା । ଭାରତ ସ୍ୱାଧୀନ ହେବାପରେ ସେମାନଙ୍କୁ ସ୍ୱାଧୀନତା ସଂଗ୍ରାମୀ ଭାବରେ ଗ୍ରହଣ କରାଗଲା ।

ଆଜି ଦେଶ ସ୍ୱାଧୀନ ହୋଇଛି ଏବଂ ନେତାଜୀ ନାହାନ୍ତି ସତ । ତାଙ୍କର ବୈପ୍ଳବିକ ଆତ୍ମାର କେତୋଟି ଧାଡ଼ି ଆଜି ମଧ୍ୟ ଭାରତୀୟଙ୍କ ପ୍ରାଣରେ ଝଙ୍କୃତ ହେଉଛି ।

"ମୋତେ ରକ୍ତ ଦିଅ ମୁଁ ତୁମକୁ ସ୍ୱାଧୀନତା ଦେବି ।"

———

## ଆଜାଦହିନ୍ଦ ଫୌଜର ଜାତୀୟ ସଂଗୀତ (କୌମୀତରାଣା)

ଶୁଭ ସୁଖ ଚୈନକୀ ବର୍ଷା ବରଷେ ଭାରତ ଭାଗ୍ୟ ହୈଜାଗା
ପଞ୍ଜାବ ସିନ୍ଧ୍ ଗୁଜରାଟ ମରାଠା ଦ୍ରାବିଡ଼ ଉତ୍କଳ ବଙ୍ଗ ।

ଚଞ୍ଚଲ୍ ସାଗର ବିନ୍ଧ୍ୟ ହିମାଳୟ ନୀଲ ଯମୁନା ଗଙ୍ଗା
ତେରେ ନିତ ଗୁଣ୍ ଗାଏ ତୁଝ୍ସେ ଜୀବ୍ନ ପାଏ
ସବତନ ପାଏ ଆଶା

ସୂରଜ୍ ବନକର୍ ଜଗପର୍ ଚମକେ, ଭାରତ ନାମ ସୁଭାଗା
ଜୟହୋ, ଜୟହୋ, ଜୟହୋ, ଜୟ ଜୟ ଜୟ ଜୟହୋ
ଭାରତ ନାମ ସୁଭାଗା । ୧ ।

ସବ୍କେ ଦିଲ୍ମେ ପ୍ରୀତ ବସାଏ ତେରୀ ମିଠୀବାଣୀ
ହର୍ ସୁବେକେ ରହନେ ୱାଲେ ହର୍ ମଜହବ୍କେ ପ୍ରାଣୀ
ସବ୍ ଭେଦୌଁ (ଔର୍) ଫରକ୍ ମିଟାକେ ସବ୍ ଗୋଦମେ ତେରୀ ଆକେ
ଗୁଁଧେ ପ୍ରେମକୀ ମାଲା-ସୁରଜ.........। ୨ ।

ସୁବହ ସବେରେ ପଙ୍ଖ ପଖେରୁ ତେରେହୀ ଗୁଣ୍ ଗାଏ
ବାସ ଭରଭର୍ ପୁର ହୱାଏଁ ଜୀବ୍ନ ମେଁ ଋତୁ ଲାଏ
ସବ୍ ମିଲ୍କର୍ ହିନ୍ଦ୍ ପୁକାରେ ଜୟ ଆଜାଦ୍ ହିନ୍ଦ୍କେ ନାରେ
ପ୍ୟାରା ଦେଶ ହମାରା-ସୁରଜ୍....... । ୩ ।

ଇନ୍କିଲାବ୍-ଜିନ୍ଦାବାଦ ! ଆଜାଦହିନ୍ଦ୍-ଜିନ୍ଦାବାଦ ! ନେତାଜୀ-ଜିନ୍ଦାବାଦ
ଭାରତ ମାତାକୀ-ଜୟ ! ଚଲୋ-ଦିଲ୍ଲୀ !



## (ଆଜାଦ ହିନ୍ଦ୍ ଫୌଜରେ କେତେକ ମାର୍ଚିଂ ସଂଗୀତ)

ସୂତନ ଏ ଭାରତର ଦିଲ୍ଲୀ ପଥରେ
ହିନ୍ଦ୍ ଦଳ ବଳପାଜ ଚଳିଲେ ଘାରେ । ୦ ।

ଦିଲ୍ଲୀ ଚଲେ ଦିଲ୍ଲୀ ଚଲେ ଡ଼ଙ୍କା ଲଗାଇ
(ଆମ) ନେତାଜୀଙ୍କ ଆଦେଶରେ ହିନ୍ଦ୍ ସିପାହି
ଇନ୍‌କଲାବ୍ 'ଜିନ୍ଦାବାଦ' ଡାକ ସତେଜରେ । ୧ ।

ମୁକ୍ତିସିଂହ ଉଠିଲେକ ଗର୍ଜି ଗମ୍ଭୀରେ
ଚମକ ଉଠିଲା ଧରା ସେ ନିନାଦରେ
ଥରହର ହେଲେ ଶତ୍ରୁ ସୈନ୍ୟ ଶିବିରେ । ୨ ।

ନୂତନ ସୂର୍ଯ୍ୟ ଉଦୟ ପୂର୍ବ ଦିଗରେ
ପଶ୍ଚିମ ଦୁଃଖ ଦୁର୍ଦ୍ଦଶା ପୁଞ୍ଜିବ ଦୂରେ
ତ୍ରିରଙ୍ଗା ଉଡ଼ିବ ଉଚ୍ଚେ ଲାଲ କିଲ୍ଲାରେ । ୩ ।



# ନେତାଜୀ ଜୟନ୍ତୀ ଉପଲକ୍ଷେ

ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ
(ଅସ୍ଥାୟୀ ଆଜାଦହିନ୍ଦ୍ ସରକାରଙ୍କ ନେଭି ବିଭାଗ ଓ ପ୍ରଥମ ବ୍ୟାଚର ଓଡ଼ିଆ ଅଫିସର
ଏବଂ ଓଡ଼ିଶା ଆଇ.ଏନ୍.ଏ. ଏସୋସିଏସନର ସଭାପତି)



## ନେତାଜୀ ! କେତେ ସ୍ମୃତି ମନେ ପଡ଼ୁଛି ଆଜି

ଉତ୍କଳେ ପ୍ରସିଦ୍ଧ କଟକ ନଗରେ, ଓଡ଼ିଆ ବଜାର ସ୍ମୃତି କୋଠା ଘରେ
ଛୁଇଁଲ ଧରଣୀ ଶୁଭ ଲଗନରେ, ସେ ତବ ଜୟନ୍ତୀ ବାସର ଆଜ । ୧ ।

ବିଚକ୍ଷଣ ବୁଦ୍ଧି ଶିକ୍ଷା ଆରମ୍ଭରେ ଧ୍ୟାନ ଜନସେବା ପ୍ରିୟ ଶୈଶବରେ,
ବନ୍ୟା ବେଳେ କେବେ ନାବିକ ବେଶରେ, ଦୁଃସ୍ଥ ଜନ ଉଦ୍ଧାରଣେ ମଗଜ । ୨ ।

ଉଚ୍ଚ ଶିକ୍ଷା ପାଇ ଦୂର ବିଲାତରେ, ଉପାଧି ନ ନେଲ ଦେଶାଭିମାନରେ,
ଉତ୍ସାହିତ ହୋଇ ବାପୂଜୀ ପଥରେ, ଗୃହିଲ ସ୍ୱାଧୀନତା ସୂତ୍ର ଖୋଜ । ୩ ।

ଦେଶବନ୍ଧୁ ଚିତ୍ତରଞ୍ଜନ ବରେ, ପୁଣ୍ୟାତ୍ମା ଉତ୍କଳମଣି ପରଶରେ,
ସ୍ୱଜାତି ସ୍ନେହେ ଉଠିଲ ଉପରେ, ଜାତି ପାଇଁ ତନୁ ଉତ୍ସର୍ଗ ଖଞ୍ଜି । ୪ ।

ବୃହତ୍ତର କଲିକତା ସହରରେ ନିର୍ବାଚିତ ହେଲ ମେୟର ପଦରେ,
ଜାଗ୍ରତ ଜୀବନ ଉନ୍ନତ ସ୍ଥଳରେ, କର୍ମଯୋଗୀ ହେଲ ଜ୍ଞାନ ଅରଜ । ୫ ।

ଜାତି ମହାସଭା ମହାନ ପୀଠରେ, ସଭାପତି ହେଲ ସେବେ ସୁଯୋଗରେ,
କମର କସିଲ ଜାତି ଗଠନରେ, ଚମକି ଉଠିଲେ ଅଗଣିତ ହେଜ । ୬ ।

ଗଡ଼ଜାତ ପ୍ରଜା ଆନ୍ଦୋଳନରେ, ଦେଖାଇ କୃତିତ୍ୱ ପରାକ୍ରମରେ,
ଥରିଲ ଶତ୍ରୁ ବପୁ ସଂଘର୍ଷରେ, ଜାଗରଣ ବହ୍ନି ଜାଳିଲ ତେଜ । ୭ ।

ଲକ୍ଷ୍ୟସିଦ୍ଧ ହେବା ପାଇଁ ଆବେଗରେ, କେତେକ ମନ୍ତ୍ରଣା ସାଙ୍ଗ ତରଙ୍ଗରେ,
ବୀରର ଅହିଂସା ବାପୂଜୀ ମତରେ, ଉଗ୍ରପନ୍ଥୀ ହେଲ କତା ସମଜ । ୮ ।

ଅଗ୍ରଗାମୀ ଦଳ ଗଢ଼ିଲ ସତ୍ୱରେ, ଦେଶ ମାତୃକାର ମୁକତି ମନ୍ତ୍ରରେ,
ବଳିଦାନ ଦୀକ୍ଷା ଦେଲ ନିର୍ଭୟରେ, ମାତି ଉଠିଲେ ଯେ ତରୁଣ ଗଜ । ୯ ।

ଅନ୍ଧ କୂପ ସତ୍ୟାଗ୍ରହର ସମରେ, ସାଂପ୍ରଦାୟିକତାର ବିନାଶନରେ,
ପ୍ରକାଶିଲ ତାଣ ନେତୃତ୍ୱ ବଳରେ, ପୋଛି ଦେଲ 'ବ୍ଲାକ ହୋଲ୍"ର ପାଞ୍ଜି । ୧୦ ।

ବିଦେଶୀ ଶାସକ ଷଡଯନ୍ତ୍ରରେ, ଧରିନେବ ଜାଣି କ କଉଶଳରେ,
ଅନ୍ତର୍ଦ୍ଧାନ ହେଲ ଯାଇ ଜଗତରେ, ଚହଳ ପଡ଼ିଲା ଡିଣ୍ଡିମ ବାଜି । ୧୧ ।

ଜାର୍ମାନୀ ଜାପାନ ଭୂମି ଗୋପନରେ, ପ୍ରବେଶିଲ ପ୍ରାଚୀ ଏସିଆ ଖଣ୍ଡରେ,
ଅସ୍ଥାୟୀ ଆଜାଦହିନ୍ଦ୍ ଶାସନରେ, ମୁଖ୍ୟ ହେଲ ଯୋଦ୍ଧା ରୂପେ ବିରାଜି । ୧୨ ।

ଶେଷ ସ୍ୱାଧୀନତା ସଂଗ୍ରାମ ଘୋଷରେ, ବଜାଇଲ ରଣ ଭେରୀ ଏ ବିଶ୍ୱରେ,
ଜୟହିନ୍ଦ ଧ୍ୱନି ସକଳ ଆସ୍ୟରେ, ଘୋଷାଇଲ ଭେଦଭାବ ବରଜି । ୧୩ ।

ଆଣ୍ଡାମାନ ଶହୀଦ ଦ୍ୱୀପପୁଞ୍ଜରେ, "କୌମୀତରାଣା" ଗାଇ ଭକ୍ତିଭରେ,
ଭାରତୀୟ ନେତୃବୃନ୍ଦେ ବେତାରରେ, ଯୁଦ୍ଧର ସନ୍ଦେଶ ଦେଲ ନେତାଜୀ । ୧୪ ।

ନିଦାଘେ ବେଳେ ଘୋର କାନନ କନ୍ଦରେ, କେବେ ଅବା ରଣ କ୍ଷେତ୍ରେ ହେମନ୍ତରେ,
ରକ୍ତ ଦିଅ ବୋଲି ହିନ୍ଦ୍ ଫଉଜରେ, ଆଜ୍ଞା ଦେଲ ଅଧିନାୟକ ସାଜି । ୧୫ ।

ତୋପ ବନ୍ଧୁକ କମାଣ ଗର୍ଜ୍ଜନରେ, ବିଚଳିତ ନୋହୁ ଥିଲ ଆତଙ୍କରେ,
ଦିଲ୍ଲୀ ଚଳ ବୋଲି ଅତି ଉତ୍ସାହରେ, କହୁଥିଲ ସିଂହପରି ଗରଜି । ୧୬ ।

କରି ଅବା ମରି ଦେଶ ଧରମରେ, ଏକତା ବିଶ୍ୱାସ ଅନୁଶାସନରେ,
ଚଳାଇଲ ହିନ୍ଦ ସିପାହୀ ଯୁଦ୍ଧରେ, ଲଢ଼ାଇଲ ଭାବ ପ୍ରବଣେ ମଜ୍ଜି । ୧୭ ।

ବାଳକ ବାଳିକା ନାରୀ ସମାଜରେ, ନୂତନ ଚେତନା ଆଣି ସହଜରେ,
ହିନ୍ଦୁ ମୁସଲିମ ଖ୍ରୀଷ୍ଟ ମିଳନରେ, ସଜିଲ ଅପୂର୍ବ ଆଦର୍ଶ ପୁଞ୍ଜି । ୧୮ ।

ଯେତେ ଯା ପ୍ରେରଣା ଜାତି ଉଦ୍ଦେଶ୍ୟରେ, ସେ ସବୁ ମଉଳି ଯାଉଛି ଦେଶରେ,
ଆସ ହେ ନେତାଜୀ "ମାର୍ଶାଲ" ବେଶରେ, ଗଢ଼ିବ ଯା ସବୁ ଯାଉଛି ଭାଜି । ୧୯ ।

## ନେତାଜୀ — ଜିନ୍ଦାବାଦ୍

# ନେତାଜୀ ବାଣୀ

•

୧— ସ୍ୱଦେଶପ୍ରେମୀମାନେ ଶିର ଅବନତ କରି କରି ନମ୍ର ପ୍ରଣତି ଚାଲି ଯାଉଛନ୍ତି । ବର୍ତ୍ତମାନ ସମସ୍ତ ପ୍ରକାର ବିଭେଦକୁ ତ୍ୟାଗକରି ଆକାଶକୁ ଶିର ଉନ୍ନତକରି ସମସ୍ତେ ଜୟହିନ୍ଦ୍ ପ୍ରଣାମ କରନ୍ତୁ ।

୨— ଆମେ ରକ୍ତ ଦେଇ ସ୍ୱାଧୀନତା ଅର୍ଜନ କଲେ ପୁଣି ରକ୍ତ ଦେଇ ସ୍ୱାଧୀନତା ରକ୍ଷା କରିପାରିବା ।

୩— ସ୍ୱାଧୀନତାର ମୂଲ୍ୟ ରକ୍ତ ! !

୪— ଜଓ୍ୱାନଗଣ ! ମୋତେ ରକ୍ତ ଦିଅ ମୁଁ ତୁମକୁ ସ୍ୱାଧୀନତା ଦେବି ।

୫— ଭାରତର ୪୦ କୋଟି ଭଉଣୀ ଓ ଭାଇମାନଙ୍କୁ ଦାସତ୍ୱ ବନ୍ଧନରୁ ମୁକ୍ତ କରିବାପାଇଁ ଆମେ ପୂର୍ବ ଏସିଆରେ ଥିବା ୩୦ ଲକ୍ଷ ଭାରତୀୟ ଯୁଦ୍ଧ ସଂଗ୍ରାମ କରି ମରି ମିଶିଯିବା, ତେବେ କେଣି କିଛି ବଳିଦାନ ଦେବନାହିଁ ।

୬— ମିଳିମିଶି କାମ କର ଭିନ୍ନ ଧର୍ମ, ହିନ୍ଦୁ, ମୁସଲମାନ, ଶିଖ, ଇସାଇ
ଆମେ ସମସ୍ତେ ସ୍ୱଦେଶପ୍ରେମୀ ।

୭— ଲଢ଼ାଇ ଯେତେ ଦିନ ଦୀର୍ଘ ହେବ ଆମର ସେତିକି ଲାଭ ହେବ କିନ୍ତୁ ଶତ୍ରୁର ବେଶି କ୍ଷତି ହେବ ।

୮— ଭାରତର ଐତିହାସିକ ସମ୍ପତ୍ତି ପୋଲ ଇତ୍ୟାଦି ନଷ୍ଟ ନକରି ବଙ୍ଗଳା ଏବଂ ଆସାମ ବାଟରେ ଆମର ସଶସ୍ତ୍ର ସଂଗ୍ରାମ ଚାଲୁ ରହିବ ।

୯— ଜୱାନେଁ ! ଶତ୍ରୁର ଗୁଳିରେ ଛାତିଦେଇ ସିଂହପରି ମରିବା ଉଚିତ, କିନ୍ତୁ ନିଜେ ପିଠିରେ ଗୁଳି ଲଗାଇ କୁକୁରପରି ମରିବା ଅନୁଚିତ ।

୧୦— ସ୍ୱାଧୀନତା ସଂଗ୍ରାମରେ ଆବାଳ ବୃଦ୍ଧ-ବନିତା ଶସ୍ତ୍ର ଶିଖିବାକୁ ହେବ ।

୧୧— ସ୍ୱାଧୀନତା ନଚେତ୍ ମୃତ୍ୟୁ !

୧୨— ଚଲୋ-ଦିଲ୍ଲୀ ।

ଜୟହିନ୍ଦ୍

---

# ନେତାଜୀ

ହେ ମୁକ୍ତ ଜୀବନାନନ୍ଦ ଆହେ ସବ୍ୟସାଚୀ
ଜନ୍ମ ନେଲ ଧନ୍ୟବଙ୍ଗେ କଣ୍ଠବା ଲକ୍ଷରେ ।

ଦେଇଥିଲ ଜନ୍ମ ତବ କେଉଁ ଦେବତାଳା
ମହାନଗରୀର ପବନ୍ତ ନିଭୃତ କକ୍ଷରେ ॥

ତୁମ ଆଗମନୀ ବାଦ୍ୟ ବାଜି ଭାନେ ଜାଗିଲ ଉନ୍ମାଦେ
ମର୍ତ୍ତ୍ୟର ପୂର୍ଣ୍ଣମାଟି ଧୂଳିର ଧରଣୀ ।

ଗାଇଲେ ତଳନ୍ତୁ ଗୀତି ବସନ୍ତ ଛନ୍ଦରେ
କେତେ ପୂଜାରିଣୀ କେତେ ବପ୍ଳବ ରଗିଣୀ ॥

ଉଦ୍‌ବେଳିତ ବୁକେ ଧନେ କଭ ନାଶ୍ଚି
ଉତ୍ତପ୍ତ ଯୌବନର କ୍ଷୁଧା ଦୁର୍ବାର ଲାଳସା ।

ଆସି ତ ନାହାନ୍ତି ପାଶେ ସ୍ୱପ୍ନ ସହଚରୀ
ସାଥୀ ହେବାପାଇଁ ସାଥେ କେଉଁ ମହାଜନା ॥

ସେହ୍ତ ତୁମେ ହେ ଚିର ବିଦ୍ରୋହୀ ହେ ଚିର ବିପ୍ଳବୀ
ବାଛିନେଲ ଜୀବନର ଯେଉଁ ମହାବ୍ରତ ।

ସେ ପଞ୍ଜରେ ସର୍ବହରା ବୁଭୁକ୍ଷୁରପାଇଁ
ହେ ତାପସ ଜୀବନଟା ଥିଲ ଅଭିପ୍ରେତ ॥

କୋଟି ଜନ ମନ ତଳ ହୋଇଲ ସଂକ୍ରାନ୍ତ
ଇଂରାଜ ସାମ୍ରାଜ୍ୟରେ ବ୍ୟାପିଗଲ ମହାତ୍ରାସ ।

କହିଲେ ସର୍ବେ ଏଇ ଏଇତ ନେତାଜୀ
ଜୀବନର ମହୋଚ୍ଛ୍ୱାସେ ମାତ୍ର ଦୀର୍ଘଶ୍ୱାସ ॥

ଯୁଗ ଯୁଗାନ୍ତରପାଇଁ ସେଇ ପୂଜ୍ୟ ଗାଥା
ଗାଇ ସର୍ବେ କରିବେ ସ୍ୱାଗତ ।

ସେଇ ବଳିଦାନ ପଥେ ଯେତେ ମର୍ତ୍ତ୍ୟଜନ୍ମ
ମୃତ ଓ ଜୀବନ୍ତ ସାଥେ ନବ୍ୟସ୍ଫୀତ ଶୋଷିତ ଲାଞ୍ଛିତ ॥

( ଶ୍ରୀ ଯୋଗେନ୍ଦ୍ର ସାମନ୍ତରା )
ପିତଳ



# ଅବିସ୍ମରଣୀୟ ସ୍ମୃତି ଦିବସ

ଆଜାଦ ହିନ୍ଦ୍ ଫୌଜର ତାଲିମ ଶିବିର ମାନଙ୍କରେ ହିନ୍ଦୁସ୍ଥାନୀ ଭାଷାରେ ଶିକ୍ଷା ଦିଆଯାଉଥିଲା । ଭାଷା ଜାଣିପାରୁ ନଥିବା ହେତୁ ଅଧିକାଂଶ ଓଡ଼ିଆ ଯୁବକ ମାନେ ଫୌଜରେ ଯୋଗ ଦେବାକୁ ଇଚ୍ଛା କରୁନଥିଲେ । ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ ଓଡ଼ିଆ ଲୋକ ସଂଗ୍ରହ ଓ ପ୍ରଚାର ବିଭାଗ ଅଫିସର ରୂପେ ନିଯୁକ୍ତ ହେବାପରେ ଓଡ଼ିଆମାନଙ୍କ ଏହି ଦୁଃଖ ଅସୁବିଧା ଦର୍ଶାଇ ସେ ନେତାଜୀଙ୍କୁ ଅନୁରୋଧ କଲେ ଯେ, ଏକ ସ୍ୱତନ୍ତ୍ର ଓଡ଼ିଆ ଯୁବକ ତାଲିମ କେନ୍ଦ୍ର ପ୍ରତିଷ୍ଠା କରି ପ୍ରାଥମିକ ଶିକ୍ଷା ଦିଆଯିବା ପରେ ସେମାନଙ୍କୁ ଅନ୍ୟାନ୍ୟ ଶିବିରକୁ ପଠାଇବା ସଙ୍ଗତ ହେବ । ନେତାଜୀ ଓଡ଼ିଶାରେ ଜନ୍ମ ହୋଇଥିବା ହେତୁ ଶ୍ରୀ ତ୍ରିପାଠୀଙ୍କ କଥାକୁ ହୃଦୟଙ୍ଗମ କଲେ ଏବଂ ବର୍ମାରେ ଲକ୍ଷେ ଓଡ଼ିଆ ଥିବା ଜାଣି, ଗୋଟିଏ ସ୍ୱତନ୍ତ୍ର ଓଡ଼ିଆ ତାଲିମ ଶିବିର ପାଇଁ ମଞ୍ଜୁର କଲେ ।

ରେଙ୍ଗୁନ ଠାରୁ ଆଠମାଇଲ ଦୂରସ୍ଥ ମୟାଗାନ୍ ନାମକ ବହୁ ଓଡ଼ିଆ ବସବାସ କରୁଥିବା ଅଞ୍ଚଳରେ ତାଲିମ ଶିବିର ଗଠନ କରାଗଲା । ବ୍ରିଟିଶ ସେନା ବାହିନୀରୁ ଆସି ଆଜାଦ ହିନ୍ଦ୍ ଫୌଜରେ ଯୋଗ ଦେଇଥିବା ଓଡ଼ିଆ ସୈନିକ ସର୍ବଶ୍ରୀ ଦାମୋଦର ପଣ୍ଡା, ଅଗାଧି ସାମନ୍ତରାୟ, ଗଦାଧର ମହାପାତ୍ର, ରଘୁନାଥ ବେହେରା ପ୍ରମୁଖ ସେଥିରେ ଇନଷ୍ଟ୍ରାକଟର ନିଯୁକ୍ତ ହେଲେ । ଉକ୍ତ କ୍ୟାମ୍ପରେ ଯୋଗ ଦେଉଥିବା ଓଡ଼ିଆ ଯୁବକମାନଙ୍କୁ ଡାକ୍ତର ଶ୍ରୀ ଗୀରକିଶୋର ଭୂୟାଁ ପରୀକ୍ଷା କରି ସୁପାରିଶ କରୁଥିଲେ । ଉକ୍ତ ତାଲିମ ଶିବିର ପାଇଁ ଆ: ହି: ଫଉଜର ମୟୁଗାନ୍ ଶାଖା ଚେଇର୍‌ମେନ୍ ପି. ସିଭଜ ସୁପରିଣ୍ଟେଣ୍ଡେଣ୍ଟ ନିଯୁକ୍ତ ହେଲେ ଓ ଶ୍ରୀ ତ୍ରିପାଠୀ କ୍ୟାମ୍ପର ୱେଲଫେୟାର ଅଫିସର ଦାୟିତ୍ୱ ଗ୍ରହଣ କଲେ । ୧୯୪୫ ମସିହା ଫେବୃୟାରୀ ୭ ତାରିଖ ଦିନ ଦୁଇଜଣ ଓଡ଼ିଆଲୋକଙ୍କ ମଧ୍ୟରେ ମାରପିଟ ହେଲା । ଚେଇରମେନ୍ ସିଭଜ ଓଡ଼ିଆ ସିପାହୀଙ୍କ ଦ୍ୱାରା ଉଭୟ ଦଳରୁ କେତେକ ବ୍ୟକ୍ତିଙ୍କୁ ଗିରଫ୍ କରି ଆଣି ସେମାନଙ୍କଠାରୁ ଟଙ୍କା ଉତ୍କୋଚ ନେଇ ଛାଡ଼ି ଦେଲେ । ନେତାଜୀଙ୍କ ଶାସନ କାଳରେ ମଧ୍ୟ ଏପରି ଅବାଞ୍ଛିତ କଥା ଚାଲିଥିବା ବୁଝିଅନ୍ତେ ପ୍ରବୃତ୍ତ ହେଲା । ଶ୍ରୀ ତ୍ରିପାଠୀ ଯାଇ ଘଟଣା ସମ୍ବନ୍ଧରେ ଚେଇରମେନ୍‌କୁ ପଚାରିବାରୁ ସେ ରାଗିଯାଇ ଶ୍ରୀ ତ୍ରିପାଠୀଙ୍କୁ ଧମକ ଦେଇ ତଡ଼ିଦେଲେ । ତ୍ରିପାଠୀଙ୍କର ଅପମାନ ଦେଖି ଓଡ଼ିଆ ସିପାହୀମାନେ ଉତ୍ତେଜିତ ହୋଇ ଚେଇରମେନ୍‌କୁ ଆକ୍ରମଣ କରିବାକୁ ବାହାରିଲେ କିନ୍ତୁ ଶ୍ରୀ ତ୍ରିପାଠୀ ସେମାନଙ୍କୁ ନିବୃତ୍ତାଇ ନେତାଜୀଙ୍କୁ ଜଣାଇବାପାଇଁ କହି ଚାଲି-ଗଲେ । ସ୍ୱରାଷ୍ଟ୍ରମନ୍ତ୍ରୀଙ୍କ ଜରିଆରେ ଘଟଣାର ବିବରଣୀ ନେତାଜୀଙ୍କୁ ଜଣାଇ

ଦଅଗଲା । ସର୍ବୋଚ୍ଚ ଓଡ଼ିଆ ଅଫିସର କର୍ଣ୍ଣେଲ ବ୍ରଜମୋହନ ପଟ୍ଟନାୟକଙ୍କୁ ମଧ୍ୟ ଘଟଣାର ବିବରଣୀ ଜଣାଇ ଦିଆଗଲା ।

ଫିବ୍ରୁଆରୀ ୧୨ତାରିଖ ଦିନ ନେତାଜୀ କର୍ଣ୍ଣେଲ୍ ପଟ୍ଟନାୟକଙ୍କୁ ତଦନ୍ତ କରିବାକୁ ନିଯୁକ୍ତ କଲେ । ସେଦିନ ଶିବରାତ୍ର ଦିବସ ଥିଲା । "ସ୍ୱାଧୀନ ଭାରତ" ଓଡ଼ିଆ ସମ୍ବାଦ ପତ୍ରରେ ଘଟଣାର ପ୍ରକାଶ ହେବା ଫଳରେ ଉତ୍କଳ ଶ୍ରମିକ ଫଉଜ କର୍ମକର୍ତ୍ତା ଏବଂ ଆ. ହି. ଫଉଜର ପ୍ରଚାର ବିଭାଗରେ କାର୍ଯ୍ୟ କରୁଥିବା ଓଡ଼ିଆ ପଣ୍ଡିତ ସ୍ୱର୍ଗତ ଶିବରାମ ମହାପାତ୍ର ଓ ରାମଚନ୍ଦ୍ର କରଙ୍କର ନେତୃତ୍ୱରେ ବହୁସଂଖ୍ୟକ ଓଡ଼ିଆ ସାଧାରଣ ସଭ୍ୟ ମନ୍ଦାଗାନ୍‌ରେ ସମବେତ ହୋଇଥିଲେ । ସେଦିନ ପ୍ରାତଃ ୯ଘଣ୍ଟା ସମୟରେ କର୍ଣ୍ଣେଲ ପଟ୍ଟନାୟକ ଆସି ଉପସ୍ଥିତ ହେଲେ । ସମବେତ ଓଡ଼ିଆମାନେ ତାଙ୍କୁ ସମ୍ବର୍ଦ୍ଧନା ଜଣାଇ ନେତାଜୀଙ୍କର ଜୟଧ୍ୱନି କଲେ । କର୍ଣ୍ଣେଲ୍ ସାହେବ ଢେଲରମେନଙ୍କୁ ତଦନ୍ତ କରିବାପରେ ଚେତାବନୀ ଶୁଣାଇ ଦେଲେ ଯେ, ସେ ଦଣ୍ଡନୀୟ ଅପରାଧ କରିଛନ୍ତି । ସେ (ଚେଲରମେନ୍) ସମସ୍ତଙ୍କ ସମ୍ମୁଖରେ ଉତ୍କୋଚ ଟଙ୍କା ଫେରାଇ ଶ୍ରୀ ତ୍ରିପାଠୀଙ୍କୁ କ୍ଷମାଜମାଗିଲେ ଗ୍ରେଫ୍‌ଦାର୍ ହେବେ । ଢେଲରମେନ୍ ଥରହର ହୋଇ କର୍ଣ୍ଣେଲ୍‌ଙ୍କ ଆଦେଶାନୁସାରେ କାର୍ଯ୍ୟକରିବାକୁ ଆସୁଥିବା ସମୟେ ଠିକ୍ ଏହିକ ବେଳେ ପ୍ରାୟ ୫୦ ଟି ବ୍ରିଟିଶ୍ ଲଢୁଆ ବିମାନ ଅଗ୍ନିଜନକ ଉଡ଼ି ଆସି ସେଠାରେ ଅସଂଖ୍ୟ ବମା ବର୍ଷଣ କରିଦେଲେ, ଚେଲର୍‌ମେନ୍ ସିରାଜ, ତାଙ୍କର କରଣୀ ଉସ୍‌ମାନ୍, ତାଲିମ୍ କେନ୍ଦ୍ରର ନାୟକ ଅଗାଧୁ ସାମନ୍ତରା, ସନ୍ତୀ ଭୋବନାଥଣା, ପଣ୍ଡିତ ସ୍ୱର୍ଗତ ମଧୁସୂଦନ ବେହେରା ସମେତ ବହୁ ଓଡ଼ିଆ ସଭ୍ୟ ବୋମାଘାତରେ ପ୍ରାଣ ହରାଇଲେ । ସୌଭାଗ୍ୟକୁ ଉତ୍କଳ ଶ୍ରମିକ ଫଉଜର କର୍ମକର୍ତ୍ତା କର୍ଣ୍ଣେଲ୍ ପଟ୍ଟନାୟକ, ଶ୍ରୀ ତ୍ରିପାଠୀ ପ୍ରମୁଖ ବଞ୍ଚିଗଲେ । ସେ ଦିନଟି ଆଜାଦ୍ ହିନ୍ଦ୍ ଫୌଜର ସ୍ୱାଧୀନତା ସଂଗ୍ରାମରେ ଓଡ଼ିଆମାନଙ୍କର ସମୃଦ୍ଧ ବଳିଦାନ ଅବିସ୍ମରଣୀୟ ସ୍ମୃତି ଦିବସ ଅଟେ । ସେହି ଅମର ଶହୀଦମାନେ ଏ ଜାତିର ନମସ୍ୟ ତଥା ପୂଜ୍ୟ ଅଟନ୍ତି ।

—ଜୟହିନ୍ଦ୍—

ଶ୍ରୀ ଉଦ୍ଧବାନନ୍ଦ ପ୍ରଧାନ





**ଶ୍ରୀ ଜି· ଲାଲ୍ ମୋହନ ପାତ୍ର**

୧୯୪୨ ଜାତୀୟ ଆନ୍ଦୋଳନରେ ତତ୍‌କାଳୀନ ଓଡ଼ିଶାର ଶୀର୍ଷ ନେତାମାନଙ୍କ ନିର୍ଦ୍ଦେଶରେ ବିପ୍ଳବାତ୍ମକ ସଂଗଠନ କରି ଭଞ୍ଜନଗର ଜେଲରେ ବନ୍ଦୀ ହୋଇ ବହୁତ ନିର୍ଯାତନା ଭୋଗ କରିଥିଲେ । ଆସିକା ଅଞ୍ଚଳରେ ସଂଗଠନ କରି ଲୋକପ୍ରିୟତା ଅର୍ଜନ କରିଥିବା ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ।

**କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ**

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ନିର୍ମାତା, ଓଡ଼ିଆ ଶିକ୍ଷା ସଂସ୍କୃତିର ପ୍ରବର୍ତ୍ତକ ତଥା ଓଡ଼ିଶା ରାଜ୍ୟର ପ୍ରଥମ ପ୍ରଧାନ ମନ୍ତ୍ରୀ ପାରଳାଖେମୁଣ୍ଡି ।





**ଦିବାକର ପଟ୍ଟନାୟକ**

ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ବିପ୍ଳବୀ, ସମାଜବାଦୀ, ନେତାଜୀ ସୁଭାଷ ଚନ୍ଦ୍ରଙ୍କର ପ୍ରତିଷ୍ଠିତ ଅଗ୍ରଗାମୀ ଦଳର ଲୋକପ୍ରିୟ ନେତା, ଗଞ୍ଜାମ ଜିଲ୍ଲା ବୋର୍ଡ଼'ର ପ୍ରାକ୍ତନ ସଭାପତି, ଗଞ୍ଜାମବ୍ୟାପ୍ତ ତ୍ୟାଗବୀର ।

**ଶ୍ରୀ ବଳରାମ ପଣ୍ଡା**

ଗଞ୍ଜାମ ଜିଲ୍ଲା ତଥା ଓଡ଼ିଶା ରାଜ୍ୟ ସ୍ୱାଧୀନତା ସଂଗ୍ରାମୀ ସଂଘର ପ୍ରାକ୍ତନ ସଭାପତି, ଆଜାଦ୍ ହିନ୍ଦ୍ ଫୌଜର ସହାୟକ ଓ ଦେଶପ୍ରେମୀ ।



## ନିରଞ୍ଜନ ପଟ୍ଟନାୟକ

ଗଞ୍ଜାମ ଜିଲ୍ଲା ଲବଣ ସତ୍ୟାଗ୍ରହର ଅଗ୍ରଗାମୀ ନେତା, ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ଦେଶପ୍ରେମୀ, ତ୍ୟାଗୀ



## ଶ୍ରୀ ଜଗନ୍ନାଥ ମିଶ୍ର

ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ନେତାଜୀଙ୍କ ପ୍ରତିଷ୍ଠିତ ଅଗ୍ରଗାମୀ ଦଳର ଅନ୍ୟତମ ନେତା, ତ୍ୟାଗୀ. ଗଞ୍ଜାମ ଜିଲ୍ଲାରେ ବିଭିନ୍ନ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠାର ମୁଖ୍ୟ ଉଦ୍ୟୋକ୍ତା ।



## ୰ ଉମାଚରଣ ପଟ୍ଟନାୟକ

ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ଗଞ୍ଜାମ ଜିଲ୍ଲା I.N.A. ସାହାଯ୍ୟ ଓ ତଦନ୍ତ କମିଟିର ସମ୍ପାଦକ, କଲିକତାରେ ଭୂଗର୍ଭୀନ ଆଜାଦ-ହିନ୍ଦ୍ ଫୌଜ କମିଟି ଗଠିତ ସୁରକ୍ଷା ପରିଷଦର ଅନ୍ୟତମ ସଭ୍ୟ ତଥା ପୂର୍ବତନ ଲୋକସଭା ସଦସ୍ୟ ଅଡ଼ଭୋକେଟ ।



## ଶ୍ରୀ ବନମାଳୀ ମହାରଣା

ଶ୍ରେଷ୍ଠ ସ୍ୱାଧୀନତା ସଂଗ୍ରାମୀ, ସମାଜବାଦୀ, ଓଡ଼ିଶା ବିଧାନସଭାର ପୂର୍ବତନ ବିଧାୟକ, ଗାନ୍ଧିବାଦୀ ଗଞ୍ଜାମ ଜିଲ୍ଲା ସ୍ୱାଧୀନତା ସଂଗ୍ରାମୀ ସଂଘର ସମ୍ପାଦକ, ଆଜାଦ୍ ହିନ୍ଦ୍ ଫୌଜର ସହାୟକ ତ୍ୟାଗୀ ।



୰ ଗୋବିନ୍ଦ ପ୍ରଧାନ

ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, କୃଷକ ନେତା, ବାଗ୍ମୀ, କଂଗ୍ରେସର ପ୍ରଥମ ଏମ୍. ଏଲ୍. ଏ. ।



୰ ମଧୁସୂଦନ ମହାପାତ୍ର

ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ବାଗ୍ମୀ, ସୁବକ୍ତା ନେତାଜୀ ପନ୍ଥୀ ଓ ପୁରାତନ ଅଧ୍ୟାପକ, ବର୍ମା-ଓଡ଼ିଆ ପତ୍ରିକାର ସଂସ୍ଥାପକ ତଥା ବର୍ମା ପ୍ରବାସୀ ଭାରତୀୟଙ୍କ ମଧ୍ୟରେ ଅନ୍ୟତମ ମୁଖ୍ୟ ନେତା ।



ଶ୍ରୀ ବିଶ୍ୱନାଥ ମହାପାତ୍ର

ବ୍ରହ୍ମଦେଶରେ ଓଡ଼ିଆ ଆନ୍ଦୋଳନର ଅନ୍ୟତମ ପ୍ରବର୍ତ୍ତକ 'ଉତ୍କଳ ବାର୍ତ୍ତା' ଖବର କାଗଜର ପ୍ରତିଷ୍ଠାତା, ଗାନ୍ଧିବାଦୀ ଓ ସମାଜସେବୀ ।



ଶ୍ରୀ ନିତ୍ୟାନନ୍ଦ ପଣ୍ଡା

କଲିକତା 'ବୃହ ଜୟନ୍ତ ପରିଷଦ'ର ସଭ୍ୟ, ସୁରଣିତାରେ ପ୍ରତିଷ୍ଠ ନେତାଜୀଙ୍କ ସଙ୍ଗେ ସହଯୋଗୀ. ଏଣ ଆଇ. ଏନ୍. ଏ. ସହିତ ଆଜାଦ୍‌ହିନ୍ଦ୍ ଫୌଜ ସଦସ୍ୟ ବରିଷ୍ଠ ହିତାକାଂକ୍ଷୀ ।



## ନେତାଜୀ ସୁଭାଷଚନ୍ଦ୍ର ବୋଷ
ଆଜାଦ୍ ହିନ୍ଦ୍ ଫୌଜର ସେନାଧ୍ୟକ୍ଷ



## ଡା ହରେକୃଷ୍ଣ ମହତାବ
ଓଡ଼ିଶା ପ୍ରଦେଶ କଂଗ୍ରେସର ଅନ୍ୟତମ ନେତା, ସ୍ୱାଧୀନତା ସଂଗ୍ରାମର ରଥୀ, ଐତିହାସିକ, ସାହିତ୍ୟିକ, ସାମ୍ବାଦିକ ଯଥାକ୍ରମେ ଓଡ଼ିଶାର ପ୍ରାକ୍ତନ ମୁଖ୍ୟମନ୍ତ୍ରୀ, ଭାରତର ପୂର୍ବତନ କ୍ୟାବିନେଟ୍ ମନ୍ତ୍ରୀ, ବମ୍ବେର ପ୍ରାକ୍ତନ ରାଜ୍ୟପାଳ, ଓଡ଼ିଶା I. N. A. ଉଦନ୍ତ ଓ ସାହାଯ୍ୟ ସମିତିର ପ୍ରତିଷ୍ଠାତା ଓ ଉତ୍କଳକେଶରୀ ।

(ବ୍ଲକ ନ ପାଇପାରିବା ଯୋଗୁଁ ତଳଲିଖିତ ରଥୀ ଓ ମହାରଥୀମାନଙ୍କ ଫଟୋ ଛପା ଯାଇପାରିଲା ନାହିଁ ।)

## ଶ୍ରୀଯୁକ୍ତ ଚିନ୍ତାମଣି ପାଣିଗ୍ରାହୀ
ଓଡ଼ିଶା ରାଜ୍ୟ ସ୍ୱାଧୀନତା ସଂଗ୍ରାମୀ ସମିତିର ସଭାପତି, କେନ୍ଦ୍ର ପ୍ରତିରକ୍ଷା ବିଭାଗ ରାଷ୍ଟ୍ରମନ୍ତ୍ରୀ ଓ ବରିଷ୍ଠ ସମାଜ ସେବୀ ତଥା ଶିକ୍ଷାବିତ୍ ।

## ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର
ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ, ଦୈନିକ ଆଶାର ସମ୍ପାଦକ, ଦେଶପ୍ରେମୀ ଓ ପ୍ରଖ୍ୟାତ ସାମ୍ବାଦିକ ।

## ଶ୍ରୀ ବୃନ୍ଦାବନ ନାୟକ
ଗଞ୍ଜାମ ଜିଲ୍ଲାର ବରିଷ୍ଠ ସମାଜ ସେବୀ, ଓଡ଼ିଶାର ପୂର୍ବତନ ମନ୍ତ୍ରୀ, ସଞ୍ଜସ୍ ମେମୋରି-ଆଲ ପ୍ରଭୃତି ବହୁନ୍ନ ଶିକ୍ଷାନୁଷ୍ଠାନର ପ୍ରତିଷ୍ଠାତା, ଓଡ଼ିଶା I. N. A. ମାନଙ୍କର ଶୁଭାକାଂକ୍ଷୀ ତଥା 'ଦୈନିକ ଆଶା' ସମ୍ବାଦ ମଞ୍ଚର ପୁନଃ ସଂସ୍ଥାପକ ।

## ଶ୍ରୀ ଶ୍ରୀହର୍ଷ ମିଶ୍ର
ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ, ଓଡ଼ିଶା ଫରୱାର୍ଡ୍ ବ୍ଲକର ଅନ୍ୟତମ ନେତା, ବରିଷ୍ଠ ସାହିତ୍ୟିକ ତଥା ସାମ୍ବାଦିକ ।

## ପଣ୍ଡିତ ନୀଳକଣ୍ଠ ଦାଶ
ଓଡ଼ିଶାର ବରିଷ୍ଠ ରାଜନୀତିଜ୍ଞ, କବି, ସାହିତ୍ୟିକ, ସାମ୍ବାଦିକ ତଥା ବାଗ୍ମୀ, ସ୍ୱାଧୀନତା ସଂଗ୍ରାମୀ ।

## ଶ୍ରୀ ବିଜୁ ପଟ୍ଟନାୟକ
ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ, ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ, ଦକ୍ଷ ବ୍ୟୋମଯାନ ଚାଳକ, ଓଡ଼ିଶା ରାଜ୍ୟରେ ଶିଳ୍ପ ବିକାଶର ପ୍ରବର୍ତ୍ତକ ତଥା ଭାରତର ପ୍ରାକ୍ତନ କ୍ୟାବି-ନେଟ୍ ମନ୍ତ୍ରୀ ।

## ପଦ୍ମଶ୍ରୀ ଡା: ରାଧାନାଥ ରଥ
ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ, ଓଡ଼ିଶାର ପ୍ରାକ୍ତନ ଅର୍ଥ ଓ ଶିକ୍ଷାମନ୍ତ୍ରୀ, ଲୋକ ସେବକ-ମଣ୍ଡଳର ସଭାପତି, 'ଦୈନିକ 'ସମାଜ' ର ସମ୍ପାଦକ, ପ୍ରଖ୍ୟାତ ସାମ୍ବାଦିକ, ସାହିତ୍ୟିକ, ସମାଜସେବୀ ତଥା ନିଖିଳ ଭାରତ ସ୍ୱାଧୀନତା ସଂଗ୍ରାମୀ ସଙ୍ଗଠନର ଓଡ଼ିଶା ରାଜ୍ୟ-ସଭାପତି

## ପଣ୍ଡିତ ଗୋଦାବରୀଶ ମିଶ୍ର
ସ୍ୱାଧୀନତା ସଂଗ୍ରାମର ରଥୀ, ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କର ଅନୁଗାମୀ, କବି, ସାହିତ୍ୟିକ, ସାମ୍ବାଦିକ, ଦେଶ ମିଶ୍ରଣ ଆନ୍ଦୋଳନର ବରିଷ୍ଠ ନେତା, ଉତ୍କଳ ବିଶ୍ୱ-ବିଦ୍ୟାଳୟର ଅନ୍ୟତମ ପ୍ରତିଷ୍ଠାତା ।

# ସୂଚୀପତ୍ର

# କର୍ଣ୍ଣେଲ୍ ବ୍ରଜମୋହନ ପଟ୍ଟନାୟକ



ଗଞ୍ଜାମ ଜିଲ୍ଲା ହିଂଜଳିକାଟୁଠାରେ ଓଡ଼ିଶା ଆଜାଦହିନ୍ଦ୍ ଫୌଜ ସଂଘର ପ୍ରତିଷ୍ଠାତା କର୍ଣ୍ଣେଲ ବ୍ରଜମୋହନ ପଟ୍ଟନାୟକ ପୁରୀ ଜିଲ୍ଲା ଡେଲଙ୍ଗ ନିକଟ ଉଦୟପୁର ଗ୍ରାମରେ ୧୯୧୩ ମସିହା ମାର୍ଚ୍ଚ ମାସ ୮ ତାରିଖରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ରାଧାମୋହନ ପଟ୍ଟନାୟକ ଓ ମାତାଙ୍କ ନାମ ସ୍ନେହମଣି ଦେବୀ । ସେ ବିହାର ପ୍ରଦେଶର ପାଟନା ଜିଲ୍ଲାରେ ଶିକ୍ଷା ଲାଭକରି ପରେ ପାଟନା ମେଡ଼ିକେଲ୍ କଲେଜରୁ ଏମ୍.ବି.ବି.ଏସ୍. ପାସ୍ କରି ୧୯୪୧ ମସିହାରେ ବ୍ରିଟିଶ ସୈନ୍ୟ ବାହିନୀର ମେଡ଼ିକଲ ସର୍ଭିସରେ ଯୋଗଦେଇ ଗୋର୍ଖା ରେଜିମେଣ୍ଟର କ୍ୟାପଟେନ ରେଙ୍କରେ ନିଯୁକ୍ତି ପାଇ ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ସିଙ୍ଗାପୁର ଯୁଦ୍ଧକ୍ଷେତ୍ରରେ କର୍ମରତ ଥିଲେ । ଜାପାନ ଆକ୍ରମଣରେ ସିଙ୍ଗାପୁର ପତନ ହେବାପରେ ଜାପାନୀ ଯୁଦ୍ଧବନ୍ଦୀ ଶିବିରରେ ଆବଦ୍ଧ ହୋଇ ରହିଥିଲେ । ୧୯୪୩ ମସିହାରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଆହ୍ୱାନରେ ଆଜାଦହିନ୍ଦ ଫୌଜରେ ଯୋଗଦେଇ ମେଡ଼ିକଲ ବୋର୍ଡ଼ର ଅଧିନାୟକ ଭାବେ ନିଯୁକ୍ତି ପାଇଥିଲେ । ସେହି ବର୍ଷ ଅକ୍ଟୋବର ମାସରେ ନେତାଜୀ ଅସ୍ଥାୟୀ ଆଜାଦହିନ୍ଦ ସରକାର ଗଠନ କରି ବ୍ରିଟିଶ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ବର୍ମାର ରାଜଧାନୀ ରେଙ୍ଗୁନକୁ ମୁଖ୍ୟ କାର୍ଯ୍ୟାଳୟ ସ୍ଥାନାନ୍ତର କଲେ । ୧୯୪୪ ମସିହାରେ ସେ ଆଜାଦହିନ୍ଦ ସରକାରଙ୍କ ଶ୍ରମ ବିଭାଗ ଦାୟିତ୍ୱ ନେଇଥିଲେ । ତାଙ୍କ ଆଗମନରେ ବର୍ମାର ଓଡ଼ିଆମାନେ ଉତ୍ପ୍ରାଣିତ ହୋଇ ତାଙ୍କୁ ଅଭିନନ୍ଦନ ଜଣାଇଥିଲେ । ସାଧାରଣ ସଭାରେ ତାଙ୍କ ଫୁଲ ମାଳଟି ୫୦୦୦ ଟଙ୍କାରେ ନିଲାମ ହୋଇଥିଲା । ବର୍ମାରେ ଆଙ୍ଗ୍ଲୋ-ଆମେରିକା ବିମାନ ବାହିନୀ ପକ୍ଷରୁ ଭୟଙ୍କର ବୋମାମାଡ଼ ହେଉଥିବା ଅଂଚଳରେ ସେ ଦଳବଳେ ପହଞ୍ଚି ଥଇଥାନ ଓ ସାହାଯ୍ୟ ବ୍ୟବସ୍ଥା କରୁଥିଲେ । ତାଙ୍କର ଧୈର୍ଯ୍ୟ, ସାହସ ଓ କର୍ତ୍ତବ୍ୟନିଷ୍ଠା ଅବର୍ଣ୍ଣନୀୟ । ଯୁଦ୍ଧ ଶେଷରେ ସେ ବ୍ରିଟିଶ କର୍ତ୍ତୃପକ୍ଷଙ୍କ ଦ୍ୱାରା ବନ୍ଦୀହୋଇ ଦିଲ୍ଲୀ ଲାଲକିଲ୍ଲାରେ ବିଚାରଣାପରେ ମୁକ୍ତିପାଇଥିଲେ । ୧୯୪୭ ମସିହାରେ ସେ ଆଜାଦହିନ୍ଦ୍ ଫୌଜ

ସାହାଯ୍ୟ କମିଟିର ସମ୍ପାଦକ ହୋଇଥିଲେ । ପରେ ସେ ଓଡ଼ିଶା ସରକାରଙ୍କର ସ୍ୱାସ୍ଥ୍ୟ ବିଭାଗରେ କାର୍ଯ୍ୟ କରିଥିଲେ । ଆଜାଦ ହିନ୍ଦ ଫୌଜ ସ୍ପ୍ରିଂ କମିଟିର ସେ ସେକ୍ରେଟାରୀମେନ ହୋଇଥିଲେ । ସେ ୧୯୭୬ ମସିହା ଜୁଲାଇ ମାସ ୭ ତାରିଖରେ ଇହଲୀଳା ସମ୍ବରଣ କଲେ । ସ୍ୱାଧୀନତା ସଂଗ୍ରାମରେ ତାଙ୍କର ଅସୀମ ତ୍ୟାଗ ହେତୁ ସେ ଚିରସ୍ମରଣୀୟ ହୋଇଛନ୍ତି । ତାଙ୍କ ସ୍ତ୍ରୀଙ୍କ ନାମ ବିଦ୍ୟୁଲତା ପଟ୍ଟନାୟକ ତାଙ୍କର ଅପୂର୍ଣ୍ଣ କାର୍ଯ୍ୟକୁ ଆଗେଇ ନେଉଛନ୍ତି ।

## ଡ଼ାକ୍ତର ବୀର କିଶୋର ଭୂୟାଁ, ଅଇ. ଏନ୍. ଏ.



ଗଞ୍ଜାମ ଜିଲ୍ଲା ହିଂଜଳିକାଟୁଠାରେ ପ୍ରତିଷ୍ଠିତ ଓଡ଼ିଶା ଆଜାଦ ହିନ୍ଦ ଫୌଜ ସଂଘର ଅନ୍ୟତମ ପ୍ରତିଷ୍ଠାତା ଡ଼ାକ୍ତର ବୀର କିଶୋର ଭୂୟାଁ । କଟକ ଜିଲ୍ଲା ସାଲେପୁର ଥାନା ଅନ୍ତର୍ଗତ ସୌଳ ଗ୍ରାମପଞ୍ଚାୟତର ଓପଦ ନାମକ ଗ୍ରାମରେ ୧୯୧୪ ମସିହା ଜୁନ ମାସରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ଶଙ୍କର ଭୂୟାଁ ସେ ଜଣେ ସ୍କୁଲ ଶିକ୍ଷକ ଥିଲେ । ମାତାଙ୍କ ନାମ ଦୁର୍ଗାବତୀ । ସେ ଜଣେ ଧର୍ମପ୍ରାଣା ମହିଳା ଥିଲେ ।

ଗ୍ରାମ ପାଠଶାଳା ପରେ ମହାସିଂହପୁର ଓ ସାଲେପୁର ମାଧ୍ୟମିକ ଶିକ୍ଷା ସମାପନ କରି କଟକ ସହର ସମୃଦ ମୋସଲେମ ସେମିନାରୀ ହାଇସ୍କୁଲରେ ପଢ଼ୁଥିବା ବେଳେ ଅସହଯୋଗ ଆନ୍ଦୋଳନରେ ଝାସ ଦେଇ ବହୁବାର କାରା-ବରଣ କରିଥିଲେ । ଅର୍ଡିନାନସ ବଳରେ ଦେଶରେ ଖବର କାଗଜ ପ୍ରକାଶନ ବନ୍ଦ ରହିଥିବାରୁ ଲିଥୋରେ ସମ୍ବାଦ ପ୍ରକାଶ କରୁଥିବା ବେଳେ କେନ୍ଦ୍ରାପଡ଼ା ନିବାସୀ ଶ୍ରୀ ଭଗବାନ କର ଓ ଡ଼ାକ୍ତର ଭୂୟାଁ ଗିରଫ ହୋଇ କଟକର ଫାଷ୍ଟକ୍ଲାସ ମାଜିଷ୍ଟ୍ରେଟ ଶ୍ରୀ ପାଲିତଙ୍କ କୋର୍ଟରୁ ଛ ଛ ମାସ କରି କାରାଦଣ୍ଡର ଆଦେଶ ପାଇଥିଲେ ।

ତା ପୂର୍ବରୁ କଟକ ଜିଲ୍ଲା ମାଜିଷ୍ଟ୍ରେଟଙ୍କୁ ଦଶଜଣ ସଂଗ୍ରାମୀଙ୍କ ସହଯୋଗରେ କୋର୍ଟରୁ ତଡ଼ି ଦେଇ କୋର୍ଟ ଦଖଲ କରିଥିଲେ ।

ତତ୍କାଳୀନ ଗୋରା ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ମ୍ୟାକଲେନଙ୍କ ହଣ୍ଟର ମାଡରେ ଦୁଇଜଣ ବେହୋସ ହୋଇଥିଲେ । ଛଦ୍ମ ନାମରେ ପାଟଣା କ୍ୟାମ୍ପ ଜେଲରେ ସଜା ଭୋଗୁଥିବାବେଳେ ଗ୍ରାମରେ ମାତାଙ୍କର ମୃତ୍ୟୁ ଘଟିବାରୁ ଛଦ୍ମ ନାମରେ ଜେଲକୁ ତାର ବାର୍ତ୍ତା ଯିବାରୁ ପାଟଣା କ୍ୟାମ୍ପ ଜେଲରେ ଥିବାକଥା ଜଣା ପୋଲିସ୍ ଜାଣିପାରିଲେ । ତାର ବହୁ ପୂର୍ବରୁ ଆନ୍ଦୋଳନ ପାଇଁ ଅସ୍ତ୍ରଶସ୍ତ୍ର ସଂଗ୍ରହ କରୁଥିବା ବେଳେ ନେଇ ଯାଉଥିବା ତିନିଜଣ ସ୍କୁଲ ଛାତ୍ର ଧରା ହୋଇ ଫେରି ଆସିବା ପରେ ତାଙ୍କ ନାମରେ ୩୬୩ ଦଫା ପିଲା ଚୋରି ମକଦ୍ଦମା ରୁଜୁ ହୋଇ ଗିରଫଦାରି ପରୱାନା ବାହାରି ଖୋଜା ଖୋଜି ଚାଲିଥିଲା କିନ୍ତୁ ସେ ପୋଲିସ ଆଖିରେ ଧୂଳିଦେଇ ଛଦ୍ମ ନାମରେ କାମକରି ଗିରଫ ହୋଇ ଜେଲ ଯାଇଥିଲେ ।

ତା ୨୦-୧-୩୩ରେ ପାଟଣା କ୍ୟାମ୍ପ ଜେଲରୁ ମୁକ୍ତି ପାଇ ଜେଲ ଫାଟକର ପଦାକୁ ଆସିବାମାତ୍ରେ ପୂର୍ବ ୱାରେଣ୍ଟ ବଳରେ ବିହାର ପୋଲିସଙ୍କ ଦ୍ୱାରା ଗିରଫ ହୋଇ ବାଙ୍କିପୁର ଜେଲରେ ରହିଥିଲେ । କଟକ ଜେଲକୁ ପୁନରାୟ ବଦଳି ହୋଇ ଆସି ତିନିମାସ ସାତ ଦିନ ବିଚାରାଧୀନ କଏଦୀ ଥିଲେ । ଜେଲ ଅଫିସ ଭିତରେ କୋର୍ଟକରି ୭ ଥର ବିଚାର ଚାଲି ଫାଷ୍ଟକ୍ଲାସ ମାଜିଷ୍ଟ୍ରେଟ ଶ୍ରୀ ବି. ଏମ୍. ମହାନ୍ତିଙ୍କ କୋର୍ଟରୁ ପୁଣି ଏକ ବର୍ଷ ସଶ୍ରମ କାରାଦଣ୍ଡର ଆଦେଶ ପାଇଥିଲେ ।

୧୯୩୪ ଫେବୃୟାରୀ ୫ ତାରିଖରେ କଟକ ଜେଲରୁ ମୁକ୍ତି ପାଇଥିଲେ । ମହାତ୍ମା ଗାନ୍ଧୀଙ୍କ ଐତିହାସିକ ହରିଜନ ପଦ ଯାତ୍ରାରେ ପୁରୀରେ ଯୋଗଦେଇ କଟକ କେନ୍ଦ୍ରାପଡ଼ା ଓ ଯାଜପୁର ଯାଏ ଗାନ୍ଧୀଜୀଙ୍କ ସଙ୍ଗରେ ଥିଲେ ।

୧୯୩୪ ଡିସେମ୍ବର ଶେଷ ସପ୍ତାହରେ ଭାରତରୁ ବ୍ରହ୍ମଦେଶ ଯାଇଥିଲେ । ରୂପା, ଶୀସା ପାଇଁ ପୃଥିବୀର ୩ୟ ବୃହତ୍ତର ଖଣି ବର୍ମା କର୍ପୋରେସନ ଲିମିଟେଡ କମ୍ପାନୀରେ ସ୍ମେଲଟର ଏକ୍ସପେରିମେଣ୍ଟାଲ Smelter experimental ଡିପାର୍ଟ-ମେଣ୍ଟରେ ଜଣେ ପ୍ଲାଣ୍ଟ ଅପରେଟର କାମ ଆରମ୍ଭ କରି କାର୍ଯ୍ୟ ଦକ୍ଷତା ଯୋଗୁ ସେହି ଡିପାର୍ଟମେଣ୍ଟରେ ଆସିଷ୍ଟାଣ୍ଟ ଟେକନିକାଲ ଇଂଜିନିୟରକୁ ଉନ୍ନୀତ ହୋଇ କାର୍ଯ୍ୟ କରୁଥିଲେ । ନାମଟୁରେ ଅବସ୍ଥିତ ଜଗନ୍ନାଥ ମନ୍ଦିର ପରିଚାଳନା କମିଟିରେ ଥିବାବେଳେ ମନ୍ଦିର ସଂଲଗ୍ନ ଉତ୍କଳମଣି ପାଠାଗାରର ସେକ୍ରେଟେରୀ ଥିଲେ ଏବଂ ଶ୍ରମିକଙ୍କ ଶିକ୍ଷା ନିମନ୍ତେ ପାଠପଢ଼ାର ବନ୍ଦୋବସ୍ତ କରିଥିଲେ । ସେହି ଶିକ୍ଷାଦାନ ଫଳରେ କେତେକ ଓଡ଼ିଆ କୁଲିରୁ କିରାଣିକୁ ପ୍ରମୋସନ ପାଇ ପାରିଥିଲେ । ଭୁକଶା ସହ ଡାକ୍ତର ଭୂୟାଁ ଚକଲା ଓ ଖଦଡ ଭଲ ବସ୍ତ୍ର ବ୍ୟବସାୟ କରୁଥିଲେ ।

୨ୟ ବିଶ୍ୱଯୁଦ୍ଧରେ ଜାପାନ ବର୍ମା ଦଖଲ କଲାପରେ ଦକ୍ଷିଣ ପୂର୍ବ ଏସିଆରେ ବିପ୍ଳବୀ ରାସବିହାରୀ ବୋଷଙ୍କ ପ୍ରତିଷ୍ଠିତ ଇଣ୍ଡିଆନ ଇଣ୍ଡିପେଣ୍ଡେନ୍ସ ଲିଗ୍ ଆରମ୍ଭ ହେଲା ଏବଂ ସେଥିରେ ଡାକ୍ତର ଭୂୟାଁ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ।

ନେତାଜୀ ସିଙ୍ଗାପୁରରୁ ପ୍ରଥମଥର ରେଙ୍ଗୁନ ଆସିଥିବାବେଳେ ଡାକ୍ତର ଭୂୟାଁ ଓ ଶ୍ରୀ ନରସିଂହ ଚରଣ ଦାଶ ଅନ୍ୟ କେତେଜଣ ଲିଗ୍ ସଦସ୍ୟଙ୍କ ସହ ନେତାଜୀଙ୍କୁ ସାକ୍ଷାତ କରି ପରେ ଆଜାଦ ହିନ୍ଦ ଫୌଜରେ ଯୋଗ ଦେଇଥିଲେ । ଶ୍ରୀ ନରସିଂହ ଦାଶ ଅଫିସର୍ସ ଟ୍ରେନିଂରେ ଯୋଗଦେଇ ଟ୍ରେନିଂପରେ କମିଶନ ପାଇ ଫାଇଟିଙ୍ଗ୍ ଫୋର୍ସରେ ଫ୍ରଣ୍ଟକୁ ଚାଲିଗଲେ । ଡାକ୍ତର ଭୂୟାଁ ସିଭିଲ ପ୍ରୋପାଗଣ୍ଡା କ୍ୟାମ୍ପ ବା ୮ ନମ୍ବର ଇଉନିଟରେ ମେଡ଼ିକାଲ ଅଫିସର ଭାବେ କାର୍ଯ୍ୟ କଲେ ।

ସେତିକବେଳେ ଗଞ୍ଜାମର କୃଷ୍ଣଚନ୍ଦ୍ର ତ୍ରିପାଠୀ ବର୍ମାର ଗାଁମାନଙ୍କରୁ ରିକ୍ରୁଟିଂ ଅଫିସର ରୂପେ କାର୍ଯ୍ୟକରି ଲୋକ ସଂଗ୍ରହ କରି ସେହି କ୍ୟାମ୍ପକୁ ଆଣୁଥିବାବେଳେ ସେ ସବୁ ଲୋକଙ୍କ ମାଇନା ହେବାବେଳେ ତ୍ରିପାଠୀ ବାବୁଙ୍କ ସହ ପରିଚୟ ଘଟିଥିଲା ଏବଂ ପରବର୍ତ୍ତୀ ସମୟରେ ଓଡ଼ିଶା ଆଜାଦ ହିନ୍ଦ ଫୌଜ ସଂଘ ଗଢ଼ିବାକୁ ସୁଯୋଗ ମିଳିଥିଲା ।

ବର୍ମାରେ ଆଜାଦ ହିନ୍ଦ ଫୌଜ ଆତ୍ମ ସମର୍ପଣ କଲାପରେ ସେମାନେ କିଛୁଦିନ ରେଙ୍ଗୁନ ସେଣ୍ଟ୍ରାଲ ଜେଲରେ ବନ୍ଦୀ ରହି ଭାରତକୁ ଫେରିଆସିଲେ । ଡାକ୍ତର ଭୂୟାଁ ରେଙ୍ଗୁନସ୍ଥ ବର୍କୋରେ ଶାସ୍ତ୍ରୀରୋଡ଼ର ପାଞ୍ଚ ନମ୍ବର ଘରେ ନଜର ବନ୍ଦୀରେ ରହିଥିଲେ ଏବଂ ଇଣ୍ଡିଆନ ଇଉଥ ଲିଗ, ବର୍ମା ଷ୍ଟେଟ କଂଗ୍ରେସ ଇଣ୍ଡିଆନ ସୋସିଏଲ କ୍ଲବ, ବର୍ମା କ୍ଲର୍କସ ଆସୋସିଏସନ, ଆଜାଦ ହିନ୍ଦ ପ୍ରପର୍ଟି ଇନକ୍ୱାରି କମିଟି, ବର୍ମା ବେଙ୍ଗଲ ଇଉନିୟନ ପ୍ରଭୃତି ବହୁ ଅନୁଷ୍ଠାନ ସହ ସଂପୃକ୍ତ ଥିଲେ । ୧୯୪୯ ମାର୍ଚ୍ଚ ମାସରେ ବର୍ମାରୁ ଭାରତକୁ ଶରଣାର୍ଥୀ ଆସିବାବେଳେ କଲିକତା ଆସୁଥିବା ଜାହାଜରେ ଡା. ଭୂୟାଁ ତହିଁରେ ମେଡ଼ିକାଲ ଅଫିସର ରୂପେ ଏବଂ ଅନ୍ୟ ୩ଜଣ ଆଜାଦ ହିନ୍ଦ ଫୌଜର ଅଫିସର କେୟାର ଟେକର ରୂପେ କଲିକତା ଆସିଥିଲେ । ସାର୍ଦ୍ଧ ତେଇଶ ବର୍ଷ ପରେ ଭାରତକୁ ଫେରି ପ୍ରଥମ ସାବାଳକ ଭୋଟରେ ୧୯୫୨ରେ ସାଲେପୁର ନିର୍ବାଚନ ମଣ୍ଡଳୀରୁ ଜଣେ ସ୍ୱାଧୀନ ପ୍ରାର୍ଥୀ ରୂପେ ଓଡ଼ିଶା ବିଧାନ ସଭା ସଦସ୍ୟ ପାଇଁ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ ଏବଂ ଓଡ଼ିଶା ଆଜାଦ ହିନ୍ଦ ସଂଘର ଫାଉଣ୍ଡର ପ୍ରେସିଡେଣ୍ଟ ଥିଲେ । ଉପଦେଷ୍ଟା କର୍ଣ୍ଣେଲ ବ୍ରଜମୋହନ ପଟ୍ଟନାୟକ, ଲେଫ୍ଟେନାଣ୍ଟ ନରସିଂହ ଚରଣ ଦାଶ ଓ କାର୍ଯ୍ୟକାରୀ କମିଟି ସଦସ୍ୟ ମହର୍ଷି ପୀତବାସ ପାଣିଗ୍ରାହୀ, କୃଷ୍ଣଚନ୍ଦ୍ର ତ୍ରିପାଠୀ,

ଜପ୍ରବାନନ୍ଦ ପ୍ରଧାନ, ବଧ୍ର ଚାନ୍ଦ ପ୍ରଦ୍ଧାନଙ୍କ ସହଯୋଗରେ କାର୍ଯ୍ୟ ପରିଚାଳନା କରିଥିଲେ ଓ ସଗ୍ରାମୀଙ୍କୁ ରାଜ୍ୟ ଭତ୍ତା ପ୍ରାପ୍ତ ହୋଇଥିଲା । କେନ୍ଦ୍ର ଭତ୍ତା ପାଇଁ ଏକାଧିକ ବାର ଦିଲ୍ଲୀସ୍ଥିତ ଆଇ. ଏନ୍. ଏ. ଅଫିସ ରାଷ୍ଟ୍ରପତି ଗିରି ଓ ସ୍ୱରାଷ୍ଟ୍ର ମନ୍ତ୍ରୀ ପନ୍ଥଙ୍କ ସହ ଆଲୋଚନା କରିଥିଲେ ।

ସେ ଦୁଇଥର ସାଲେପୁର ନିର୍ବାଚନ ମଣ୍ଡଳୀରୁ ଓଡ଼ିଶା ବିଧାନ ସଭା ପାଇଁ ସ୍ୱାଧୀନ ପ୍ରାର୍ଥୀ ରୂପେ ପ୍ରତିଦ୍ୱନ୍ଦିତା କରିଥିଲେ । ସେ ଜଣେ ଜାତୀୟତାବାଦ ପ୍ରଚାରକାରୀ ରୂପେ ସୁପରିଚିତ । ସେ ଜଣେ ବହୁ ଭାଷାଭାଷି କବି ଓ ଲେଖକ ।

ଡାକ୍ତର ଭୂୟାଁ ହେଉଛନ୍ତି, ଓଡ଼ିଶାର ଏକମାତ୍ର ସଂଗ୍ରାମୀ ଯେ କି ସର୍ବଦନ ସ୍ୱଦେଶି ଆନ୍ଦୋଳନ ପାଇଁ ଜେଲ ଭୋଗି ଭାରତ ବାହାରକୁ ଯାଇ ନେତାଜୀଙ୍କ ଆଜାଦ ହିନ୍ଦ ଫୌଜରେ ଯୋଗ ଦେଇଥିଲେ ।

ନେତାଜୀ ତଦନ୍ତ କମିଶନ ମାନ୍ୟବର ଖୋସଲା ଓଡ଼ିଶାକୁ ସାକ୍ଷ୍ୟ ଗ୍ରହଣ କରିବାକୁ ଆସିଥିବା ବେଳେ ପୁରୀ ନାରୀସେବା ସଦନରେ କମିଶନ ଆଗରେ ମାତ୍ର ଦୁଇଜଣ ସାକ୍ଷ୍ୟ ଦେଇଥିଲେ । ସେମାନେ ହେଲେ ଡାକ୍ତର ନୀର କିଶୋର ଭୂୟାଁ ଓ କର୍ଣ୍ଣେଲ ବ୍ରଜମୋହନ ପଟ୍ଟନାୟକ । ଡା. ଭୂୟାଁ ବର୍ତ୍ତମାନ କଟକ ତୁଳସୀପୁର ମଧୁସୂଦନ ନଗରରେ ଅବସ୍ଥାନ କରୁଛନ୍ତି । ସଂଗ୍ରାମୀ ସଂଗଠନର ସେ ଜଣେ ସକ୍ରିୟ ସଦସ୍ୟ ଅଟନ୍ତି ।

'ଜୟହିନ୍ଦ'

## ଶ୍ରୀ କୃଷ୍ଣ ଚନ୍ଦ୍ର ତ୍ରିପାଠୀ



ଗଞ୍ଜାମ ଜିଲ୍ଲା ପିତଳ ନିକଟ ରାଇପିଳ-ପୁର ଶାସନରେ ୧୯୧୬ ମସିହା ମାର୍ଚ୍ଚ ମାସ ୨୪ ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ରଘୁନାଥ ତ୍ରିପାଠୀ, ମାତାଙ୍କ ନାମ ବୃନ୍ଦା ଓ ପତ୍ନୀଙ୍କ ନାମ ଶ୍ରୀମତୀ ତିଲୋତ୍ତମା ତ୍ରିପାଠୀ । ସେ ଗ୍ରାମ୍ୟ ପାଠଶାଳାରେ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟୟନ କରି ଟେକାଲି, ଜଗପତ୍ତି ଓ ବୁଗୁଡ଼ା ମଧ୍ୟ ଇଂରାଜୀ ବିଦ୍ୟାଳୟମାନଙ୍କରେ ଅଧ୍ୟୟନ କରିଥିଲେ । କିଛି ଦିନ ଶିକ୍ଷକତା କରିବା ପରେ ସଙ୍ଗୀତାଚାର୍ଯ୍ୟ ତାରିଣୀ ଚରଣ ପାତ୍ରଙ୍କ ଠାରୁ ସଙ୍ଗୀତ ଶିକ୍ଷା କରିଥିଲେ ।

୧୯୩୦ ମସିହା ଲବଣ ସତ୍ୟାଗ୍ରହ ବେଳେ ସେ ସ୍ୱେଚ୍ଛାସେବକ ଭାବେ ସତ୍ୟାଗ୍ରହୀମାନଙ୍କୁ ସାହାଯ୍ୟ କରିଥିଲେ । ୧୯୩୭ ମସିହାରେ ଶିକ୍ଷକତା ଛାଡ଼ି ଏକ ସଙ୍ଗୀତ ଦଳ ସହ ବ୍ରହ୍ମଦେଶକୁ ଯାଇ ନୃତ୍ୟ ସଙ୍ଗୀତ ପରିବେଷଣ କରି ସୁନାମ ଅର୍ଜନ କରିଥିଲେ । ବର୍ମାରେ ଜାତୀୟ ଜାଗରଣ ଆଣିବା ଲକ୍ଷ୍ୟରେ ରେଙ୍ଗୁନ ଓଡ଼ିଆ ଯୁବକ ସଂଘର ପରାମର୍ଶ କ୍ରମେ ସେ ଲେସ୍ପୁର ବର୍ମାର ଓଡ଼ିଆଭାଷୀ ବହୁଳ ଅଞ୍ଚଳ ବଗୁଲକୁ ଯାଇ ଓଡ଼ିଆ ରାସ ସମିତି ଗଠନ କରି ଗୀତ, ନାଚ, ପ୍ରଦର୍ଶନ ସଙ୍ଗେ ସଙ୍ଗେ ଗାନ୍ଧିଜୀଙ୍କ ସ୍ୱରାଜ୍ୟ ବାର୍ତ୍ତା ପ୍ରଚାର, ରେଙ୍ଗୁନରୁ ପ୍ରକାଶିତ 'ବର୍ମା ଓଡ଼ିଆ' ଓ 'ପ୍ରଭାତ' ପାଇଁ ସମ୍ବାଦ ପ୍ରେରଣ, ଗୋପବନ୍ଧୁ ଶ୍ରାଦ୍ଧ, ଗାନ୍ଧୀ ଜୟନ୍ତୀ ଇତ୍ୟାଦି ସାଂସ୍କୃତିକ କାର୍ଯ୍ୟକ୍ରମ ମଧ୍ୟ କରୁଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ରାସ ସମିତି ଭାଙ୍ଗି ଦେଇ ରାସବିହାରୀ ବୋଷଙ୍କ ଗଠିତ ଆଜାଦ ହିନ୍ଦ ସଂଘରେ ସଦଳବଳେ ଯୋଗ ଦେଇଥିଲେ । ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଅସ୍ଥାୟୀ ଆଜାଦ ହିନ୍ଦ ସରକାର ଗଠନ କଲାପରେ ଫିଲ୍ଡ ପ୍ରୋପାଗଣ୍ଡା ତାଲିମ କେନ୍ଦ୍ରରେ ଶିକ୍ଷାପାଇ ନେତାଜୀଙ୍କ ନିର୍ଦ୍ଦେଶରେ ପ୍ରଚାର ଓ ଲୋକ ସଂଗ୍ରହ ଅଫିସର ରୂପେ ନିଯୁକ୍ତି ପାଇ କାର୍ଯ୍ୟ କଲେ । ସେ 'ସ୍ୱାଧୀନ ଭାରତ' ନାମରେ ଗୋଟିଏ ଓଡ଼ିଆ ସମ୍ବାଦପତ୍ର ପ୍ରକାଶନରେ ସାହାଯ୍ୟ, ସ୍ୱତନ୍ତ୍ର ଓଡ଼ିଆ ଯୁଦ୍ଧ ତାଲିମ କେନ୍ଦ୍ର ପ୍ରତିଷ୍ଠା, ଯୁଦ୍ଧ ବିଧ୍ୱସ୍ତ ଅଞ୍ଚଳରେ ଥଇଥାନ ବ୍ୟବସ୍ଥା ଇତ୍ୟାଦି ଦିଗରେ ବହୁତ କାର୍ଯ୍ୟ କରିଥିଲେ । ନେତାଜୀଙ୍କ ଆଗୁଆ ହେଡକ୍ୱାର୍ଟର ମେମିଓକୁ ଯାଇ କାର୍ଯ୍ୟକରୁଥିବାବେଳେ ଆଜାଦ ହିନ୍ଦ ଫୌଜର ସୈନ୍ୟମାନେ ପଛକୁ ହଟି ଆସିବାରୁ ସେ ରେଙ୍ଗୁନ ଆସି ବ୍ରିଟିଶ ସୈନ୍ୟମାନଙ୍କ ଦ୍ୱାରା ଧରା ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ଆଠମାସ ଯୁଦ୍ଧବନ୍ଦୀ ରୂପେ ରହିଥିଲେ । ତାପରେ ମୁକ୍ତ ହୋଇ ପ୍ରଭାତ ପତ୍ରିକାକୁ ପୁନଃ ପ୍ରକାଶ କରାଇ ତାର ଯୁଗ୍ମ ସମ୍ପାଦକ ହୋଇଥିଲେ । ସେ ବର୍ମାର 'ଆଣ୍ଟି ଫାସିଷ୍ଟ ଲିଗ୍'ର ସଭ୍ୟ ହୋଇଥିଲେ । ୧୯୪୭ ମାର୍ଚ୍ଚ ମାସ ଶେଷରେ ଚଟାଗଙ୍ଗ ଓ କଲିକତା ଦେଇ କଟକ ଆସି ପ୍ରାଦେଶିକ କଂଗ୍ରେସ କମିଟି ଦ୍ୱାରା ଏକ ସଭାରେ ସମ୍ବର୍ଦ୍ଧିତ ହୋଇଥିଲେ । ଓଡ଼ିଶା ଆଜାଦ ହିନ୍ଦ ଫୌଜ ସାହାଯ୍ୟ ଓ ତଦନ୍ତ ସମିତିର ଗଞ୍ଜାମ ଶାଖାର ସମ୍ପାଦକ ହୋଇଥିଲେ । କଲିକତା ପ୍ରବାସୀ ଓଡ଼ିଆ ସମ୍ମେଳନୀ ପାଇଁ ସ୍ୱେଚ୍ଛା ସେବକ ଗଠନ, ବୃହତ୍ତର କଲିକତା ଉତ୍କଳ ସମାଜ କାର୍ଯ୍ୟକାରୀ କମିଟିର ସଭ୍ୟ, ଅଗରପଡ଼ା ହିନ୍ଦ-ଜର୍ଦ୍ଧ ମିଲତ ବିଦ୍ୟାଳୟର ସ୍କାଉଟ ଶିକ୍ଷକ, ବୁଦ୍ଧ ଜୟନ୍ତୀ ପରିଷଦ, ବାଳଚର ନାଟ୍ୟ ସଂଘ । କମାରହାଟି ଉତ୍କଳ ସମାଜ, ସାମ୍ପ୍ରଦାୟିକ ଶାନ୍ତି କମିଟିର ସଭ୍ୟ, ପଶ୍ଚିମ ବଙ୍ଗ ଆଇ. ଏନ୍. ଏ. ସଂଘ ପ୍ରଭୃତି ଅନୁଷ୍ଠାନମାନଙ୍କରେ ନିଜକୁ ସାମିଲ କରିଥିଲେ । ସେ ଜଣେ ଭଲ ଗୀତ ଲେଖକ । ତାଙ୍କ ରଚିତ ବୌଦ୍ଧ ମେଳା ଓ ଉପଯୋଗୀ ସଙ୍ଗୀତ ମାଳା ପ୍ରକାଶ ପାଇଛି । ସେ ପରବର୍ତ୍ତୀ ସାଂସ୍କୃତିକ ଏବଂ ସାମାଜିକ ଅନୁଷ୍ଠାନମାନଙ୍କରେ ସହଯୋଗ କରି

କାର୍ଯ୍ୟ କରୁଛନ୍ତି । ସେ ଗଞ୍ଜାମ ଜିଲ୍ଲା ସ୍ୱାଧୀନତା ସଂଗ୍ରାମୀ ସଂଘର ଉପସଭାପତି ହୋଇଛନ୍ତି ।

## ପୀତବାସ ପାଣିଗ୍ରାହୀ



ଗଞ୍ଜାମ ଜିଲ୍ଲା କବିସୂର୍ଯ୍ୟ ନଗର ନିକଟସ୍ଥ ଷଣ୍ଢମରା ଗ୍ରାମରେ ୧୯୨୧ ମସିହା ଜାନୁୟାରୀ ୨୯ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ମାର୍କଣ୍ଡ ପାଣିଗ୍ରାହୀ ମାତାଙ୍କ ନାମ ଯଶୋଦା ଓ ପତ୍ନୀ ଶ୍ରୀମତୀ କାଞ୍ଚନ ପାଣିଗ୍ରାହୀ । ସେ ନିଜ ଗ୍ରାମରେ ସ୍କୁଲ ଶିକ୍ଷା ସମାପ୍ତ ପରେ ୧୯୩୯ ମସିହାରେ ବ୍ରହ୍ମଦେଶକୁ ଯାଇଥିଲେ । ସେ ବ୍ରହ୍ମଦେଶର ମାଙ୍ଗ୍ରିଆଁ ଓଡ଼ିଆ ବହୁଳ ଅଞ୍ଚଳରେ ରନ୍ଧ ତକିଆ, ଜ୍ୟୋତିଷ ବିଦ୍ୟା ଓ କର୍ମ କର୍ମାଣୀ କରି ଜୀବିକା ନିର୍ବାହ କରୁଥିଲେ । ସେ ତଳ ବର୍ମାକୁ ଆସି ଓଡ଼ିଆ ସଂଘ ସମିତିରେ ଯୋଗଦେଇଥିଲେ । ସେ ରାସ ବିହାରୀ ବୋଷଙ୍କ ପ୍ରତିଷ୍ଠିତ ଆଜାଦ ହିନ୍ଦ ସଂଘରେ ଯୋଗ ଦେଇଥିଲେ । ୧୯୪୩ ମସିହାରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଦ୍ୱାରା ପ୍ରତିଷ୍ଠିତ ଅସ୍ଥାୟୀ ଆଜାଦ ହିନ୍ଦ ସରକାରରେ ପ୍ରଚାର ବିଭାଗ ଦାୟିତ୍ୱ ବହନ କରିଥିଲେ । ସେ ତାଲିମ ପାଇବା ପରେ ମେଡ଼ିକାଲ ଗ୍ରୁପରେ ଯୁଦ୍ଧ କ୍ଷେତ୍ରକୁ ଯାଇ କାର୍ଯ୍ୟ କରୁଥିଲେ । ସେ ରେଙ୍ଗୁନ କେନ୍ଦ୍ର ଜେଲରେ ଆଠ ମାସ ଯୁଦ୍ଧବନ୍ଦୀ ଭାବେ ରହି ମୁକ୍ତ ହୋଇଥିଲେ । ସେ ବହୁ ସାଂସ୍କୃତିକ ଅନୁଷ୍ଠାନ ସହିତ ସଂପୃକ୍ତ ଥିଲେ । ସେ ୧୯୮୧ ମସିହା ଫେବୃୟାରୀ ୨୨ ତାରିଖ ଦିନ ଭୁବନେଶ୍ୱର ଠାରେ ଇହଲୀଳା ସମ୍ବରଣ କଲେ । ସେ ବ୍ରଞ୍ଜନକାଟ୍ ନେତାଜୀ ମାର୍ଗଠାରେ ଅବସ୍ଥାନ କରୁଥିଲେ ।

## ଶ୍ରୀ ଉତ୍ସବାନନ୍ଦ ପ୍ରଧାନ

ଗଞ୍ଜାମ ଜିଲ୍ଲା ପିତଳ ନିକଟ ପାକିଡ଼ି ଗ୍ରାମରେ ୧୯୨୭ ମସିହା ନଭେମ୍ବର ୧୯ ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ ତାଙ୍କ ପିତାଙ୍କ ନାମ ୰ ଶ୍ରୀଧର ପ୍ରଧାନ, ମାତାଙ୍କ ନାମ ଚମ୍ପା ଦେଇ, ପତ୍ନୀ ଶ୍ରୀମତୀ କୁମୁଦିନୀ ପ୍ରଧାନ । ସେ ନିଜ ଗ୍ରାମରେ ବାଲ୍ୟଶିକ୍ଷା ସମାପ୍ତ କରି ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ୧୯୩୭ରେ ବ୍ରହ୍ମଦେଶକୁ ଯାଇ ତାଙ୍କ ପିତାଙ୍କ ସହିତ ତଳ ବର୍ମାର ବୋଗଲେ ଅଞ୍ଚଳରେ

ନିବାସ କରୁଥିଲେ । ସେ ଓଡ଼ିଆ ଯୁବ ସମିତିର ଜଣେ ସକ୍ରିୟ ସଦସ୍ୟ ହୋଇ-ଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ବିପ୍ଳବୀ ରାସବିହାରୀ ବୋଷଙ୍କ ଦ୍ୱାରା ଗଠିତ ଆଜାଦ ହିନ୍ଦ ଫଉଜରେ ଯୋଗଦେଇ ସ୍ୱେଚ୍ଛାସେବକ ଭାବେ କାର୍ଯ୍ୟ କରିଥିଲେ ।



୧୯୪୩ ମସିହାରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଦ୍ୱାରା ପ୍ରତିଷ୍ଠିତ "ଅସ୍ଥାୟୀ ଆଜାଦହିନ୍ଦ—ସରକାର"ଙ୍କର ପ୍ରଚାର ବିଭାଗ ଓ ପରେ ନେତାଜୀଙ୍କ ସ୍ୱତନ୍ତ୍ର ତାଲିମ ସଂସ୍ଥା S. T. I.କୁ ବଦଳିହୋଇ ନିଜର ରଣକୌଶଳ ଓ ପାରଦର୍ଶିତା ଲାଭକରି Special Group Leader ପଦକୁ ଉନ୍ନୀତ ହୋଇଥିଲେ । ୧୯୪୫ ମସିହାରେ ବ୍ରିଟିଶ ସରକାରଙ୍କ ଦ୍ୱାରା ରେଙ୍ଗୁନ କେନ୍ଦ୍ର ଜେଲରେ ଆଠମାସ ଯୁଦ୍ଧବନ୍ଦୀ ହୋଇ ରହିଥିଲେ । ସେହି ବର୍ଷ ଡ଼ିସେମ୍ବର ମାସ ଶେଷରେ ସେ ଜେଲରୁ ମୁକ୍ତ ହୋଇ ଆସି ବନ୍ଦଥିବା ସାପ୍ତାହିକ 'ପ୍ରଭାତ' ପତ୍ରିକାର ପୁନଃ ପ୍ରକାଶନ ଭାର ନେଇ କାର୍ଯ୍ୟ କରିଥିଲେ । ତାପରେ ସେ ୧୯୪୬ ମସିହା ଏପ୍ରିଲ ମାସରେ ସମୁଦ୍ର ପଥରେ କଲିକତା ଦେଇ ଓଡ଼ିଶାକୁ ଆସି ବିଭିନ୍ନ ସଭାସମିତିରେ ସମ୍ବର୍ଦ୍ଧିତ ହୋଇଥିଲେ । ୧୯୪୭ ମସିହାରେ ବିଶ୍ୱବନ୍ଦ୍ୟ ବାପୁଜୀଙ୍କ ଆହ୍ୱାନ କ୍ରମେ ହିନ୍ଦୁ-ମୁସଲମାନ ସଦଭାବ ପ୍ରତିଷ୍ଠା ପାଇଁ ଆଇ·ଏନ୍·ଏ. ଶାନ୍ତିସେନା ସହ ପୂର୍ବବଙ୍ଗରେ 'ନୂଆଖାଲି' ଠାରେ ମହାତ୍ମା ଗାନ୍ଧୀଙ୍କ ସାନିଧ୍ୟରେ ୩ମାସ କାର୍ଯ୍ୟ କରିଥିଲେ । ତାପରେ ସେ ସ୍ୱେଚ୍ଛାସେବକ ଭାବେ ସେଠାରୁ ପଞ୍ଜାବ ଯାଇଥିଲେ । ତତ୍‌କାଳୀନ ପଞ୍ଜାବର ଲିଗ ସରକାର ତାଙ୍କୁ 'ଖାକିଗୁଣ୍ଡା' ନାମରେ ଅଭିହିତ କରି ଲାହୋର ଜେଲରେ ୪ ମାସ ଆବଦ୍ଧ କରି ରଖିଥିଲେ । ୧୯୪୭ ଅଗଷ୍ଟ ମାସରେ ସେ ସେଠାରୁ ମୁକ୍ତ ହେଲେ। ସେ ପଶ୍ଚିମ ବଙ୍ଗ ଆଇ. ଏନ୍. ଏ. ଏସୋସିଏସନ କାର୍ଯ୍ୟକାରୀ କମିଟିର ସଦସ୍ୟଥିଲେ ଓ କଲିକତା ପ୍ରବାସୀ ଓଡ଼ିଆ ଆନ୍ଦୋଳନରେ ସଂପୃକ୍ତ ରହି ବିଭିନ୍ନ ସାମାଜିକ କାର୍ଯ୍ୟ କରିଥିଲେ । ୧୯୫୪ ମସିହାରେ କେନ୍ଦ୍ର ସରକାରଙ୍କ ଶିକ୍ଷା ବିଭାଗ ଅଧୀନରେ ସଂଗଠିତ ରାଷ୍ଟ୍ରୀୟ ଅନୁଶାସନ ଯୋଜନାରେ ତାଲିମ ପ୍ରାପ୍ତ ହୋଇ ଜଣେ ଇନଷ୍ଟ୍ରାକ୍ଟର ଭାବେ ଭାରତର ବିଭିନ୍ନ ପ୍ରାନ୍ତରେ କାର୍ଯ୍ୟ କରିଥିଲେ । ପରବର୍ତ୍ତିକାଳେ ୧୯୬୨ ମସିହାଠାରୁ କେନ୍ଦ୍ର ଅଧୀନରୁ ଆସି ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗରେ ଶାରୀରିକ ବ୍ୟାୟାମ ଶିକ୍ଷକଭାବେ କାର୍ଯ୍ୟ କରିଥିଲେ । ସେ ୧୯୮୫ ନଭେମ୍ବର ମାସ ୩୦ ତାରିଖରେ କାର୍ଯ୍ୟରୁ ଅବସର

ଗ୍ରହଣ କରି ସ୍ବର୍ଣ୍ଣିଲବାବୁ ନେତାଜୀ ମାର୍ଗଠାରେ ଅବସ୍ଥାନ କରୁଛନ୍ତି । ବର୍ତ୍ତମାନ ସେ ଓଡ଼ିଶା ଆଜାଦ ହିନ୍ଦ ଫୌଜ ସଂଘର ସାଧାରଣ ସମ୍ପାଦକ ଭାବେ କାର୍ଯ୍ୟ କରୁଛନ୍ତି ।

## ଶ୍ରୀ ଦାମୋଦର ପଣ୍ଡା



ଗଞ୍ଜାମ ଜିଲ୍ଲା ଧରାକୋଟ ଅନ୍ତର୍ଗତ ସୁନାପଲ୍ଲୀ ଗ୍ରାମରେ ୧୯୨୨ ମସିହାରେ ସେ ଜନ୍ମଗ୍ରହଣ କରିଥିଲେ । ସେ କୋଡ଼ାଲା ହାଇସ୍କୁଲ ଆସ୍ଥାଠାରେ ମାଟ୍ରିକ ପର୍ଯ୍ୟନ୍ତ ଅଧ୍ୟୟନ କରିଥିଲେ । ଛାତ୍ରାବସ୍ଥାରେ ସେ ସ୍ଵାଧୀନତା ଆନ୍ଦୋଳନ ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲେ । ୧୯୪୦ ମସିହାରେ ସରକାରଙ୍କ ସୈନ୍ୟ ବିଭାଗରେ ଯୋଗ-ଦେଇ ସୁଦୂର ମାଳୟ ଦେଶରେ ଅବ-ସ୍ଥାପିତ ହୋଇଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ଜାପାନୀ ସୈନ୍ୟ ମାଳୟ ଆକ୍ରମଣ ଓ ବିଜୟ କଲାପରେ ଓ ସିଙ୍ଗାପୁର ପତନ ପରେ ସେଠାରେ ଜାପାନୀ ସେନା ନିକଟରେ ଆତ୍ମସମର୍ପଣ କରିଥିଲେ । ଯୁଦ୍ଧବନ୍ଦୀ ଥିବା ଅବସ୍ଥାରେ ୧୯୪୨ ମସିହା ଫେବୃୟାରୀ ମାସରେ ବିପ୍ଳବୀ ରାସବିହାରୀ ବୋଷଙ୍କ ଆବେଗପୂର୍ଣ୍ଣ ଭାଷଣରେ ଅନୁପ୍ରାଣିତ ହୋଇ ବ୍ରିଟିଶ ସୈନ୍ୟ ବିପକ୍ଷରେ ଯୁଦ୍ଧ କରିବାପାଇଁ ଆଜାଦହିନ୍ଦ ଫୌଜରେ ଯୋଗଦେଇଥିଲେ । ବିଟିଶ ବିରୁଦ୍ଧରେ ସାମରିକ ଅଭିଯାନରେ ବାହାଦୁର ଗ୍ରୁପ୍‌ର ଜଣେ ସୈନ୍ୟ ରୂପେ ଯୁଦ୍ଧକରି ମଣିପୁର ଗୌରଙ୍ଗ ଗ୍ରାମ ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ । ତା'ପରେ ପରାଜୟ ଆରମ୍ଭ ହେବାରୁ ପଛକୁ ହଟିଆସି ରେଙ୍ଗୁନଠାରେ ଇଂରେଜ ସୈନ୍ୟଙ୍କ ନିକଟରେ ଆତ୍ମସମର୍ପଣ କରି ପୁନର୍ବାର ଯୁଦ୍ଧବନ୍ଦୀ ହେଲେ ଏବଂ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଭାରତକୁ ଆସି ମୁଲତାନ (ବର୍ତ୍ତମାନ ପାକିସ୍ଥାନ) ଠାରେ ପ୍ରାପ୍ତ ଏକ ବର୍ଷ କାରାବାସ ଭୋଗ କରିବା ପରେ ମୁକ୍ତିପାଇ ସ୍ୱଗ୍ରାମକୁ ଫେରି ଆସିଥିଲେ ।

## ଶ୍ରୀ ନାରାୟଣ ପ୍ରଷ୍ଟି

ଗଞ୍ଜାମ ଜିଲ୍ଲା ପିତଳ ନିକଟ ବ୍ରାହ୍ମଣଗ୍ରାମ ଗ୍ରାମରେ ୧୯୧୩ ନଭେମ୍ବର ମାସ ୫ ତାରିଖରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ

୰ କୈବଲ୍ୟ ପୃଷ୍ଟି, ମାତାଙ୍କ ନାମ ଦୁଖି ଓ ପତ୍ନୀଙ୍କ ନାମ ଗୁରୁ । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ କୃଷି କାର୍ଯ୍ୟକରି ଜୀବିକା ଅର୍ଜନ କରୁଥିଲେ ।



୧୯୪୩ ମସିହାରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ପ୍ରତିଷ୍ଠିତ ଆଜାଦହିନ୍ଦ ଫୌଜରେ ଯୋଗଦେଇ ବାହାଦୁର ଗ୍ରୁପ୍ ସମର ଶିକ୍ଷା କେନ୍ଦ୍ରରେ ତାଲିମ ପାଇ ବର୍ମାର ପୋପାପାହାଡ଼ ଯୁଦ୍ଧ କ୍ଷେତ୍ରରେ ସଂଗ୍ରାମରତ ଥିଲେ । ୧୯୪୫ ମସିହା ଏପ୍ରିଲ୍ ମାସରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ୍ ହୋଇ ରେଙ୍ଗୁନ ଇନ୍‌ସିନ୍ ଜେଲରେ ଦୁଇମାସ ଜେଲ ଭୋଗିବାପରେ କେନ୍ଦ୍ର ଜେଲକୁ ସ୍ଥାନାନ୍ତରିତ ହୋଇଥିଲେ । ସେଠାରେ ପ୍ରାୟ ୭ ମାସ ଜେଲଦଣ୍ଡ ଭୋଗିବା ପରେ ମୁକ୍ତପାଇ ସ୍ୱଦେଶକୁ ଫେରି ଆସିଲେ । ବର୍ତ୍ତମାନ କୃଷିକର୍ମ କରି ଜୀବିକା ନିର୍ବାହ କରୁଛନ୍ତି ।

## ଶ୍ରୀ ବୃନ୍ଦାବନ ପଣ୍ଡା



ଗଞ୍ଜାମ ଜିଲ୍ଲା ଜଗନ୍ନାଥ ପ୍ରସାଦ ନିକଟ ଗୁମଣ୍ଡା ଗ୍ରାମରେ ୧୯୧୦ ମସିହା ନଭେମ୍ବର ମାସ ୩ ତାରିଖରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ରାମଚନ୍ଦ୍ର ପଣ୍ଡା ଓ ମାତାଙ୍କ ନାମ ସାବିତ୍ରୀ । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ ନିଜର ଜୀବିକା ଅର୍ଜନ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ସଭା ସମିତିରେ ମେମ୍ବର ହୋଇ ଗାନ୍ଧୀଜୀଙ୍କର ସ୍ୱରାଜ୍ୟ ଆନ୍ଦୋଳନ ବାର୍ତ୍ତା ପ୍ରଚାର କରୁଥିଲେ । ସେ ଜଣେ ବ୍ରହ୍ମଚାରୀ ତଥା ବୈଷ୍ଣବ ଧର୍ମାବଲମ୍ବୀ ଥିବାରୁ ବହୁ ଶିଷ୍ୟମାନଙ୍କ ମେଳରେ ରହି ମଠବାଡ଼ି ପ୍ରତିଷ୍ଠା କରିଥିଲେ । ୧୯୪୩ ମସିହାରେ ଆଜାଦ ହିନ୍ଦ୍ ସରକାରଙ୍କୁ ସମସ୍ତ ମଠବାଡ଼ି ସମ୍ପତ୍ତି ଦାନ କରି ଫୌଜରେ ଯୋଗ ଦେଇଥିଲେ । ଚୋଣାଳ ସମର ଶିକ୍ଷା କେନ୍ଦ୍ରରେ ଶିକ୍ଷା ପାଇବା ପରେ ମେଡ଼ିକେଲ ଗ୍ରୁପ୍‌ରେ ସିପାହୀ ଭାବରେ ଯୁଦ୍ଧ କ୍ଷେତ୍ରକୁ ଯାଇ

କାର୍ଯ୍ୟ କରୁଥିଲେ । ୧୯୪୫ ମସିହାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ଭାରତର ଚଟ୍ଟଗ୍ରାମ ଓ ପରେ ବଙ୍ଗଳା ପ୍ରଦେଶର ଝିକର ଗାଛାଆ ଓ ନୀଳଗଞ୍ଜର ନଜରବନ୍ଦୀ କ୍ୟାମ୍ପ ଜେଲରେ ରହି ମୁକ୍ତି ପାଇ ଘରକୁ ଫେରିଥିଲେ । ବର୍ତ୍ତମାନ ସେ ନିଜ ଗ୍ରାମରେ ଗୋଟିଏ ମଠ ସ୍ଥାପନ କରି ଆଧ୍ୟାତ୍ମିକ ଜୀବନ ଯାପନ କରୁଛନ୍ତି ।

## ଶ୍ରୀ ସୋମନାଥ ପାଣିଗ୍ରାହୀ



ଗଞ୍ଜାମ ଜିଲ୍ଲା ବାରପଲ ନିକଟ ତଙ୍କଣ ପଲ୍ଲୀ ଗ୍ରାମରେ ୧୯୨୪ ମସିହା ଅକ୍ଟୋବର ମାସ ୧୫ ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ଦାମୋଦର ପାଣିଗ୍ରାହୀ, ମାତାଙ୍କ ନାମ ମ ଳଣ ଓ ପତ୍ନୀଙ୍କ ନାମ ଶ୍ରୀମତୀ ସୁବାସିନୀ । ୧୯୩୮ ମସିହାରେ ସେ ବ୍ରହ୍ମଦେଶକୁ ଯାଇ ଇରାବାଡ଼ି ଜାହାଜ କମ୍ପାନୀରେ କାମ କରୁଥିଲେ । ୧୯୪୨ ମସିହାରେ ଯେତେବେଳେ ସୁଭାଷବାବୁ ଜାତୀୟ ଆଜାଦହିନ୍ଦ ସଙ୍ଘ ଗଠନ କଲେ, ସେତେବେଳେ ସେ ସମିତିର ସକ୍ରିୟ ସଭ୍ୟରେ ଯୋଗ ଦେଲେ । ସେ ବନ୍ଧୁକଧାରୀ ପ୍ରଶିକ୍ଷଣ ପୁନାରେ ତାଲିମ ପାଇବାପରେ ନେତାଜୀଙ୍କର ସ୍ପେଶିଆଲ ତାଲିମ କେନ୍ଦ୍ର (S.T.I. କୁ ବଦଳି ହୋଇ ଯାଇଥିଲେ । ସେ ବିଭିନ୍ନ ପ୍ରକାର ଅସ୍ତ୍ରଶସ୍ତ୍ର ଟ୍ରେନିଂ ପାଇ ପାରଦର୍ଶିତା ଲାଭ କରିଥିଲେ । ଆଜାଦହିନ୍ଦ ଫୌଜ ଆତ୍ମସମର୍ପଣ କଲାପରେ ବ୍ରିଟିଶ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ଦୀର୍ଘ ଆଠମାସ ଯୁଦ୍ଧବନ୍ଦୀଭାବେ ରହିବାପରେ ୧୯୪୬ ମସିହା ଏପ୍ରିଲ ମାସରେ ସ୍ୱଦେଶକୁ ଫେରି ଥିଲେ । ସେ ରେଲୱେରେ କଣ୍ଟ୍ରାକ୍ଟର ସର୍ଭିସ କରିବାପରେ ଅବସର ନେଇ ବର୍ତ୍ତମାନ ନିଜ ଗ୍ରାମରେ ରହୁଛନ୍ତି ।

## ଶ୍ରୀ ମଦନ ମୋହନ ତ୍ରିପାଠୀ

ଗଞ୍ଜାମ ଜିଲ୍ଲା ଜରଡ ଗ୍ରାମରେ ୧୯୨୦ ମସିହା ଜୁଲାଇ ମାସ ୧୧ ତାରିଖରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ବୃନ୍ଦାବନ ତ୍ରିପାଠୀ, ମାତାଙ୍କ ନାମ ଶ୍ରଦ୍ଧାଦେବୀ ଓ ପତ୍ନୀଙ୍କ ନାମ ଶ୍ରୀମତୀ ତାରାମଣି ତ୍ରିପାଠୀ । ସେ

ଫଷ୍ଟରେ ମଧ୍ୟମା ପାସ୍ କରି ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ ଓଡ଼ିଆ



ବହୁଳ ଅଞ୍ଚଳରେ ସ୍ୱେଚ୍ଛାସେବକ କାର୍ଯ୍ୟକରି ଜୀବିକାନିର୍ବାହ କରୁଥିଲେ । ସେ ଓଡ଼ିଆ ସଂଘ ସମିତିର ସକ୍ରିୟ ସଭ୍ୟଥିଲେ । ୧୯୪୩ ମସିହାରେ ନେତାଜୀଙ୍କ ଆଜାଦହିନ୍ଦ ଫୌଜର ଗୋରିଲା ସମର ଶିକ୍ଷା କ୍ୟାମ୍ପରେ ତାଲିମ ପାଇବାପରେ ୭ ନମ୍ବର ଡକ୍ଟର ଶାଖାରେ ନର୍ସିଙ୍ଗ ସିପାହୀ ଭାବରେ ଯୁଦ୍ଧ କ୍ଷେତ୍ରକୁ ଯାଇ କାର୍ଯ୍ୟ କରୁଥିବା ଅବସ୍ଥାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ଭାରତକୁ ଆସି ବଙ୍ଗ ପ୍ରଦେଶର ଝିକର ଗଛିଆ ଓ ନୀଳଗଞ୍ଜ ନଜର ବନ୍ଦୀ କ୍ୟାମ୍ପ ଜେଲରେ ୯ ମାସ ଜେଲଯାତନା ଭୋଗ କରି ଘରକୁ ଫେରିଥିଲେ । ବର୍ତ୍ତମାନ ନିଜ ଗ୍ରାମରେ ରହି ସାମାଜିକ ଭାବେ ସେ ସମାଜ ସେବା କରୁଛନ୍ତି ।

## ଶ୍ରୀବସ୍ତ୍ର ପାଣ୍ଡ



ଗଞ୍ଜାମ ଜିଲ୍ଲା ସେରଗଡ଼ ନିକଟ ତାକରଡ଼ାଠାରେ ୧୯୧୯ ମସିହା ମାର୍ଚ୍ଚମାସ ୭ ତାରିଖରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ଗୁରୁ ପାଣ୍ଡ, ମାତାଙ୍କ ନାମ ସାବିତ୍ରୀ ଓ ପତ୍ନୀଙ୍କ ନାମ ଶ୍ରୀମତୀ ରହାସ । ସେ ୧୯୩୯ ମସିହାରେ ବ୍ରହ୍ମଦେଶକୁ ଯାଇ କୃଷିକାର୍ଯ୍ୟ କରି ଜୀବିକା ଅର୍ଜନ କରୁଥିଲେ । ୧୯୪୩ ମସିହାରେ ଆଜାଦ ହିନ୍ଦ ଫୌଜରେ ଯୋଗଦେଇ ନେତାଜୀଙ୍କ S. T. I. କ୍ୟାମ୍ପରେ ଯୋଗଦେଇ ତାଲିମ ପାଇବାପରେ ବହୁ ସୈନ୍ୟବାହିନୀ କାର୍ଯ୍ୟରେ ଲିପ୍ତଥିଲେ । ୧୯୪୫ ମସିହାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ବନ୍ଦୀହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ପ୍ରାୟ ଏକବର୍ଷ ଜେଲଦଣ୍ଡ ଭୋଗିବାପରେ ମୁକ୍ତି ପାଇ ଦେଶକୁ ଆସିଥିଲେ । ପୁଣି ସ୍ୱଦେଶ ଭାରତ ଆନ୍ଦୋଳନରେ ଯୋଗ ଦେଇ ଜେଲ ଦଣ୍ଡ ମଧ୍ୟ ଭୋଗ କରିଥିଲେ । ବର୍ତ୍ତମାନ ନିଜ ଗ୍ରାମରେ ରହି ସେ କୃଷି କର୍ମ କରନ୍ତି ।

## ଶ୍ରୀ କିଶୋର ଚନ୍ଦ୍ର ମିଶ୍ର



ଗଞ୍ଜାମ ଜିଲ୍ଲା କବିସୂର୍ଯ୍ୟନଗର ଖାଣ୍ଡୀ ମଙ୍ଗଳପୁର ଶାସନରେ ୧୯୨୦ ମସିହା ଜୁଲାଇ ମାସ ୫ ତାରିଖରେ ସେ ଜନ୍ମଗ୍ରହଣ କରି-ଥିଲେ । ତାଙ୍କ ପିତାଙ୍କ ନାମ ୰ ଗୋବିନ୍ଦ ମିଶ୍ର ଓ ମାତାଙ୍କ ନାମ ଲକ୍ଷ୍ମୀ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ସେ ବ୍ରହ୍ମଦେଶକୁ ଯାଇ ଓଡ଼ିଆ ବନ୍ଦର ଅଞ୍ଚଳରେ କୁଲିର ଜୀବିକା ଅର୍ଜନ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ ଫୌଜରେ ଯୋଗ ଦେଇ ତାଲିମ ପାଇବା ପରେ ପଶ୍ଚିମ ବାହିନୀରେ ଯୁଦ୍ଧ କ୍ଷେତ୍ରକୁ ଯାଇ ଯୁଦ୍ଧ କରୁଥିଲେ । ଯୁଦ୍ଧ ବନ୍ଦ ହେବାପରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ଯୁଦ୍ଧବନ୍ଦୀଭାବେ ସାତମାସ ଜେଲଯାତନା ଭୋଗିବାପରେ ମୁକ୍ତିପାଇ ସ୍ୱଦେଶକୁ ଫେରିଥିଲେ । ବର୍ତ୍ତମାନ ସେ ନିଜ ଗ୍ରାମରେ ରହୁଛନ୍ତି ।

## ଶ୍ରୀ କାଳୁପାଣି ପ୍ରଧାନ



ଗଞ୍ଜାମ ଜିଲ୍ଲା କବିସୂର୍ଯ୍ୟନଗର ନିକଟ ବେଣ୍ଟୁଗଣ ଗ୍ରାମରେ ୧୯୨୨ ମସିହା ଡିସେମ୍ବର ମାସରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ଜଗନ୍ନାଥ ପ୍ରଧାନ ଓ ମାତାଙ୍କ ନାମ ଚମ୍ପା । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ କୃଷି ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ ଫୌଜର ଫିଲ୍ଡ ପ୍ରପଗଣ୍ଡା ୟୁନିଟ୍‌ରେ ନିଯୁକ୍ତ ହୋଇ ଶିକ୍ଷା ନେବାପରେ ସିପାହି ଭାବରେ ଯୁଦ୍ଧକ୍ଷେତ୍ରକୁ ଯାଇ କାର୍ଯ୍ୟ କରୁଥିଲେ । ଯୁଦ୍ଧ ବିରତି ଘୋଷଣା ହେବାପରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ୧୯୪୫ ମଇ ମାସଠାରୁ ଡିସେମ୍ବର ମାସ

ଶେଷ ପର୍ଯ୍ୟନ୍ତ ବନ୍ଦୀ ହୋଇ ଯୁଦ୍ଧବାପରେ ମୁକ୍ତ ହୋଇ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ବର୍ମାରୁ ଫେରିବାପରେ ପଶ୍ଚିମବଙ୍ଗ କୋଲିଆରି ଅଂଚଳରେ ଗୋଟିଏ ଶ୍ରମିକ ସଂଗଠନ କରି ସେ ତାହାର ସାଧାରଣ ସମ୍ପାଦକ ହୋଇଥିଲେ । ସେ ନିଜ ଗ୍ରାମରେ ବିଭିନ୍ନ ଅନୁଷ୍ଠାନ ସହିତ ସଂପୃକ୍ତ ରହି ସେଗୁଡ଼ିକର ତତ୍ତ୍ୱାବଧାନ ଓ ଉନ୍ନତିର ଚେଷ୍ଟାରେ ଲାଗି ପଡ଼ିଛନ୍ତି ।

## ଶ୍ରୀ ହାଡ଼ୁବନ୍ଧୁ ମହାପାତ୍ର



ଗଞ୍ଜାମ ଜିଲ୍ଲା ବଣିଡ଼ା— ଗ୍ରାମରେ ୧୯୨୩ ମସିହା ଜୁନ୍ ମାସ ୧୫ ତାରିଖରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ସୋମନାଥ ମହାପାତ୍ର ଓ ମାତାଙ୍କ ନାମ ଶିନା । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ନେତାଜୀଙ୍କ ଗଠିତ ଆଜାଦ୍ ହିନ୍ଦ୍ ଫୌଜରେ ଯୋଗ ଦେଇ ତାଲିମ ପାଇବାପରେ ସପ୍ଲାଇ ବିଭାଗର ସିପାହୀ ରୂପେ ଯୁଦ୍ଧକ୍ଷେତ୍ରକୁ ଯାଇ କାର୍ଯ୍ୟ କରୁଥିଲେ । ଶେଷରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ବନ୍ଦୀହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ପ୍ରାୟ ଆଠମାସ ଯୁଦ୍ଧବନ୍ଦୀ ଭାବରେ ରହିବାପରେ ମୁକ୍ତିପାଇ ସ୍ୱଦେଶକୁ ଫେରିଥିଲେ । ବର୍ତ୍ତମାନ ସେ ଛୋଟ ବ୍ୟବସାୟ କରି ନିଜଗ୍ରାମରେ ରହି ଜୀବିକା ନିର୍ବାହ କରୁଛନ୍ତି ।

## ଶ୍ରୀ ହରିବନ୍ଧୁ କରଣ

ଗଞ୍ଜାମ ଜିଲ୍ଲା କବିସୂର୍ଯ୍ୟନଗର ନିକଟ ବଡ ଆଗୁଳ ଗ୍ରାମରେ ୧୯୨୨ ମସିହା ଏପ୍ରିଲ୍ ମାସ ୧୫ ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ବାଇନା କରଣ, ମାତାଙ୍କ ନାମ ମନ୍ଦୋଦରୀ ଓ ପତ୍ନୀଙ୍କ ନାମ ଶ୍ରୀମତୀ ପାଟ କରଣ । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ ଜୀବିକା ଅର୍ଜନ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ୍ ଫୌଜରେ ଯୋଗ ଦେଇ ଗୋଖାଲି ସହରର ଶିକ୍ଷା କେନ୍ଦ୍ରରେ ତାଲିମ୍ ନେବାପରେ ଗରିଲା ସିପାହୀ ରୂପେ

ବର୍ମାର ପୋପା ପାହାଡ ଯୁଦ୍ଧକ୍ଷେତ୍ରକୁ ଯାଇଥିଲେ । ପ୍ରତିକୂଳ ପରିସ୍ଥିତିରେ ପଛ ପଛକୁ ହଟି ଆସିବାବେଳେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ଭାରତର ଚଟ୍ଟ ଗ୍ରାମକୁ ଆସି ବଙ୍ଗ ପ୍ରଦେଶର ଝିକରଗାଛିଆ ଓ ମାଳଗଞ୍ଜ ବ୍ରିଟିଶ ନଜରବନ୍ଦୀ କ୍ୟାମ୍ପରେ ଆଠମାସ ଜେଲଦଣ୍ଡ ଭୋଗ କରିବାପରେ ମୁକ୍ତ ପାଇ ନିଜ ଦେଶକୁ ଫେରି ଆସିଲେ । ବର୍ତ୍ତମାନ ସେ ନିଜ ଗ୍ରାମରେ ରହୁଛନ୍ତି ।

## ଶ୍ରୀ ଅର୍ଜୁନ ଗୌଡ



ଗଞ୍ଜାମ ଜିଲ୍ଲା ଭଞ୍ଜନଗର ନିକଟ ବଡପଡା ଗ୍ରାମରେ ୧୯୨୦ ମସିହା ନଭେମ୍ବର ମାସ ପନ୍ଦର ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ଆନନ୍ଦ ଗୌଡ, ମାତାଙ୍କ ନାମ ମାନ ଦେଇ ଓ ପତ୍ନୀଙ୍କ ନାମ ଶ୍ରୀମତୀ ମାୟାଦେଈ । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ କୃଷି କର୍ମକରି ଜୀବିକା ନିର୍ବାହ କରୁଥିଲେ । ୧୯୪୩ ମସିହାରେ ଆଜାଦ୍‌-ହିନ୍ଦ୍ ଫୌଜର କାମ୍ମେସ୍ଥିତ ସମର ଶିକ୍ଷା କେନ୍ଦ୍ରରେ ତାଲିମ ନେବାପରେ ୫ନଂ ଗରିଲା ସିପାହୀକୁ ଉନ୍ନୀତ କରାଯାଇଥିଲା । ପୁଣି ତାଲିମ୍ ପାଇ ଜାପାନିଜ୍ ଇଣ୍ଟରପିଟର ଭାବରେ ଯୁଦ୍ଧ କ୍ଷେତ୍ରରେ କାର୍ଯ୍ୟ କରୁଥିଲେ । ୧୯୪୫ ମସିହାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫହୋଇ ଭାରତର ଚଟ୍ଟଗ୍ରାମ ବ୍ରିଟିଶ ମିଲଟାରୀ ନଜରବନ୍ଦୀ କ୍ୟାମ୍ପରେ ଏକମାସ ରହିବାପରେ ବଙ୍ଗ ପ୍ରଦେଶର ଝିକର ଗାଛିଆ ଓ ମାଳଗଞ୍ଜ ନଜର ବନ୍ଦୀ କ୍ୟାମ୍ପରେ ଆଠମାସ ଜେଲଦଣ୍ଡ ଭୋଗ କରିବାପରେ ମୁକ୍ତପାଇ ଘରକୁ ଫେରିଥିଲେ । ସେ ବର୍ତ୍ତମାନ ନିଜ ଗ୍ରାମରେ ରହୁଛନ୍ତି ।

## ଶ୍ରୀ ତ୍ରିବେନୀ ମହାପାତ୍ର

ଗଞ୍ଜାମ ଜିଲ୍ଲା କବିସୂର୍ଯ୍ୟନଗର ନିକଟ ଗୋଳମୁଣ୍ଡିଳା ଗ୍ରାମରେ ୧୯୨୦ ମସିହାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ବନମାଳି ମହାପାତ୍ର ମାତାଙ୍କ ନାମ ଜେମା ଓ ପତ୍ନୀଙ୍କ ନାମ ଶ୍ରୀମତୀ କମ୍ବୁ ମହାପାତ୍ର । ସେ ଦ୍ୱିତୀୟ, ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ



୧୯୪୩ ମସିହାରେ ଆଜାଦ-ହିନ୍ଦ୍ ଫୌଜରେ ଯୋଗଦେଇ ସମର ଶିକ୍ଷା ପାଇବା ପରେ ଯୁଦ୍ଧ କ୍ଷେତ୍ରକୁ ଯାଇ ସିପାହୀଭାବରେ କାର୍ଯ୍ୟ କରୁଥିଲେ । ୧୯୪୫ ମସିହାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ପ୍ରାୟ ଆଠମାସ ରହିବା ପରେ ମୁକ୍ତିପାଇ ସ୍ୱଦେଶକୁ ଫେରି ଆସିଥିଲେ । ବର୍ତ୍ତମାନ ସେ ନିଜ ଗ୍ରାମରେ ଅବସ୍ଥାନ କରୁଛନ୍ତି ।

## ଶ୍ରୀ ମୋହନ ପ୍ରଧାନ



ଗଞ୍ଜାମ ଜିଲ୍ଲା ପିତଳ ନିକଟ ପାଳଙ୍ଗ ଗ୍ରାମରେ ୧୯୨୦ ମସିହା ଜୁଲାଇ ମାସରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ଶ୍ରୀଧର ପ୍ରଧାନ, ମାତା ଚମ୍ପାଦେଇ ଓ ପତ୍ନୀ ଶ୍ରୀମତୀ ଲକ୍ଷ୍ମୀ ପ୍ରଧାନ । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ କୃଷିକର୍ମ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ୍ ଫୌଜ ଗଠନ ହେବାପରେ ଯୋଗଦାନ ସମର ଶିକ୍ଷା କେନ୍ଦ୍ରରେ ତାଲିମ ପାଇ ଯୁଦ୍ଧକ୍ଷେତ୍ରରେ ସିପାହୀ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୫ ମସିହାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ଆଠମାସ ଜେଲଦଣ୍ଡ ଭୋଗ କରିବା ପରେ ମୁକ୍ତ ପାଇ ସ୍ୱଦେଶକୁ ଫେରି ଆସିଥିଲେ । ବର୍ତ୍ତମାନ ସେ ନିଜ ଗ୍ରାମରେ ରହି କୃଷି କାର୍ଯ୍ୟ ଇତ୍ୟାଦି କରି ଚଳୁଛନ୍ତି ।

## ଶ୍ରୀ ବୀରଭଦ୍ର କରଣ

ଗଞ୍ଜାମ ଜିଲ୍ଲା ପିତଳ ସନ୍ତୋଷପୁର ସାହିରେ ୧୯୧୭ ମସିହା ଜୁନ ମାସ ୧୦ ତାରିଖରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ନାଭ କରଣ, ମାତାଙ୍କ ନାମ ପୂର୍ଣ୍ଣି ଓ ପତ୍ନୀଙ୍କ ନାମ ଶ୍ରୀମତୀ ସୋଲ କରଣ । ସେ ଦ୍ୱିତୀୟ



ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ କୃଷି ଶ୍ରମିକଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ୍ ଫୌଜରେ ଗୋଶାଳ ସମର ଶିକ୍ଷା କେନ୍ଦ୍ରରେ ଶିକ୍ଷାପାଇ ପୋପା ପାହାଡ଼ ଯୁଦ୍ଧ କ୍ଷେତ୍ରକୁ ଯାଇ କାର୍ଯ୍ୟ କରୁଥିଲେ । ୧୯୪୫ ମସିହାରେ ଯୁଦ୍ଧକ୍ଷେତ୍ରରୁ ଫେରି ଆସି ରେଙ୍ଗୁନଠାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ଆଠମାସ ଜେଲଦଣ୍ଡ ଭୋଗ କରିବା ପରେ ମୁକ୍ତି ପାଇ ସ୍ୱଦେଶକୁ ଫେରି ଆସିଥିଲେ । ସେ ବର୍ତ୍ତମାନ ନିଜ ଗ୍ରାମରେ ରହୁଛନ୍ତି ।

## ଶ୍ରୀ ବୁଦ୍ଧି ବେହେରା



ଗଞ୍ଜାମ ଜିଲ୍ଲା କବିସୂର୍ଯ୍ୟନଗର ଠାରେ ୧୯୨୨ ମସିହା ଫେବୃୟାରୀ ମାସରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ବାଇନ ବେହେରା, ମାତାଙ୍କ ନାମ ତୁଳସୀ ଓ ପତ୍ନୀ ଶ୍ରୀମତୀ ତୁଳସୀ ବେହେରା । ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ସେ ଓଡ଼ିଆ ସଂଘ ସମିତିର ସଭ୍ୟ ହୋଇଥିଲେ । ୧୯୪୩ ମସିହାରେ ନେତାଜୀଙ୍କ ଗଠିତ ଆଜାଦହିନ୍ଦ୍ ଫୌଜର ସମର ଶିକ୍ଷାକେନ୍ଦ୍ରରେ ତାଲିମ ପାଇ ସିପାହୀ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୫ ମସିହାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ଯୁଦ୍ଧବନ୍ଦୀ ଭାବରେ ରେଙ୍ଗୁନ କେନ୍ଦ୍ର ଜେଲରେ ୮ ମାସ ରହିବାପରେ ମୁକ୍ତି ପାଇ ସ୍ୱଦେଶକୁ ଫେରି ଆସିଥିଲେ । ବର୍ତ୍ତମାନ ସେ ନିଜ ଗ୍ରାମରେ ରହି କୃଷି କର୍ମ କରି ଜୀବିକା ଅର୍ଜନ କରନ୍ତି ।

## ଶ୍ରୀ ଆନନ୍ଦ ବିଶ୍ୱାଳ

ଗଞ୍ଜାମ ଜିଲ୍ଲା କବିସୂର୍ଯ୍ୟନଗର ଠାରେ ୧୯୨୦ ମସିହା ୨୯ ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ବାସୁ ବିଶ୍ୱାଳ, ମାତାଙ୍କ



ନାମ ହୋଡ଼ିପଣ ଓ ମାତାଙ୍କ ନାମ ଶ୍ରୀମତୀ ପାର୍ବତୀ ପ୍ରଧାନ । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ କୃଷି ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ୍ ଫୌଜରେ ଯୋଗଦେଇ ଗୋଶାଲା ସମରଶିକ୍ଷା କେନ୍ଦ୍ରରେ ତାଲିମ ପାଇ ମିଙ୍ଗଲାଡାଉଁ ୪ ନଂ ତୋପ ଖାନାରେ ସିପାହୀ ଭାବରେ କାର୍ଯ୍ୟ କରିଥିଲେ । ୧୯୪୫ ମଇ ମାସରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ପ୍ରାୟ ୮ ମାସ ଜେଲ ଭୋଗିବାପରେ ମୁକ୍ତିପାଇ ସ୍ୱଦେଶକୁ ଫେରି ଆସିଲେ । ବର୍ତ୍ତମାନ ସେ ଗ୍ରାମରେ ରହି ହାତ ତନ୍ତରେ ଲୁଗା ବୁଣିବା କାର୍ଯ୍ୟ କରୁଛନ୍ତି ।

## ଶ୍ରୀ ବାଞ୍ଛାନିଧି ପ୍ରଧାନ



ଗଞ୍ଜାମ ଜିଲ୍ଲା ଖଲ୍ଲିକୋଟ ନିକଟ ବଡାପଡା ଗ୍ରାମରେ ୧୯୨୪ ମସିହା ମାର୍ଚ୍ଚ ମାସ ୧୮ ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ କେଶବ ପ୍ରଧାନ । ସେ ୧୯୩୮ ମସିହାରେ ବ୍ରହ୍ମଦେଶକୁ ଯାଇ ଏକ ଧାନକଳରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ୍ ଫୌଜରେ ଯୋଗଦେଇ ଗୋଶାଲା ତାଲିମ ଶିକ୍ଷା କେନ୍ଦ୍ରରେ ତାଲିମ୍ ନେବାପରେ O.T.S. କୁ ବଦଳି ହେଲେ ଏବଂ ସେଠାରେ ସେ ନାୟକ ପଦବୀ ପାଇଥିଲେ । ୧୯୪୫ ମସିହା ମଇ ମାସରେ ସେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଯୁଦ୍ଧ କ୍ଷେତ୍ରରେ ବନ୍ଦୀ ହେଲେ । ରେଙ୍ଗୁନ କେନ୍ଦ୍ର ଜେଲରେ ପ୍ରାୟ ୧୦ ମାସ ରହି ମୁକ୍ତ ହେବାପରେ ସେ କିଛିଦିନ ବ୍ରହ୍ମଦେଶରେ ରହି ସ୍ୱଦେଶକୁ ଫେରି ଆସିଥିଲେ । ବର୍ତ୍ତମାନ ସେ ବ୍ରହ୍ମପୁରସ୍ଥ କମାପଲ୍ଲୀ ଠାରେ ରହି ନିଜର ଭରଣପୋଷଣ ନିମିତ୍ତ ପ୍ଲେଟକାଟର ବ୍ୟବସାୟ କରି ଚଳୁଛନ୍ତି ।

## ଶ୍ରୀ ନରସିଂହ ପାତ୍ରୀ



ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ସାରୁ ଗ୍ରାମରେ ୧୯୨୨ ମସିହା ୧୬ ତାରିଖରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ନଟବର ପାତ୍ରି, ମାତାଙ୍କ ନାମ ସେବତି ଓ ପତ୍ନୀଙ୍କ ନାମ ଶ୍ରୀମତି ତୁଳସୀ ପାତ୍ରୀ । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ ଫୌଜରେ ଯୋଗଦେଇ କାମ୍ବେ ସମରଶିକ୍ଷା କେନ୍ଦ୍ରରେ ତାଲିମ ପାଇବା ପରେ ବାହାଦୁର ଗ୍ରୁପ୍‌କୁ ଯାଇଥିଲେ । ତାପରେ ଯୁଦ୍ଧକ୍ଷେତ୍ରକୁ ଯାଇ ମେଜର ମିଶ୍ରାଙ୍କ ସାଥିରେ ଆରକାନ ଯୁଦ୍ଧ କ୍ଷେତ୍ରରୁ ଶତ୍ରୁ ସୈନ୍ୟଙ୍କୁ ରେଙ୍ଗୁନ ଧରି ନେଇଥିଲେ । ପୁଣି ଯୁଦ୍ଧକ୍ଷେତ୍ରକୁ ଯାଇ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ପ୍ରାୟ ୯ ମାସ ଜେଲ ଦଣ୍ଡ ଭୋଗ କରିବା ପରେ ମୁକ୍ତିପାଇ ସ୍ୱଦେଶକୁ ଫେରି ଆସିଥିଲେ । ବର୍ତ୍ତମାନ ସେ ନିଜର ପରିବାର ସହ ବ୍ରହ୍ମପୁରସ୍ଥ ପଞ୍ଚଦେଉଳସ୍ଥ ସାହିରେ ଜୀବନ କଟାଉଛନ୍ତି ।

## ଶ୍ରୀ ବୁଦ୍ଧି ନାୟକ



ଗଞ୍ଜାମ ଜିଲ୍ଲା ପୋଲସରା ବ୍ଲକ ଡେଙ୍ଗାପଦର ଗ୍ରାମରେ ୧୯୨୫ ମସିହା ଫେବୃୟାରୀ ମାସ ୨୦ ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ କୃଷ୍ଣ ନାୟକ, ମାତାଙ୍କ ନାମ ହାଡ଼ି ଓ ପତ୍ନୀଙ୍କ ନାମ ଶ୍ରୀମତି ଦ୍ରୌପଦୀ ନାୟକ । ସେ ୧୯୩୭ ମସିହାରେ ବ୍ରହ୍ମଦେଶକୁ ଯାଇ କୃଷି ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ ଫୌଜରେ ଯୋଗଦେଇ ଗୋଣାନ୍ନ ସମର ଶିକ୍ଷା କେନ୍ଦ୍ରରେ ତାଲିମ୍ ପାଇ ଇମ୍ଫାଲ ଯୁଦ୍ଧ

କ୍ଷେତ୍ରରେ କାର୍ଯ୍ୟ କରୁଥିଲେ । ସେ ସେଠାରୁ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ପ୍ରାୟ ଆଠମାସ ଜେଲଦଣ୍ଡ ଭୋଗ କରିବାପରେ ମୁକ୍ତି ପାଇ ସ୍ୱଦେଶକୁ ଫେରି ନିଜ ଗ୍ରାମରେ ରହୁଛନ୍ତି ।

## ଶ୍ରୀ ହରିକୃଷ୍ଣ ଚୌଧୁରୀ



ଗଞ୍ଜାମ ଜିଲ୍ଲା ବେଲଗୁଣ୍ଠା ଗ୍ରାମରେ ୧୯୨୩ ମସିହା ସେପ୍ଟେମ୍ବର ମାସରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ଦଣ୍ଡପାଣି ଚୌଧୁରୀ, ମାତାଙ୍କ ନାମ ସୁନା ଓ ପତ୍ନୀଙ୍କ ନାମ ଶ୍ରୀମତୀ ପଦ୍ମାବତୀ ଚୌଧୁରୀ । ସେ ୧୯୩୮ ମସିହାରେ ବ୍ରହ୍ମଦେଶକୁ ଯାଇ ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ ଫୌଜର ଗୋଲନ୍ଦାଜ ତାଲିମ କେନ୍ଦ୍ରରେ ଶିକ୍ଷା ପାଇ ନର୍ସିଂ ସିପାହୀ ରୂପେ ଯୁଦ୍ଧକ୍ଷେତ୍ରକୁ ଯାଇ କାର୍ଯ୍ୟ କରୁଥିଲେ । ଯୁଦ୍ଧକ୍ଷେତ୍ରରୁ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫହୋଇ ଭାରତକୁ ଆସି ଚଟ୍ଟଗ୍ରାମଠାରୁ ବଙ୍ଗଳାର ଝିକର ଗାଛିଆ ଓ ନୀଳଗଞ୍ଜ ଯୁଦ୍ଧବନ୍ଦୀ କ୍ୟାମ୍ପରେ ଆଠମାସ ଜେଲ ଦଣ୍ଡ ଭୋଗ କରିବାପରେ ମୁକ୍ତିପାଇ ଘରକୁ ଫେରି ବର୍ତ୍ତମାନ ଜି. ଉଦୟଗିରି ଠାରେ ଦାଆଁ ସେବା କରି ଜୀବିକା ନିର୍ବାହ କରୁଛନ୍ତି ।

## ଶ୍ରୀ ବନମାଳୀ ସେଠୀ

ଗଞ୍ଜାମ ଜିଲ୍ଲା ପୋଲସରା ନିକଟ ମଧୁପଲ୍ଲୀ ଗ୍ରାମରେ ୧୯୨୪ ମସିହା ଜନ୍ମ ମାସ ୧୨ ତାରିଖରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ଭାଗ୍ଯ ସେଠୀ, ମାତାଙ୍କ ନାମ ଗୁରି ସେଠୀ ଓ ପତ୍ନୀଙ୍କ ନାମ ଶ୍ରୀମତୀ ଚନ୍ଦ୍ରମା ସେଠୀ । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ କୃଷି ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ, ୧୯୪୩ ମସିହାରେ ନେତାଜୀଙ୍କ ପ୍ରତିଷ୍ଠିତ ଆଜାଦହିନ୍ଦ ଫୌଜରେ ଯୋଗ ଦେଇ ଗୋଲନ୍ଦାଜ ତାଲିମ କେନ୍ଦ୍ରରେ



ତାଲିମ ଗ୍ରହଣ କରି ବଡ଼ଗାର୍ଡ଼ ସିପାହୀ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୫ ମସିହାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ବନ୍ଦୀହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ପ୍ରାୟ ଏକବର୍ଷ ଜେଲଦଣ୍ଡ ଭୋଗ କରିବା ପରେ ମୁକ୍ତିପାଇ ସ୍ୱଦେଶକୁ ଫେରିଥିଲେ । ସେ ବର୍ତ୍ତମାନ କୃଷି ଶ୍ରମିକଭାବେ ନିଜ ଗ୍ରାମରେ ରହି କାଳାତିପାତ କରୁଛନ୍ତି ।

## ଶ୍ରୀ ବାଉରୀବନ୍ଧୁ ନନ୍ଦ



ଗଞ୍ଜାମ ଜିଲ୍ଲା ପୋଲସରା ନିକଟ ବୁଦ୍ଧିଘାଟି ଗୋପିନାଥପୁର ଶାସନରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ରାମଚନ୍ଦ୍ର ନନ୍ଦ, ମାତାଙ୍କ ନାମ ରାଧରାଣୀ ଓ ପତ୍ନୀଙ୍କ ନାମ ଶ୍ରୀମତୀ ସେବତୀ ନନ୍ଦ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ସେ ବ୍ରହ୍ମଦେଶକୁ ଯାଇ ନିଜର ଜୀବିକା ଅର୍ଜନ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ୍ ଫୌଜରେ ଯୋଗଦେଇ ଆଠମାସ ରେଙ୍ଗୁନ କେନ୍ଦ୍ର ଜେଲରେ ଜେଲଦଣ୍ଡ ଭୋଗ କରିବାପରେ ମୁକ୍ତି ପାଇ ସ୍ୱଦେଶକୁ ଫେରି ଆସିଥିଲେ ।

## ଶ୍ରୀ ରଙ୍କ ପ୍ରଧାନ



ଗଞ୍ଜାମ ଜିଲ୍ଲା କବିସୂର୍ଯ୍ୟ ନଗର ଠାରେ ୧୯୧୯ ମସିହା ଜୁନ ମାସ ୧୦ ତାରିଖରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ଲୋକନାଥ ପ୍ରଧାନ ଓ ମାତାଙ୍କ ନାମ ଚିନ୍ତା ପ୍ରଧାନ । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ ସେଠାରେ କୃଷିକାମ କରୁଥିଲେ । ୧୯୪୩ ମସିହା ଅଗଷ୍ଟ ମାସରେ ଆଜାଦହିନ୍ଦ ଫୌଜରେ ଯୋଗଦେଇ ଗୋଶାଳ ସମର ଶିକ୍ଷା କେନ୍ଦ୍ରରେ ତାଲିମ ପାଇ ଯୁଦ୍ଧକ୍ଷେତ୍ରକୁ ଯାଇ କାର୍ଯ୍ୟ କରୁଥିଲେ । ୧୯୪୫ ମସିହାରେ ବ୍ରିଟିଶ

ସେନାଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ପ୍ରାୟ ଆଠମାସ ଜେଲଦଣ୍ଡ ଭୋଗ କରିବା ପରେ ମୁକ୍ତି ପାଇ ସ୍ୱଦେଶକୁ ଫେରି ଆସିଥିଲେ । ବର୍ତ୍ତମାନ ସେ କୃଷିକର୍ମ କରି ନିଜ ଗ୍ରାମରେ ରହି ଜୀବିକା ନିର୍ବାହ କରୁଛନ୍ତି ।

## ଶ୍ରୀ କରାଡ଼ ଲଂଛମୂର୍ତ୍ତି ପାତ୍ର



ଗଞ୍ଜାମ ଜିଲ୍ଲା ବରସୂର୍ଯ୍ୟନଗର ଠାରେ ୧୯୧୮ ମସିହା ଏପ୍ରିଲ ୫ ତାରିଖରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ଭରତ ପାତ୍ର, ମାତାଙ୍କ ନାମ କୁନୁଆମ୍ମା ଓ ପତ୍ନୀଙ୍କ ନାମ ଶ୍ରୀମତୀ କେ· କାମରାଜୁ ପାତ୍ର । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ ନିଜର ଜୀବିକା ଅର୍ଜନ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ ଫୌଜରେ ଯୋଗଦେଇ ଗୋଶାଲ ସମର ଶିକ୍ଷା କେନ୍ଦ୍ରରେ ତାଲିମ୍ ପାଇବା ପରେ ବିଭିନ୍ନ ଯୁଦ୍ଧକ୍ଷେତ୍ରକୁ ଯାଇ ସିପାହୀ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୫ ମସିହାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ପ୍ରାୟ ଆଠମାସ ଜେଲଦଣ୍ଡ ଭୋଗ କରିବାପରେ ମୁକ୍ତିପାଇ ସ୍ୱଦେଶକୁ ଫେରି ଆସିଥିଲେ । ସେ ବର୍ତ୍ତମାନ ଭଞ୍ଜନଗର ନିକଟ ବୁଦୁଲ ଗ୍ରାମରେ ରହି ସାଧାରଣ ଘରେ କିରାଣି ଦୋକାନ କରି ନିଜର ଜୀବିକା ନିର୍ବାହ କରୁଛନ୍ତି ।

## ଶ୍ରୀ ମୁକୁନ୍ଦ ଗୌଡ



ଗଞ୍ଜାମ ଜିଲ୍ଲା ଖଲ୍ଲିକୋଟ ନିକଟ ଓଳଣ୍ଡ ଗ୍ରାମରେ ୧୯୨୩ ମସିହା ଅଗଷ୍ଟ ମାସ ୧୨ ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ କନ୍ଧ ଗୌଡ ଓ ମାତାଙ୍କ ନାମ ରେଖୀ । ସେ ୧୯୪୧ ମସିହାରେ ବ୍ରହ୍ମଦେଶକୁ ଯାଇ ସାଧାରଣ ବ୍ୟବସାୟ କରୁଥିଲେ । ୧୯୪୩ ମସିହାରେ ଆଜାଦ୍‌ହିନ୍ଦ୍ ଫୌଜରେ ଯୋଗଦେଇ ଫିଲ୍ଡ଼

ପ୍ରଚଣ୍ଡ ଯୁଦ୍ଧରେ ତାଲିମ ନେବାପରେ ମଯୁରାଗାଉଁ କ୍ୟାମ୍ପରେ ରହି କାର୍ଯ୍ୟ କରୁଥିଲେ । ୧୯୪୫ ମସିହାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ଆଠମାସ ରହିବାପରେ ସ୍ୱଦେଶକୁ ଫେରି ଆସିଥିଲେ ।

## ଶ୍ରୀ ଚିନ୍ତାମଣି ପାତ୍ର



ଗଞ୍ଜାମ ଜିଲ୍ଲା ଛତ୍ରପୁର ନଗର ନିକଟ ପଥର ଗ୍ରାମରେ ୧୯୨୨ ମସିହା ଅଗଷ୍ଟ ମାସ ୧୬ ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ଗୋବିନ୍ଦ ପାତ୍ର, ମାତାଙ୍କ ନାମ ଜାମୁଣା ଓ ପତ୍ନୀଙ୍କ ନାମ ଶ୍ରୀମତୀ କୌତୁକା ପାତ୍ର । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ ଫୌଜରେ ଯୋଗଦେଇ ଗୋଶାଲ୍ ସମର ଶିକ୍ଷାକେନ୍ଦ୍ରରେ ତାଲିମ ଗ୍ରହଣକରି ସିପାହୀଭାବରେ ଯୁଦ୍ଧକ୍ଷେତ୍ରରେ କାର୍ଯ୍ୟ କରୁଥିଲେ । ୧୯୪୫ ମସିହାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫହୋଇ ଭାରତକୁ ଆସି ବଙ୍ଗ ପ୍ରଦେଶର ନୀଳଗଞ୍ଜ ଓ ଝିକରଗାଛିଆ ଠାରେ ବ୍ରିଟିଶ ନଜରବନ୍ଦୀ କ୍ୟାମ୍ପରେ ଆଠମାସ ରହିବା ପରେ ମୁକ୍ତିପାଇ ସ୍ୱଦେଶକୁ ଫେରି ଆସିଥିଲେ । ସେହିଦିନ ଠାରୁ ସେ ନିଜ ଗ୍ରାମରେ ରହୁଛନ୍ତି ।

## ଶ୍ରୀ କୀର୍ତ୍ତନ ବିଷୋଇ



ଗଞ୍ଜାମ ଜିଲ୍ଲା ବୁଢ଼ାଆମ୍ବ ନିକଟ ଦେଓଗାଁରେ ୧୯୧୮ ମସିହା ସେପ୍ଟେମ୍ବର ମାସରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ହାଡ଼ି ବିଷୋଇ, ମାତାଙ୍କ ନାମ ବଣୀ ଓ ପତ୍ନୀଙ୍କ ନାମ ଶ୍ରୀମତୀ ରହସ ବିଷୋଇ । ସେ ୧୯୩୫ ମସିହାରେ ବ୍ରହ୍ମଦେଶକୁ ଯାଇ

ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ୍ ଫୌଜରେ ଯୋଗଦେଇ ଗୋଶାଲ୍ ସମର ଶିକ୍ଷା କେନ୍ଦ୍ରରେ ତାଲିମ ନେବାପରେ ଯୁଦ୍ଧକ୍ଷେତ୍ରକୁ ଯାଇ ଯୁଦ୍ଧ କରୁଥିଲେ । ୧୯୪୫ ମସିହାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ଛଅମାସ ରହିବାପରେ ମୁକ୍ତିପାଇ ସ୍ୱଦେଶକୁ ଫେରି ଆସିଲେ । ବର୍ତ୍ତମାନ ସେ ନିଜ ଗ୍ରାମରେରହି ଜୀବିକା ନିର୍ବାହ କରୁଛନ୍ତି ।

## ଶ୍ରୀ ଦୁର୍ଯ୍ୟୋଧନ ପ୍ରଧାନ



ଗଞ୍ଜାମ ଜିଲ୍ଲା ବୁଢ଼ାଆମ୍ବ ନିକଟ ଦେଓଗାଁ ଠାରେ ୧୯୧୪ ମସିହା ସେପ୍ଟେମ୍ବର ମାସରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ମଙ୍ଗୁ ପ୍ରଧାନ, ମାତାଙ୍କ ନାମ କୁନ ଓ ପତ୍ନୀଙ୍କ ନାମ ଶ୍ରୀମତୀ ଫୁଲ ପ୍ରଧାନ, ସେ ୧୯୩୫ ମସିହାରେ ବ୍ରହ୍ମଦେଶକୁ ଯାଇ ଶ୍ରମିକଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ ଫୌଜରେ ଯୋଗଦେଇ ଗୋଶାଲ୍ ସମର ଶିକ୍ଷାକେନ୍ଦ୍ରରେ ତାଲିମ ନେବାପରେ ଯୁଦ୍ଧକ୍ଷେତ୍ରକୁ ଯାଇ ଯୁଦ୍ଧ କରୁଥିଲେ । ୧୯୪୫ ମସିହାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ଛଅମାସ ରହିବାପରେ ମୁକ୍ତିପାଇ ସ୍ୱଦେଶକୁ ଫେରି ଆସିଥିଲେ । ବର୍ତ୍ତମାନ ସେ ନିଜ ଗ୍ରାମରେ ଭାଗବତପାଠ କରୁଛନ୍ତି ।

## ଶ୍ରୀ ମାଧବ ମହାରଣା

ଗଞ୍ଜାମ ଜିଲ୍ଲା ଶେରଗଡ ନିକଟ ଭାକରଡା ଗ୍ରାମରେ ୧୯୧୫ ମସିହା ନଭେମ୍ବର ମାସରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ଦୁର୍ଲ୍ଲଭ ମହାରଣା, ମାତାଙ୍କ ନାମ ସୁନା ଓ ପତ୍ନୀଙ୍କ ନାମ ଶ୍ରୀମତୀ ଚନ୍ଦ୍ରମା ମହାରଣା । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ



ପୂର୍ବରୁ ବ୍ରହ୍ମଦେଶକୁ ଯାଇ ନିଜର ଜୀବିକା ଅର୍ଜନ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ ଫୌଜର ସ୍ପେସିଆଲ ଟ୍ରେନିଙ୍ଗ୍ ଶିକ୍ଷା କେନ୍ଦ୍ର (S.T.I.)ରେ ତାଲିମ୍ ପାଇ ସେ ନାୟକ ପଦକୁ ଉନ୍ନୀତ ହୋଇଥିଲେ । ୧୯୪୫ ମସିହାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ୬ମାସ ଜେଲଦଣ୍ଡ ଭୋଗିବା ପରେ ମୁକ୍ତିପାଇ ସ୍ୱଦେଶକୁ ଫେରି ଆସିଥିଲେ । ବର୍ତ୍ତମାନ ସେ ନିଜ ଗ୍ରାମରେ ରହି ବଡ଼େଇ କାମ କରି ଜୀବିକା ନିର୍ବାହ କରୁଛନ୍ତି ।

## ଶ୍ରୀ ରଘୁ ବେହେରା



ଗଞ୍ଜାମ ଜିଲ୍ଲା ଆସ୍କା ନିକଟ କନିଆରି ଗ୍ରାମରେ ୧୯୨୨ ମସିହା ଜାନୁୟାରୀ ମାସ ୨୫ ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୬ ଘନ ବେହେରା, ମାତାଙ୍କ ନାମ ପାର୍ବତୀ ଓ ପତ୍ନୀଙ୍କ ନାମ ଶ୍ରୀମତୀ ପାର୍ବତୀ ବେହେରା । ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ସେ ବ୍ରହ୍ମ ଦେଶକୁ ଯାଇ ଶିଳ୍ପ ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ ଫୌଜରେ ଯୋଗ ଦେଇ ବାହାଦୁର ଗ୍ରୁପ୍ ସମର ଶିକ୍ଷା କେନ୍ଦ୍ରରେ ତାଲିମ ନେଇ ଯୁଦ୍ଧ କ୍ଷେତ୍ରରେ କାର୍ଯ୍ୟ କରୁଥିଲେ । ପାପନ ପାହାଡ଼ ଠାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ପ୍ରାୟ ୬ମାସ ବନ୍ଦୀହୋଇ ରହିବା ପରେ ମୁକ୍ତ ପାଇ ସ୍ୱଦେଶକୁ ଫେରି ଆସିଥିଲେ । ବର୍ତ୍ତମାନ ସେ ନିଜ ଗ୍ରାମରେ ରହୁଛନ୍ତି ।

## ଶ୍ରୀ ବୃନ୍ଦାବନ ବେହେରା

ଗଞ୍ଜାମ ଜିଲ୍ଲା ଭେଟନଇ ନିକଟ ବରଡ଼ା-ଏ ଗ୍ରାମରେ ୧୯୨୩ ମସିହା ମାର୍ଚ୍ଚ ମାସ ୧୨ ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୬ କ୍ଷେତ୍ର ବେହେରା । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମ ଦେଶକୁ ଯାଇ ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ୍ ଫୌଜରେ ଯୋଗଦେଇ ନେତାଜୀଙ୍କ ସ୍ପେଷିଆଲ ତାଲିମ କେନ୍ଦ୍ର (S.T.I.)ରେ ତାଲିମ

ନେବାପରେ ନାୟକ ପଦକୁ ଉନ୍ନୀତ ହୋଇ କାର୍ଯ୍ୟ କରୁଥିଲେ । ୧୯୪୫ ମସିହାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ପ୍ରାୟ ଆଠମାସ ରହିବା ପରେ ଖଲାସ ହୋଇ ସ୍ୱଦେଶକୁ ଫେରି ଆସିଥିଲେ । ସେ ବର୍ତ୍ତମାନ ନିଜ ଗ୍ରାମରେ ରହୁଛନ୍ତି ।



•

## ଶ୍ରୀ ବାଉରି ସାହୁ



ଗଞ୍ଜାମ ଜିଲ୍ଲା ଭେଟନଇ ନିକଟ ବରଡ଼ା-ଏ ଗ୍ରାମରେ ୧୯୨୨ ମସିହା ଅକ୍ଟୋବର ମାସ ୨୫ ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ବୈଷ୍ଣବ ସାହୁ, ମାତାଙ୍କ ନାମ ବଣି ଓ ପତ୍ନୀଙ୍କ ନାମ ଶ୍ରୀମତୀ ରେଖୀ ସାହୁ । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ ସର୍କସ ପାର୍ଟିରେ ରହି କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦ-ହିନ୍ଦ ଫୌଜରେ ଯୋଗଦେଇ କାର୍ଯ୍ୟ କରୁଥିଲେ । ୧୯୪୫ ମସିହାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ଆଠମାସ ଯୁଦ୍ଧବନ୍ଦୀ ଭାବେ ରହିବା ପରେ ମୁକ୍ତିପାଇ ସ୍ୱଦେଶକୁ ଫେରି ଆସିଥିଲେ । ସେ ବର୍ତ୍ତମାନ ନିଜ ଗ୍ରାମରେ ରହୁଛନ୍ତି ।

## ଶ୍ରୀ ରଘୁନାଥ ସାହୁ

ଗଞ୍ଜାମ ଜିଲ୍ଲା ଭେଟନଇ ନିକଟ ବରଡ଼ା-ଏ ଗ୍ରାମରେ ୧୯୨୪ ମସିହା ଅଗଷ୍ଟ ମାସରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ବାର

ସାହୁ ଓ ମାତାଙ୍କ ନାମ ସାବି । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ ସର୍କସ ଦଳରେ ରହି କାର୍ଯ୍ୟକରୁଥିଲେ । ନିଜ ଦଳର ନିଷ୍ପତ୍ତି ପ୍ରକାରେ ୧୯୪୩ମସିହାରେ ଆଜାଦହିନ୍ଦ ଫୌଜରେ ଯୋଗଦେଇ ସିପାହୀ ଭାବେ ଯୁଦ୍ଧ କ୍ଷେତ୍ରରେ କାର୍ଯ୍ୟ କରୁଥିଲେ । ୧୯୪୫ ମସିହାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫହୋଇ ରେଙ୍ଗୁନକେନ୍ଦ୍ର ଜେଲରେ ପ୍ରାୟ ୭ ମାସ ଜେଲଦଣ୍ଡ ଭୋଗ କରିବା ପରେ ମୁକ୍ତିପାଇ ସ୍ୱଦେଶକୁ ଫେରି ଆସିଥିଲେ । ସେ ବର୍ତ୍ତମାନ ନିଜ ଗ୍ରାମରେ ରହିଛନ୍ତି ।



## ଶ୍ରୀ ମୋହନ ସାହୁ



ଗଞ୍ଜାମ ଜିଲ୍ଲା ବରଡ଼ା-ଏ ଗ୍ରାମରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ଦବା ସାହୁ, ମାତାଙ୍କ ନାମ ବୋଇତ ଓ ପତ୍ନୀଙ୍କ ନାମ ଶ୍ରୀମତୀ ରୁକ୍ମିଣୀ ସାହୁ । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ କୃଷି ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ ଫୌଜରେ ଯୋଗଦେଇ ଭୋଣାଲ୍ ସମର ଶିକ୍ଷାକେନ୍ଦ୍ରରେ ତାଲିମ ପାଇ ଯୁଦ୍ଧକ୍ଷେତ୍ରକୁ ଯାଇ ସଣ୍ଟାଇ ବଗ୍ରେଡର ସିପାହୀ ଭାବରେ କାର୍ଯ୍ୟକରୁଥିଲେ । ୧୯୪୫ ମସିହା ମଇ ମାସରେ ବ୍ରିଟିଶ ସୈନ୍ୟଙ୍କଦ୍ୱାରା ବନ୍ଦୀ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ଆଠମାସ ବନ୍ଦୀହୋଇ ରହିବାପରେ ମୁକ୍ତିପାଇ ସ୍ୱଦେଶକୁ ଫେରି ଆସିଥିଲେ । ବର୍ତ୍ତମାନ ସେ ନିଜ ଗ୍ରାମରେ କୃଷିକାମ କରି ଜୀବିକା ନିର୍ବାହ କରୁଛନ୍ତି ।

## ଶ୍ରୀ ଆନନ୍ଦ ସେଠୀ

ଗଞ୍ଜାମ ଜିଲ୍ଲା ବରଡ଼ା-ଏ ଗ୍ରାମରେ ୧୯୧୭ ମସିହାରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ମଣି ସେଠୀ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ



ସେ ବ୍ରହ୍ମଦେଶକୁ ଯାଇ କୃଷି ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ୍ ଫୌଜରେ ଯୋଗଦେଇ ଗୋରିଲା ସମର ଶିକ୍ଷା କେନ୍ଦ୍ରରେ ତାଲିମ ପାଇବାପରେ ବର୍ମାର ପୋପା ପାହାଡ଼ ଯୁଦ୍ଧକ୍ଷେତ୍ରକୁ ଯାଇଥିଲେ । ପ୍ରତିକୂଳ ପରିସ୍ଥିତିରେ ପଛ ପଛକୁ ହଟି ଆସିବାବେଳେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ପ୍ରାୟ ଆଠମାସ ଜେଲଦଣ୍ଡ ଭୋଗ କରିବା ପରେ ମୁକ୍ତିପାଇ ସ୍ୱଦେଶକୁ ଫେରି ଆସିଥିଲେ । ବର୍ତ୍ତମାନ ସେ ନିଜ ଗ୍ରାମରେ ରହୁଛନ୍ତି ।

## ଶ୍ରୀ ଉତ୍ସବ ପ୍ରଧାନ



ଗଞ୍ଜାମ ଜିଲ୍ଲା ବରଡ଼ା-ଏ ଗ୍ରାମରେ ୧୯୨୩ ମସିହା ଜୁନମାସ ୧୧ ତାରିଖରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ଡମ୍ବରୁ ପ୍ରଧାନ, ମାତାଙ୍କ ନାମ ପାର୍ବତୀ ଓ ପତ୍ନୀଙ୍କ ନାମ ଶ୍ରୀମତୀ କମଳା ପ୍ରଧାନ । ସେ ଦ୍ୱିତୀୟ ବିଶ୍ୱ-ଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ ସର୍କସ ପାର୍ଟିରେ ରହି ଜୀବିକା ନିର୍ବାହ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ୍ ଫୌଜର ଫିଲ୍ଡ ପ୍ରପଗଣ୍ଡା କ୍ୟାମ୍ପରେ ଯୋଗଦେଇ ସପ୍ଲାଇ ବିଭାଗର ସିପାହୀ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୫ ମସିହାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ପ୍ରାୟ ସାତମାସ ଜେଲଯାତନା ଭୋଗକରି ମୁକ୍ତି ପାଇ ସ୍ୱଦେଶକୁ ଫେରି ଆସି ଗ୍ରାମରେ ବିଭିନ୍ନ ଉନ୍ନୟନ କାର୍ଯ୍ୟରେ ଯୋଗଦେଇ ଉଚ୍ଚ ପ୍ରାଥମିକ ଓ ମଧ୍ୟ ଇଂରାଜୀ ବିଦ୍ୟାଳୟ ପ୍ରଭୃତି ସ୍ଥାପନରେ ସହଯୋଗ କରିଥିଲେ । କିଛିଦିନ ପାଇଁ ସେହିସବୁ ବିଦ୍ୟାଳୟର ସଭାପତି ମଧ୍ୟ ଥିଲେ । ବର୍ତ୍ତମାନ ସେ କୃଷି କାର୍ଯ୍ୟ କରି ଜୀବିକା ନିର୍ବାହ କରୁଛନ୍ତି ।

## ଶ୍ରୀ କୃଷ୍ଣଚନ୍ଦ୍ର ପ୍ରଧାନ



ଗଞ୍ଜାମ ଜିଲ୍ଲା କଣଡ଼ା-ଏ ଗ୍ରାମରେ ୧୯୧୪ ମସିହା ନଭେମ୍ବର ମାସ ୧୮ ତାରିଖରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ବାଲଜୀ ପ୍ରଧାନ, ମାତାଙ୍କ ନାମ······ଓ ପତ୍ନୀଙ୍କ ନାମ ଶ୍ରୀମତୀ ମହାଦେଇ ପ୍ରଧାନ । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ କଣଡ଼ା ଗ୍ରାମର ସର୍କସ ଦଳଧର ବର୍ମା ଯାଇ ସର୍କସ ପ୍ରଦର୍ଶନ କରି ସୁନାମ ଅର୍ଜନ କରିଥିଲେ । ୧୯୪୩ ମସିହାରେ ନିଜ ଦଳର ସମସ୍ତଙ୍କୁ ନେଇ ଆଜାଦହିନ୍ଦ ଫୌଜରେ ଯୋଗଦେଇ ତାଲିମ୍ ପାଇବାପରେ ଫିଲ୍ଡ ପ୍ରପଗଣ୍ଡା ୟୁନିଟ୍‌ରେ କାର୍ଯ୍ୟ କରୁଥିଲେ । ୧୯୪୫ ମସିହାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫଦ୍ୱାଇ ରେଙ୍ଗୁନ କେନ୍ଦ୍ର ଜେଲରେ ପ୍ରାୟ ଆଠମାସ ବନ୍ଦୀହୋଇ ରହିବାପରେ ମୁକ୍ତିପାଇ ସ୍ୱଦେଶକୁ ଫେରି ଆସିଥିଲେ ।

## ଶ୍ରୀ ସନ୍ନ୍ୟାସୀ ବେହେରା



କୋରାପୁଟ ଜିଲ୍ଲା ରାୟଗଡାଠାରେ ୧୯୨୨ ମସିହା ଜୁନ୍‌ମାସ ୧୦ ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ସମ୍ବାରୁ ବେହେରା । ୧୯୩୮ ମସିହାରେ ସେ ବ୍ରହ୍ମଦେଶକୁ ଯାଇ ଗୋଟିଏ କମ୍ପାନୀରେ ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ ଫୌଜରେ ଯୋଗଦେଇ ଗୋଶାଲ୍ମ ସମର ଶିକ୍ଷା କେନ୍ଦ୍ରରେ ତାଲିମ ନେବାପରେ ସିପାହୀ ଭାବରେ ଯୁଦ୍ଧ କ୍ଷେତ୍ରକୁ ଯାଇ ଯୁଦ୍ଧ କରୁଥିଲେ । ୧୯୪୫ ମସିହାରେ ତାଗି ପାହାଡଠାରେ ବ୍ରିଟିଶ ସୈନ୍ୟଙ୍କଦ୍ୱାରା ଗିରଫ ହୋଇ ରେଙ୍ଗୁନକେନ୍ଦ୍ର ଜେଲରେ

ଆଠମାସ ରହିବା ପରେ ଖଲାସ ହୋଇ ସ୍ୱଦେଶକୁ ଫେରି ଆସିଥିଲେ । ବର୍ତ୍ତମାନ ସେ ରାୟଗଡ଼ା (ଜେ. କେ. ପେପର ମିଲ୍‌ରେ) ଜଣେ ଶ୍ରମିକଭାବେ କାର୍ଯ୍ୟ କରି ଜୀବିକା ନିର୍ବାହ କରୁଛନ୍ତି ।

## ଶ୍ରୀ ଉଚ୍ଛବ ମହାଙ୍କୁଡ଼



ଗଞ୍ଜାମଜିଲ୍ଲା ପିତଳ ନିକଟ ଶୁଣ୍ଡୁରିବାଡ଼ ଗ୍ରାମରେ ୧୯୨୨ ମସିହା ମଇମାସ ୨୭ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ରଘୁ ମହାକୁଡ଼, ମାତାଙ୍କ ନାମ ଜଲି ଓ ପତ୍ନୀଙ୍କ ନାମ ଶ୍ରୀମତୀ ଫୁଲ ମହାକୁଡ । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ କୃଷି ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ ଫୌଜରେ ଯୋଗଦେଇ ଗୋଶାଲା ସମର ଶିକ୍ଷା କେନ୍ଦ୍ରରେ ଶିକ୍ଷା ପାଇ ଗରିଲା ସିପାହୀ ଭାବରେ ପୋପା ପାହାଡ଼ ଯୁଦ୍ଧ କ୍ଷେତ୍ରରେ ଯୁଦ୍ଧ କରୁଥିଲେ । ଯୁଦ୍ଧ କ୍ଷେତ୍ରରୁ ଖଲ୍ପଦୁଷ୍ଟା ଦେଇ ଆସୁଥିବା ବେଳେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ନଅମାସ ଜେଲଦଣ୍ଡ ଭୋଗ କରିବାପରେ ମୁକ୍ତିପାଇ ସ୍ୱଦେଶକୁ ଫେରି ଆସିଥିଲେ । ସେ ବର୍ତ୍ତମାନ ନିଜ ଗ୍ରାମରେ ରହୁଛନ୍ତି ।

## ଶ୍ରୀ ଦଣ୍ଡାସୀ ସେଠୀ



ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ବଣମଦ୍ଧର ଗ୍ରାମରେ ୧୯୧୫ ମସିହା ଅଗଷ୍ଟ ମାସ ୧୪ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ସହିତ ସେଠୀ, ମାତାଙ୍କ ନାମ ସାବତି ଓ ପତ୍ନୀଙ୍କ ନାମ ଶ୍ରୀମତୀ ସୁଭଦ୍ରା ସେଠୀ । ସେ ୧୯୩୫ ମସିହାରେ ବ୍ରହ୍ମଦେଶକୁ ଯାଇ ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ୍ ଫୌଜରେ

ଯୋଗଦେଇ ସିପାହୀ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୫ ମସିହାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ଆଠମାସ ରହିବା ପରେ ମୁକ୍ତିପାଇ ସ୍ୱଦେଶକୁ ଫେରି ଆସିଥିଲେ । ସେ ବର୍ତ୍ତମାନ ନିଜ ଗ୍ରାମରେ ରହୁଛନ୍ତି ।

## ଶ୍ରୀ ଲାବଣ୍ୟ ଦାସ



ଗଞ୍ଜାମ ଜିଲ୍ଲା ଜରଡାଗଡ଼ ଠାରେ ୧୯୨୬ ମସିହା ନଭେମ୍ବର ମାସ ୨୮ ତାରିଖରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ରଘୁନାଥ ଦାସ, ମାତାଙ୍କ ନାମ ଶାନ୍ତି ଓ ପତ୍ନୀଙ୍କ ନାମ ଶ୍ରୀମତୀ ଲକ୍ଷ୍ମୀ ଦାସ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ସେ ବ୍ରହ୍ମଦେଶକୁ ଯାଇ ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ନେତାଜୀଙ୍କ ପ୍ରତିଷ୍ଠିତ ଆଜାଦହିନ୍ଦ୍ ଫୌଜର ଗୋଶାଳ ସମର ଶିକ୍ଷା କେନ୍ଦ୍ରରେ ତାଲିମ ପାଇ ସିପାହୀ ଭାବରେ କାର୍ଯ୍ୟ କରୁଥିଲେ । କର୍ମରତ ଥିବା ସମୟରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ଆଠମାସ ଜେଲଦଣ୍ଡ ପାଇବା ପରେ ମୁକ୍ତିପାଇ ସ୍ୱଦେଶକୁ ଫେରି ନିଜ ଗ୍ରାମରେ ଅବସ୍ଥାନ କରୁଛନ୍ତି ।



## ଶ୍ରୀ କୃଷ୍ଣ ଜେନା

ଗଞ୍ଜାମ ଜିଲ୍ଲା ଆସ୍କା ନିକଟ ସାହାସପୁର ଗ୍ରାମରେ ସେ ୧୯୨୨ ମସିହା ଏପ୍ରିଲ ମାସରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ରାମ ଜେନା, ମାତାଙ୍କ ନାମ ପୂନି ଓ ପତ୍ନୀଙ୍କ ନାମ ଶ୍ରୀମତୀ କୌଶଲ୍ୟା ଜେନା । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ସେ ବ୍ରହ୍ମ ଦେଶକୁ ଯାଇ କୃଷି ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ୍ ଫୌଜରେ ଯୋଗଦେଇ ଗୋଶାଳ ସମର ଶିକ୍ଷା କେନ୍ଦ୍ରରେ ଶିକ୍ଷାଲାଭ

ଭର ଗାନ୍ଧି ବ୍ରିଗେଡ ସିପାହୀ ରୂପେ ଯୁଦ୍ଧକ୍ଷେତ୍ରରେ କାର୍ଯ୍ୟ କରୁଥିଲେ । ୧୯୪୫ ମସିହାରେ ଯୁଦ୍ଧ କ୍ଷେତ୍ରରୁ ଗିରଫ ହୋଇ ଭାରତର ଚଟ୍ଟଗ୍ରାମ ଓ ପରେ ବଙ୍ଗ ପ୍ରଦେଶର ମାଳଗଞ୍ଜ ଓ ଝିକର ଗାଛିଆ ବ୍ରିଟିଶ ନଜରବନ୍ଦୀ କ୍ୟାମ୍ପରେ ଆଠମାସ ରହି ମୁକ୍ତି ପାଇବା ପରେ ସ୍ୱଦେଶକୁ ଫେରି ଆସିଥିଲେ । ବର୍ତ୍ତମାନ ସେ ନିଜ ଗ୍ରାମରେ ରହୁଛନ୍ତି ।

## ଶ୍ରୀ ରଘୁନାଥ ପାଣିଗ୍ରାହୀ



ଗଞ୍ଜାମ ଜିଲ୍ଲା ଧରାକୋଟ ଠାରେ ୧୯୨୮ ମସିହା ଅକ୍ଟୋବର ୨୪ ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ହାଡ଼ୁ ପାଣିଗ୍ରାହୀ, ମାତାଙ୍କ ନାମ ରମ୍ଭାଦେବୀ ଓ ପତ୍ନୀଙ୍କ ନାମ ଶ୍ରୀମତୀ ଶୈଳ ପାଣିଗ୍ରାହୀ । ସେ ୧୯୩୭ ମସିହାରେ ବ୍ରହ୍ମଦେଶକୁ ଯାଇ ସରୁଣିଆ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ ଫୌଜରେ ଯୋଗଦେଇ ୭ ମାସ ଜେଲଦଣ୍ଡ ଭୋଗିବାପରେ ମୁକ୍ତିପାଇ ସ୍ୱଦେଶକୁ ଫେରି ଆସିଥିଲେ । ବର୍ତ୍ତମାନ ସେ ଗ୍ରାମରେ ହୋଟେଲ କରି ଜୀବିକା ନିର୍ବାହ କରୁଛନ୍ତି ।

## ଶ୍ରୀ ନାଥ ସେଠୀ



ଗଞ୍ଜାମ ଜିଲ୍ଲା ଆଠଗଡ ପାଟଣାଠାରେ ୧୦୨୦ ମସିହାରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ସାଠିଆ ସେଠୀ, ମାତାଙ୍କ ନାମ ମାହାଲି ଓ ପତ୍ନୀଙ୍କ ନାମ ଶ୍ରୀମତୀ କେତକୀ । ସେ ୧୯୩୯ ମସିହାରେ ବ୍ରହ୍ମଦେଶକୁ ଯାଇ ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ ଫୌଜରେ ଯୋଗଦେଇ ଗୋଣାଳ୍ମ ସମର ଶିକ୍ଷା କେନ୍ଦ୍ରରେ ତାଲିମ ନେବାପରେ ଯୁଦ୍ଧକ୍ଷେତ୍ରକୁ ଯାଇ ଯୁଦ୍ଧ କରୁଥିଲେ,ସେ ପୋପାପାହାଡ ନିକଟରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫହୋଇ ରେଙ୍ଗୁନକେନ୍ଦ୍ର

ଜେଲରେ ୯ ମାସ ପର୍ଯ୍ୟନ୍ତ ବନ୍ଦୀହୋଇ ଉତ୍ତାରେ ମୁକ୍ତ ପାଇ ସ୍ୱଦେଶକୁ ଫେରି ଆସିଥିଲେ । ବର୍ତ୍ତମାନ ସେ କୃଷି କାର୍ଯ୍ୟକରି ଗ୍ରାମରେ ରହୁଛନ୍ତି ।

## ଶ୍ରୀ ଆନନ୍ଦ ପ୍ରଧାନ



ଗଞ୍ଜାମ ଜିଲ୍ଲା ଭେଟନଇ ଥାନାର ବାଲିପୁର ଗ୍ରାମରେ ୧୯୨୦ ମସିହା ଅପ୍ରେଲ ମାସ ୧୩ ତାରିଖରେ ସେ ଜନ୍ମଗ୍ରହଣ କରି-ଥିଲେ । ତାଙ୍କ ପିତାଙ୍କ ନାମ ୰ କପ୍ତେଇ ପ୍ରଧାନ, ମାତାଙ୍କ ନାମ ଗୁରୁ ଓ ପତ୍ନୀଙ୍କ ନାମ ଶ୍ରୀମତୀ କ୍ଷୀର ପ୍ରଧାନ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ସେ ବ୍ରହ୍ମଦେଶକୁ ଯାଇ କୃଷି ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ ଫୌଜରେ ଯୋଗ ଦେଇ ବାହାଦୁର ଗ୍ରୁପ୍ ସମର-ଶିକ୍ଷା କେନ୍ଦ୍ରରେ ତାଲିମ ପାଇ ସଶସ୍ତ୍ର ବାହିନୀର ସିପାହୀ ରୂପେ ମିଟଲ ଯୁଦ୍ଧକ୍ଷେତ୍ରକୁ ଯାଇ କାର୍ଯ୍ୟ କରୁଥିଲେ । ଯୁଦ୍ଧ ବିରତି ଘୋଷଣା ହେବାପରେ ପାପନ୍ ପାହାଡ଼ ନିକଟରୁ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ୮ ମାସ ରହିବା ପରେ ମୁକ୍ତିପାଇ ସ୍ୱଦେଶକୁ ଫେରି ଆସିଥିଲେ । ବର୍ତ୍ତମାନ ସେ ନିଜ ଗ୍ରାମରେ ରହୁଛନ୍ତି ।

## ଶ୍ରୀ ଲକ୍ଷ୍ମଣ ରଥ



ଗଞ୍ଜାମ ଜିଲ୍ଲା କବିସୂର୍ଯ୍ୟନଗର ଥାନାର ମୁକୁନ୍ଦପୁର ଶାସନରେ ୧୯୨୦ ମସିହାରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ବନମାଳି ରଥ ଓ ମାତାଙ୍କ ନାମ ଅନ୍ନପୂର୍ଣ୍ଣା । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ ଜୀବିକା ଅର୍ଜନ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ ଫୌଜରେ ଯୋଗଦେଇ ଫିଲ୍ଡ ପ୍ରପଗଣ୍ଡା ୟୁନିଟ୍‌ରେ କାର୍ଯ୍ୟ କରୁଥିଲେ । ଗୋଶାଳ ସମର ଶିକ୍ଷା କେନ୍ଦ୍ରରେ ଶିକ୍ଷା ପାଇବା ପରେ ମେଡ଼ିକାଲ୍

ଗ୍ରୁପ୍‌ରେ ନର୍ସିଂ ସିପାହୀ ରୂପେ ଯୁଦ୍ଧ କ୍ଷେତ୍ରକୁ ଯାଇ କାର୍ଯ୍ୟ କରୁଥିଲେ । କଳଆ କାଡ଼ଠାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ବର୍ମାର ମିଙ୍ଗଜାଉଁଠାରେ ଦୁଇମାସ ବନ୍ଦୀ ପରେ ରେଙ୍ଗୁନ କେନ୍ଦ୍ର ଜେଲ୍‌କୁ ସ୍ଥାନାନ୍ତରିତ ହୋଇ ସେଠାରେ ୮ ମାସ ବନ୍ଦୀ ରହିବା ପରେ ମୁକ୍ତିପାଇ ସ୍ୱଦେଶକୁ ଫେରି ଆସିଥିଲେ ।

## ଶ୍ରୀ ଲଡ୍ଡୁ ଦାସ



ଗଞ୍ଜାମ ଜିଲ୍ଲା ଜଗନ୍ନାଥପୁରନଗର ଠାରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ରାମ ଦାସ ଓ ମାତାଙ୍କ ନାମ ପାଣ୍ଡି ସେ ୧୯୪୩ ମସିହାରେ ବ୍ରହ୍ମ ଦେଶକୁ ଯାଇ କୃଷି ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ୍ ଫୌଜରେ ଯୋଗଦେଇ ରୋଶାଲି କ୍ୟାମ୍ପରେ ସମର ଶିକ୍ଷା ଲାଭ କଲାପରେ ଯୁଦ୍ଧକ୍ଷେତ୍ରକୁ ଯାଇ-ଥିଲେ । ଅପର ବ୍ରିଟିଶ ସୈନ୍ୟଙ୍କଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ପ୍ରାୟ ଆଠ ମାସ ଯୁଦ୍ଧବନ୍ଦୀଭାବେ ରହି ମୁକ୍ତିପାଇବା ପରେ ସ୍ୱଦେଶକୁ ଫେରି ଆସିଥିଲେ ।

## ଶ୍ରୀ କନ୍ଧ ଦଳେଇ



ଗଞ୍ଜାମ ଜିଲ୍ଲା ବ୍ରହ୍ମପୁର ଥାନା ନିକଟ ଗିରିଆ ନାରାୟଣପୁର ଗ୍ରାମରେ ୧୯୧୭ ମସିହା ଜୁନ ମାସ ୧୫ ତାରିଖରେ ଜନ୍ମଗ୍ରହଣ କରିଥିଲେ । ସେ ଦ୍ୱିତୀୟ ବିଶ୍ୱ ଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ କୃଷି ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ନେତାଜୀଙ୍କ ଗଠିତ ଆଜାଦହିନ୍ଦ ଫୌଜରେ ଯୋଗଦେଇ ଫଲ୍‌ଡ ପ୍ରପଗଣ୍ଡା ୟୁନିଟ୍‌ରେ ତାଲିମ ପାଇ ମସ୍ତାଗାଉଁ କ୍ୟାମ୍ପରେ ଶେଷ ପର୍ଯ୍ୟନ୍ତ କାର୍ଯ୍ୟ କରୁଥିଲେ । ୧୯୪୫ ମସିହାରେ ବ୍ରିଟିଶ

ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ କେନ୍ଦ୍ର ଜେଲରେ ପ୍ରାୟ ଆଠମାସ ଜେଲଜୀବନ କଟାଇବାପରେ ମୁକ୍ତିପାଇ ସ୍ୱଦେଶକୁ ଫେରି ଆସିଥିଲେ । ବର୍ତ୍ତମାନ ସେ ନିଜ ଗ୍ରାମରେ ରହି କୃଷି କାର୍ଯ୍ୟ କରୁଛନ୍ତି ।

## ଶ୍ରୀ ଭିକାରୀ ଦଳେଇ



ଗଞ୍ଜାମ ଜିଲ୍ଲା ଶୋଲସରା ନିକଟ ମଧ୍ୟସ୍ଥ ପାଟଣା ଗ୍ରାମରେ ୧୯୨୦ ମସିହା ସେପ୍ଟେମ୍ବର ମାସରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ କୃଷ୍ଣ ଦଳେଇ, ମା'ତାଙ୍କ ନାମ ଚଞ୍ଚଳ ଓ ପତ୍ନୀଙ୍କ ନାମ ଶ୍ରୀମତୀ କ୍ଷୀର ଦଳେଇ । ସେ ୧୯୩୫ ମସିହାରେ ବ୍ରହ୍ମଦେଶକୁ ଯାଇ ଶ୍ରମିକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ୍ ଫୌଜରେ ଯୋଗଦେଇ ନଗୋଶାନ୍ ସମରଶିକ୍ଷା କେନ୍ଦ୍ରରେ ତାଲିମ ପାଇ ଯୁଦ୍ଧ କ୍ଷେତ୍ରକୁ ଯାଇ ଯୁଦ୍ଧ କରୁଥିଲେ । ୧୯୪୫ ମସିହାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫ ହୋଇ ରେଙ୍ଗୁନ ଜେଲରେ ଆଠମାସ ରହିବା ପରେ ମୁକ୍ତିପାଇ ସ୍ୱଦେଶକୁ ଫେରି ଆସିଥିଲେ । ସେ ବର୍ତ୍ତମାନ ନିଜ ଗ୍ରାମରେ ରହୁଛନ୍ତି ।

## ଶ୍ରୀ କନ୍ଧ ପଣ୍ଡା



ଗଞ୍ଜାମଜିଲ୍ଲା ପୋଲସରା ନିକଟ ଗୋଠଳୀ ଗ୍ରାମରେ ୧୯୧୮ ମସିହାରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ବୈରାଗୀ ପଣ୍ଡା, ମାତାଙ୍କ ନାମ କେମା ଓ ପତ୍ନୀଙ୍କ ନାମ ଶ୍ରୀମତୀ ପଦ୍ମା ପଣ୍ଡା । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରହ୍ମଦେଶକୁ ଯାଇ କୃଷିକର୍ମ କରି ଜୀବିକା ଅର୍ଜ୍ଜନ କରୁଥିଲେ । ୧୯୪୩ ମସିହାରେ ଆଜାଦହିନ୍ଦ ଫୌଜରେ ଯୋଗଦେଇ ତାଲିମ୍ ପାଇବାପରେ ସିପାହୀ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୫ ମସିହାରେ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ଗିରଫହୋଇ ରେଙ୍ଗୁନ କେନ୍ଦ୍ର

